ପାତ୍ରୀ ଅନ୍ବେଷଣ

(ଗଳ୍ପ ସଂକଳନ)

ଲେଖକ: ପ୍ରୀତୀଶ ଆଚାର୍ଯ୍ୟ

ପ୍ରକାଶକ:
ଅନ୍ତର୍ଦୃଷ୍ଟି, ୧୧୭, ଚତୁର୍ଥ ଲେନ୍,
ରୋଡ୍-୨, ଜଗନ୍ନାଥ ବିହାର
ଭୁବନେଶ୍ୱର -୩

ପ୍ରଚ୍ଛଦ: ଜଗନ୍ନାଥ

ଅକ୍ଷର ସଜ୍ଜା:
ଟେକନୋ ଭିଜନ୍ସ
୧୬୯, ଆଲିଗଂଜ କୋଟଲା, ନୂଆଦିଲ୍ଲୀ-୩

ମୁଦ୍ରଣ: ଡାଟାଡିଲ କମ୍ପୁଟର

ପ୍ରକାଶନ ସମୟ:
୨୦୦୧ (ଫେବୃୟାରୀ)

ମୂଲ୍ୟ
ଶୋଭନ - ୭୦ଟଙ୍କା (ସତୁରୀ ଟଙ୍କା)
ସାଧାରଣ - ୬୦ ଟଙ୍କା (ଷାଠିଏ ଟଙ୍କା)



**PATRI ANWESHANA**

(Short Stories)

Author Pritish Acharya

Published by
Antardrishti 117 4th Lane,
Road-2 Jagannath Vihar
Bhubaneswar-3

Cover Design Jagannath

Type Setting
Techno Visions
169, Aliganj Kotla, New Delhi-3

Printed at Data Deal Computer

First Edition
February 2001

PRICE
Binding 70/- (Seventy Only)
Plain 60/- (Sixty Only)

# ଉତ୍ସର୍ଗ

ପୂଜ୍ୟ ଗୁରୁ ପ୍ରଫେସର ବିପନଚନ୍ଦ୍ରଙ୍କ
କର କମଳରେ ।

# ଅନ୍ତରାଳରୁ

ସାଧାରଣତଃ ଦେଖାଯାଏ ଯେ, ପ୍ରକାଶକ ସାହିତ୍ୟିକ କୃତି ପ୍ରକାଶନ ପାଇଁ ବାରଂବାର ଲେଖକଙ୍କୁ ଅନୁରୋଧ ପତ୍ର ପଠାନ୍ତି, ପତ୍ନୀ ଓ ବଂଧୁମାନେ ରାତି ଅନିଦ୍ରା ରହି ପାଣ୍ଡୁଲିପିର ମୁଦ୍ରଣଯୋଗ୍ୟ ପ୍ରତି ତିଆରନ୍ତି, ପ୍ରୁଫ ପଢ଼ନ୍ତି ଏବଂ ମାସିକ ପତ୍ରିକାର ସଂପାଦକମାନେ ପାଣ୍ଡୁଲିପିର କିୟଂଦଂଶ ପ୍ରକାଶନ ଆଶାରେ ଲେଖକଙ୍କ ଘର ଆଗରେ ଅଧିଆ ପଡ଼ନ୍ତି । ମୋଟ ଉପରେ ଏସବୁ ଲେଖକର ପାହ୍ୟା ଓ ତାଁକ ସାହିତ୍ୟିକ କୃତିର ଓଜନକୁ ସୃଷ୍ଟି କରେ । ମାତ୍ର ଅବଶୋଷର ବିଷୟ, ଏହି ପାଣ୍ଡୁଲିପି ପ୍ରକାଶନ ବେଳେ ସେ ଧରଣର କୌଣସି ଅପୂର୍ବ ଘଟଣା ଘଟିନାହିଁ । କେତେ ପ୍ରକାଶକଙ୍କୁ ମୁଁ ପାଣ୍ଡୁଲିପିଟିକୁ ବିଚାରକୁ ନେବା ସକାଶେ ପତ୍ର ଲେଖିଛି; ଉତ୍ତର ପାଇନି । ଯଦି ବା ପାଇଛି, ନାସ୍ତିସୂଚକ । ଜଣେ ଅଧେ ପ୍ରକାଶକଙ୍କୁ ପରିଚିତ ବଂଧୁଂକ ଜରିଆରେ କହିଛି; ଫଳ ମିଳିନି । ପତ୍ନୀ ପାଣ୍ଡୁଲିପି ପଢ଼ିବା ଅଥବା ଶୁଣିବା ଆଗରୁ ପ୍ରାୟ ଥର ବାହାନା ଖୋଜି କଳି କରିଛନ୍ତି ବା ଛୁଆମାନେ ତାଁକୁ 'ପଢ଼ିବାକୁ ଦେଇନାହାନ୍ତି' । ଯେଉଁ କେତେଜଣ ପତ୍ରିକା-ସଂପାଦକ ଏହି ଗଳ୍ପଗୁଡ଼ିକରୁ ଗଳ୍ପ ଛାପିଛନ୍ତି, 'ଲେଖକ-ପ୍ରତି' ପ୍ରେରଣ ବେଳେ ନିଶ୍ଚୟ ଅନୁରୋଧ ପତ୍ର ପଠାଇଛନ୍ତି - 'ଭବିଷ୍ୟତରେ ଏତେ ଲଂବା ଗପ ଛାପିବା ମୁସ୍କିଲ ହେବ ।' ଜଣାକେତେ ସଂପାଦକ ମୋଠାରୁ ଅବଶ୍ୟ ଗଳ୍ପ ମଗେଇ ନିଜ ପତ୍ରିକାର ପ୍ରଥମ ସଂଖ୍ୟା ପ୍ରକାଶ କରିଛନ୍ତି; ପରବର୍ତ୍ତୀ ସଂଖ୍ୟା ଆଜିଯାଏଁ ଲୋକଲୋଚନକୁ ଆସିନି । ବିଶେଷକରି ମୁଁ 'ପାତ୍ରୀ ଅନ୍ୱେଷଣ' ଗଳ୍ପର ଉଲ୍ଲେଖ କରିବି । ବିଚାରା ନିଜ ପୃଥୁଳ କଳେବର ସକାଶେ ଦୁଇ-ଦୁଇଟି ପତ୍ରିକା କାର୍ଯ୍ୟାଳୟରୁ ଅସ୍ୱୀକୃତ ହୋଇ ଫେରିଛି । ସ୍ରଷ୍ଟା ଭାବରେ ମତେ ତାର ଦୁଃଖ ଏତେ ଘାରିଛି ଯେ ତାକୁ ଗଳ୍ପ ସଂକଳନର ଶୀର୍ଷକ କରି ରଖିଛି ।

ଶେଷରେ ସ୍ୱ-ଖର୍ଚ୍ଚରେ ମୁଁ ପାଣ୍ଡୁଲିପିର ଡି·ଟି·ପି· କରାଇଛି ଏବଂ 'ଅନ୍ତଦୃଷ୍ଟି'ର ପ୍ରକାଶିକା କଳ୍ପନା ମିଶ୍ରଂକୁ ଆମ ଦୁଇ ଦଶଂଧିର ପୁରୁଣା ବଂଧୁତାର ଦୋହି ଦେଇ ପାଣ୍ଡୁଲିପି ଛାପିବା ପାଇଁ ଅନୁରୋଧ କରିଛି ।

କହିବାର ଉଦ୍ଦେଶ୍ୟ, ଏତେ ସବୁ ବ୍ୟତିକ୍ରମ ଯୋଗୁଁ ସାହିତ୍ୟ ଜଗତରେ ମୋର ଗଳ୍ପ ସଂକଳନ ଏକ ନିପାତନସିଦ୍ଧ ସଦୃଶ । ମୋର ଆଶା ଓ ବିଶ୍ୱାସ, ସଂବେଦନଶୀଳ ପାଠକଗୋଷ୍ଠୀ ଏହାକୁ ପଢ଼ିବେ, ବିଚାରକୁ ନେବେ ।

ପ୍ରୀତୀଶ ଆଚାର୍ଯ୍ୟ

୧୫.୦୧.୨୦୦୧



# ସୂଚୀ





# ପୁନଶ୍ଚ ସକାଳ

## ॥ ୧ ॥

ଗୁଜରିବନ୍ଧରୁ ଫେରିବାବେଳେ ଦିଗ ଲୁଚନ କଣାକୁ ପଚାରିଲା, 'ଲୁଚନ, ଟୋକୀଟେ ପାଇଲେ ଏବେ ବାହା ହୁଅନ୍ତୁ?'

'ଆଉ କ'ଣ ଛାଡ଼ନ୍ତି?' ଲୁଚନ କହିଲା ।

— ସେଦିନ କେମିତି ମନାକଲୁ?

— କେବେ?

— କୋଉ ଦିନ?

— ଭାଗବତ ଗୁଡ଼ିରେ ଅଭି, ମକ ଆଦି ପଚାରୁ ନଥିଲେ?

— ମଜାକ ଉଡ଼େଇବା ପାଇଁ ପଚାରିଲେ କ'ଣ ହଁ କରିବି? ଆରଦିନ ଗାଁ ସାରା ହୁରି ପଡ଼ିଯିବ । ରାସ୍ତାରେ ବାଟ ଚାଲି ହେବନି ।

ଦିଗ ସବୁ ବୁଝିଗଲା ପରି କହିଲା, 'ଠିକ୍ କହୁଛୁ ପିଲା, ତୁ ଗଲା ପରେ ନା ମକ କହନ୍ତି, ଶଳା କଣା ଆମ ଆଗରେ ସିନା ମନା କରୁଛି, ଟୋକୀ ପାଇଲେ କ'ଣ ଛାଡ଼ିବ?'

— ମୁଁ ଠିକ୍ ଜାଣିଛି ପରା । ମଜାକ ଉଡ଼େଇବା ପାଇଁ ଶଳେ ପଚାରନ୍ତି ଏମିତି କଥା ।' ଲୁଚନ ଦିଗ ଉପରେ ବି ସାମାନ୍ୟ ରାଗିଲା । ଯିଏ ଯାହା ଗାଳିକଲା, ତାକୁ ଅବିକଳ ଥୋଇଦେବ । ଟିକିଏ ବାଗେଇ କହିଲେ ହୁଅନ୍ତା ନାହିଁ? ଏଥିରେ ଦୁଃଖ ବଢ଼ିବା ଛଡ଼ା ଅଲଗା କ'ଣ ହୁଏ? କଥାଟି ତା ନିଜ ପ୍ରତି ଉଲ୍ଲେଖ ହୋଇ ନଥିଲେ ବା ଦିଗକୁ ବୁଝେଇ କହନ୍ତା ଲୁଚନ ।

— ଆଚ୍ଛା କହିଲୁ, କେମିତି ଝିଅଟେ ହେଲେ ବାହା ହୁଅନ୍ତୁ? ଦିଗ କଥାକୁ ଟିଖରାଇଲା । ତାର ଏତେ ଗହନକୁ ଯିବା ପାଇଁ ବେଳକାହିଁ?

ଅଧା ଟର୍କିଯାଇ ଲୁଚନ ପଚାରିଲା, 'ଶଳା, ତୁ ବି ମକ, ଅଭି ଭଳି ବିର୍ଝେଇଲୁଣି କି?'

ଦିଗ କହିଲା, ମୁଁ କେବେ ବିର୍ଦ୍ଧେଇଛି ତତେ? ଶୁଣିବାକୁ ଆଉ କେହି ନାହାନ୍ତି ବୋଲି ପଚାରୁଛି ।

'ଆଖ ପାଖରେ କେହି ନାହାନ୍ତି ତ? ଭଲ କରି ଦେଖ ।' ଲୁଚନ ନରମି ଗଲା । ଜଣେ ଦି'ଜଣ ସାଙ୍ଗ ଯେ, ତାଙ୍କ ସାଙ୍ଗରେ ମୁହଁ ଫୁଲେଇଲେ କ'ଣ ଚଳିହେବ? ପାଖରେ ଆଉ କେହି ନଥିବାଟା ନିଶ୍ଚିତ ହେଲା ପରେ କହିଲା, 'ଦେଖ ଦିଗ, ଆମପାଇଁ କି ଗୋରୀ ଆଉ କି କାଳି, ସୁନ୍ଦରୀ ହେଲେ କେତେ ଅସୁନ୍ଦରୀ ହେଲେ ବି କେତେ? ସବୁତ ଆମକୁ ସମାନ । ଭଲ ଆଚାର ବିଚାରର ଟୋକୀଟେ ହୋଇଥିବ, ମାନି ଗୁନି ଚଳୁଥିବ, ଆଖି ନ ଦିଶିଲା ଜଣକୁ (କଣା କହିବାକୁ ପଡ଼ିଲେ ଲୁଚନ ତାକୁ ବାଆଁରେଇ କହେ) ବାହା ହେଲା ବୋଲି ତା ମନରେ ଦୁଃଖ ନଥିବ ଯଦି – ଆଉ ଅଧିକ କଣ ଲୋଡ଼ା?' ମନଖୋଲି ସବୁ କହିସାରିଲା ପରେ ପୁଣି ସତର୍କ ହୋଇପଡ଼ିଲା ସେ । ଶଳା ଦିଗ ମଦୁଆ ! ଢୁକେ ପିଇଦେଲେ କି ଆଉ ତାର ଯୋର ରହେ? କୋଉଠି ଢିଲି ନ ଦଉ ଏକଥା । ତାର ଚାବିକାଠି ବି ନିଜ ହାତରେ ରଖିବା କଥା । ପଚାରିଲା, 'ଆଚ୍ଛା ଦିଗ ତତେ କେମିତି ଟୋକୀ ଦରକାର ?' ଏତକ ଜାଣିଯିବ ଯଦି ଦରକାର ପଡ଼ିଲେ ସେ ବି ଦିଗ ମଦୁଆର ପୋଲପଟି ଖୋଲିଦେବ ।

ଦିଗର କିନ୍ତୁ ସେଆଡ଼େ ନିଘା ନାହିଁ । ପଚାରିଥିଲା ଯେମିତି ଖୋଲା ମନରେ, ଜବାବ ଦେଲା ବି ସେମିତି ଖୋଲାଖୋଲି 'ତୁମର କଣା କୁଜାମାନଙ୍କର ହେଲେ ପରା ପାଟକରେ ଓଜନ ଅଛି । ମଦୁଆକୁ କିଏ ପଚାରେ? ସବୁଠି ଥୁର୍ ଥୁର୍ ମାର୍ ମାର୍ । କିଏ ଦେବ କନିଆଁ ଆମକୁ?'

ଲୁଚନ ଦେଖିଲା, ଦିଗ କଥା ଲୁଚାଉନି । ତଥାପି କଥାଟି ଏବେ ଅସୁଲ କରି ନଥିଲେ, ପରେ କୋଉ ଭରସା? ପଚାରିଲା, 'ତଥାପି ତୋର ମନ ବୋଲି ତ ପୁଣି କିଛି ଥିବ?'

ଦିଗ ଜବାବ ଦେଲା, 'ମନ ଆଉ କା'ର ନାହିଁ? ପାନପତ୍ର ଭଳି ମୁହଁ । କଳା ମିଚି ମିଚି ବାଳ ଅଣ୍ଟାରେ ପଡୁଥିବ । କାଳି, ଗୋରୀ ଯାହା ହେଲେ ଚଳିବ । ହଁ, ଆଉ ଗୋଟାଏ କଥା । ପିଇବା ବେଳେ ଗାଳି ଦଉନଥିବ ।'

ଦିଗ ମନକଥା ଜାଣିଲା ପରେ ଲୁଚନ ଖୁସ୍ । କଥାରେ ହସ ଭରିଦେବା ପାଇଁ କହିଲା, 'ଦିଗ, ତୁ ଗୋଟାଏ କଥାକର । ଟୋକୀଟେ ଖୋଜ, ଯାହାର ଦେହ କଳା ଆଉ ବାଳ ଗୋରାଥିବ ।' ଶୁଣି ଦିଗ ହସିଲା ଯେତେ, ତା'ଠାରୁ ବଡ଼ ପାଟିରେ ହସିଲା ଲୁଚନ

ନିଜ କଥା ନିଜେ ଶୁଣି, ଭାରି ମଜାଦାର କଥାଟିଏ କହିଲା ବୋଲି ।

ଝିଅ କଥା ନ ସରୁଣୁ, ଦିଗ ଆରମ୍ଭ କଲା ପଇସା କଥା । କଣା, କୁଜା, ଛୋଟା ସଭିଙ୍କର କୁଆଡ଼େ ପଇସା ଥିଲେ ଓଜନ ଅଛି । ଏଭଳି ଫମ୍ପା କଥାକୁ ପାରି ହେବାପାଇଁ ଲୁଚନ ଚୁପ ରହିଲା । ସବୁ କଥାରେ କଣା, କୁଜା, ଛୋଟା ଭଳି ଶବ୍ଦ ତାକୁ ବେମତଲବ, ଅଦରକାରୀ ମନେ ହୁଅନ୍ତି । ପୁଣି କୋଉ ନୂଆ କଥାଟିଏ କହୁଛି ଯେ ସେ? ଦିଗର କଥାଗୁଡ଼ା ସବୁଦିନେ ଏମିତି, ଅଧାରୁ ଅଧିକ  କଥାରେ ଓଜନ ନଥାଏ । ଛୋଟ ଛୁଆ ଭଳି । ପିଲାଦିନୁ ମା' ନାହିଁତ ! ଲୁଚନ କାରଣ ଖୋଜି ପାଏ । ତା ନିଜର ମା' ଥିବାଟା ଦିଗର ଆଖି ଥିବାଠାରୁ ସେତେବେଳେ ତାକୁ ଆହୁରି ବଡ କଥା ଭଳି ଲାଗେ । ଦିଗ ପ୍ରତି ତାର ଦୟା ହୁଏ । ସେଥିପାଇଁ ତ ଦୁହେଁ ଜୀବନ ଦିଆ ସାଙ୍ଗ । ନିଶା ଥିଲେ କ'ଣ, ନିଶା ନଥିଲେ କ'ଣ? କେବେ ଲୁଚନ ତା ସାଙ୍ଗରେ ଢୁକେ ପିଇ ଦେଇଛି, ତ କେବେ ଭାଟିରୁ ତାକୁ ପିଠିରେ ଉଠେଇ ଆଣୁଛି । ପୁଣି ନିଶା ନଥିଲେ ଦୁହେଁ, ରାତି ଅଧଯାଏ ବନ୍ଧ ଆଡ଼ିରେ ବସି ଗୁଡ଼ାଖୁ ଘଷୁଛନ୍ତି । ତା ଆଖିନାହିଁ ବୋଲି ସିନା ଲୁଚନ କୌଣସି ଆଖିଥିଲା ଲୋକକୁ ବିଶ୍ୱାସ କରିପାରେନା, ନୋହିଲେ ଦିଗଟା ଭଲ ।

ଲୁଚନ ନିରୁତ୍ତର ରହିବାରେ ଦିଗ ତା କଥାର ଓଜନ ନଥିବା କଥା ଅନୁମାନ କରିପାରିଲା ନାହିଁ । ବରଂ ଲୁଚନକୁ ତା କଥା ଆଡ଼କୁ ଟାଣିବା ପାଇଁ କହିଲା, 'ଲୁଚନ, ତୁ ଲଟେରୀ ଟିକଟ ଗୋଟାଏ କିଣ ତ ଏଥର ।'

- କ'ଣ ହେବ ସେଥିରୁ? ଲୁଚନ ଗଂଭୀର ହୋଇ ପଚାରିଲା ।

- ଧୂସରବାହାଲର ଛୋଟାକୁ ଦେଖିଛୁ, ଯେଉଁ ସୀତାଚୋରୀ ଗୀତ ଗାଇ ଭିକମାଗେ? ଗଲା ହାଟଦିନ ଲଟେରୀରେ ଫଟଫଟିଟାଏ ପାଇଛି ।

- ମୁଁ ତା ହେଲେ ଟି·ଭି·ଟାଏ ପାଇବି ।' ଲୁଚନ କହିଲା ।

- ଟି·ଭି· ମିଳୁ କି ରେଡ଼ିଓ, ମିଳିବ ତ କିଛି ।' ଦିଗ ଲୁଚନର ମଜାକ ବୁଝି ନପାରି ଭାରି ସରଳ ଭାବରେ ମତ ଦେଲା ।

ନିଜ କଥାକୁ ସ୍ପଷ୍ଟ କରିବାକୁ ଯାଇ ଲୁଚନ କହିଲା, 'ହଇରେ ବୁଦ୍ଧୁ, ଛୋଟାକୁ ଫଟଫଟି, କଣାକୁ ଟି·ଭି· ଆଉ ଭଏଁରାକୁ ରେଡ଼ିଓ ମିଳି କି ନ ମିଳି କି ଲାଭ?'

ଦିଗ ଏବେ ବୁଝିପାରି ବଡ଼ ଜୋରରେ ହସିଲା । ଲୁଚନ କିନ୍ତୁ ପୁରାଚୁପ୍ ।

ଏତେବେଳକୁ ଦୁହେଁ ଗାଁ ଭିତରକୁ ପଶି ସାରିଥିଲେ । ତାଙ୍କ ଘରଆଡେ ବାଟ ଭାଙ୍ଗିବା ଆଗରୁ ଦିଗ କହିଲା, 'ଘରେ ତୁମର ଛାଡ଼ିଦେଇ ଆସିବି କି ଯିବୁ ଏକା ?'

ଲୁଚନ ମନାକଲା, 'ମୁଁ ବନ୍ଧକୁ ବି ଏକା ଯାଇଥାନ୍ତି । ତୁ ତୋର ଆସିଥିଲୁ ସାଙ୍ଗରେ ।' ଦିନରେ ଦଶ ବାର ଥର ଏଭଳି କଥାକହେ ଲୁଚନ—ତାର ସାହାଯ୍ୟ ଦରକାର ନଥିଲା ।

ଦିଗକୁ ବେଳେ ବେଳେ ଚିଡ଼ିମାଡେ । ଶଳା କଣା ସବୁଦିନେ ଟାଁଚିକରି ପଦେ କହିଦେବ । ପୁଣି ପସ୍ତାଇ ହୁଏ ପରେ, ତାକୁ ପଚାରିବାର ବି କି ଦରକାର ଥିଲା? ତାର ଦେଖାଇ ହେବାର ମତଲବ ନଥିବା କଥା ସ୍ପଷ୍ଟ କରିବାକୁ ଯାଇ ସେ କହିଲା, 'ଅନ୍ଧାର ରାତି ବୋଲି କହୁଥିଲି ।'

ଲୁଚନ ଆହୁରି ବିଗିଡ଼ି ଗଲା, 'ମରରେ ମୋର ଅନ୍ଧାର ରାତି ।' ଦିଗ ପୁଣି ତାର ଭୁଲ ବୁଝିପାରିଲା । ଲୁଚନକୁ ଅନ୍ଧାର ରାତି ଆଉ ଜନକ ରାତିରେ କ'ଣ ଫରକ୍ ? ସବୁ ତ ତାପାଇଁ ସମାନ । ମୁହଁରୁ ପୁଣି କାଳେ ୟାତ୍ରୁ ସ୍ୟାତ୍ରୁ ବାହାରିଯିବ—ଏହି ଆଶଙ୍କାରେ ସେ ଆଉ କିଛି ନକହି ଘରଆଡ଼େ ମୁହଁଟାଇଲା । ଲୁଚନ ବି ତା ଘରଆଡ଼େ ।

ଲୁଚନ ଘରେ ପହଞ୍ଚିଲା ବେଳକୁ ମା'ବୁଢ଼ୀ କବାଟ ଆଉଜି ଶୋଇ ଗଲାଣି । କବାଟକୁ ଧୀରେ ଠେଲିଦେଇ ଲୁଚନ ଭିତରକୁ ପଶିଲା । କବାଟ ଠେଲାର ଆବାଜରେ ସଖୀବୁଢ଼ୀର ନିଦ ଭାଙ୍ଗିଗଲା । ବଡ଼ ପାଟିରେ ବୁଢ଼ୀ କହିଲା, 'କେଉଁଠି ମରୁଥିଲୁରେ ରଇ, ଏତେ ବେଳଯାଏଁ ? ଖାଇଦେଇ ମୁଠେ ଯାଇ ମରନ୍ତୁ ହେଲେ ? ମତେ ସାଧିବାକୁ ଖାଲି ଜନମ ହେଇଛୁ ଯେ ।'

ଲୁଚନ ଓଲଟି ପଚାରିଲା, 'କିଏ କହିଲା ତତେ ଚାକିବାକୁ ? ମୁଁ ତ ଖାଇ ଆସିଛି ।'

- କୋଉ ବାପ ତତେ ଖାଇବାକୁ ଦେଲାରେ ଶୁଣେ ତ ଆଗ ।' ବୁଢ଼ୀ ଆହୁରି ରାଗିଗଲା ।

କଥା ଓଲଟାଇ ଲୁଚନ କହିଲା, 'ମୁଁ ଖାଇବିନି ଆଜି । ଭୋକ ନାହିଁ । ତିନିଥର ବାହାର୍କେ ଗଲିଣି ।'

- ସକାଳୁ କିଛି ଖାଇନି, କହୁଛି ଭୋକ ନାହିଁ । କେତେ ହୀନସ୍ତା ହେଇ ୟା'ଘରୁ ତାଘରୁ ମୁଁ ମାଗି ଆଣୁଛି, କହୁଛି ଖାଇବ ନାହିଁ ।' ଟିକେ ନରମିଯାଇ ବୁଢ଼ୀ ପୁଣି କହିଲା, 'ପେଟ ଗରମ ହେଇ ବାହାର୍କେ ଧରିଛି । ଖାଇଦେ ପଖାଳ ଦିରାକ ।'

ମାଗିବା କଥା ଶୁଣି ଲୁଚନ ରାଗ ସମ୍ଭାଳି ପାରିଲା ନାହିଁ । କହିଲା, 'କିଏ କହିଲା, ତତେ ମାଗିବାକୁ? ଦିନେ ଅଧେ ନଖାଇଲେ କ'ଣ ସଂସାର ଓଲଟି ଯିବ?'

ସଖୀବୁଢ଼ୀ ଏବେ ଆହୁରି ନରମି ଗଲା । ମଗା ଯଚା କଥା ଶୁଣିଲେ ପୁଅ ତାର ପିଟିମାରି ପକାଏ । କହିଲା, 'ହଁ ହଁ ହେଲା, ଖାଇପକା ।'

ଲୁଚନ କହିଲା, 'କହିଲିପରା, ମୁଁ ଖାଇବି ନାହିଁ । ତୁ' ଖା ।'

ବୁଢ଼ୀ ଏବେ ଓଲଟା ରାଗିଯାଇ କହିଲା, 'କିରହା, ତତେ ଲାଜ ନାହିଁ ଯେ, ମତେ କହୁଛୁ, ଖାଇପକା । ମୁଁ ନଖାଇଲେ ଯାହାସବୁ ଅଚଳ ହେଇଯିବ ? ନେ ଖାଇ ମର ଜଲଦି । ଅଧରାତି ହେଲାଣି ।'

- କେତେଥର କହିଛି ତତେ ! ଦିନସାରା ୟା'ଘର ତା'ଘର ହେଇ କାମ କରିବୁ ତୁ, ଆଉ ଖାଇଲା ବେଳକୁ ମୁଁ ? କେମିତି ଦିଶିଲୁଣି ଦେଖିଛୁ ଥରେ ନିଜକୁ ?' ଲୁଚନ କହିଲା ।

- ହୁଁ ରେ ହୁଁ, ମୋର ଯାହା ବଳ ବୟସ ଅଛି ମୋଟା ସୋଟା ହେବାକୁ ? ନେଇ ମରୁଛି ହେଲେ ସେ ଗାଡ଼ସୁଆ ଯମ ? ଫାବି ଯା'ନ୍ତି ଏ ନର୍କରୁ ।'

- କିରେହୀ, ଯେତେବେଳେ ଦେଖ ମରିବା କଥା କହିଲା । ସତ କହୁଛି ମା, ତୋ ଆଗରୁ ଯଦି ମୁଁ ନ ମରିଛି, ଦେଖିବୁ । ମହରା ଖାଇଦେବି ଯେବେ ଜାଣିବୁ ।' ଲୁଚନ ଏବେ କାନ୍ଦିବା ଉପରେ ।

ବୁଢ଼ୀର ରାଗ ବି ଏଣିକି ପଞ୍ଚମରେ । 'ଏ ରଇ ମଲା ହଜିଲା କଥା ଯଦି ଆଉ ଦିନେ ତୁଣ୍ଡରେ ଧରିଛୁ, ତୋର ତଣ୍ଟି ଚିପି ନଦେବି ଯଦି କହିବୁ । ଏତେ କଷ୍ଟରେ ପାଳି ପୋଷି ବଡ଼ କରିଛି, କ'ଣ ମହରା ଖାଇବୁ ବୋଲି, କିରହା ?'

ଲୁଚନ ଜବାବ ଦେଲା, 'ଆଉ ତୁ କାହିଁକି ରୋଜ କହୁଛୁ ମରିବୁ ମରିବୁ ବୋଲି ।'

- ମୁଁ କହିଲି ବୋଲି ତୁ ଯୁଆନ ପିଲା ବି କହିବୁ?' ବୁଢ଼ୀର ସଫେଇ ।

- ନା, କେବେ କହିବୁନି ତୁ ମରିବା କଥା ।' ଲୁଚନ ଛୋଟପିଲା ଭଳି ଅଳିକଲା ।

ବୁଢ଼ୀ ବି ନିଜକୁ ଯଥା ସମ୍ଭବ କଅଁଳ କରି କହିଲା, 'ହଉ ହେଲା । ଖାଇଦେ ଜଲଦି ।'

- ତୁ ଅଧା ଖାଇବୁ ଯଦି ।

- ଏ ରଇ, ମୁଁ ଖାଇଛି ବଡବ୍ରାହ୍ମଣ ଘରେ ।

- ମୋର ମୁଣ୍ଡ ଛୁଇଁ କହିଲୁ ।

- ଏତେ ଟିକେ କଥାରେ ମୁଁ ମୁଣ୍ଡଛୁଇଁ ପାରିବିନି ।

- ତାହେଲେ, ଖା ଅଧା ।

ଅଗତ୍ୟା ସଖୀବୁଢ଼ୀ ମଟାଡଲୁ ତେକଚି କାଢିଲା । ଲୁଚନ ପଖାଳ ଭାଗ କଲା । ମା'ପୁଅ ଖାଇ ବସିଲେ । ନିମିଷଟାକରେ ନିଜ ନିଜ ଭାଗର ପଖାଳ, ଥିର, ସବୁ ରାମ୍ପି

ଦେଇଗଲେ ଦୁହେଁ । ପୁରା ଦିନକର ଓପାସ । କ'ଣ ହେଲେ କରନ୍ତେ? ଚାପ୍‌ରେ ଲେଖା ପଖାଳ ବି ହେବନି ଜଣେ ଜଣକର ଭାଗରେ । ହେଲେ, ଭୋକ ମେଂଟି ନଥିଲେ ବି ଦୁହେଁ ଖୁସ୍ । ଲୁଚନ ଖୁସ୍ ଯେ, ମା ଖାଇଛି, ଆଉ ବୁଢ଼ୀ ଖୁସ—ପୁଅ ବି ଖାଇଛି । ନିଜ ନିଜର ଖଟ ଆବୋରିଲା ବେଳେ; ପେଟରେ ଭୋକ ଥିଲା, ତା'ଠାରୁ ବେଶି ଦେହରେ ଥକାନଥିଲା, କିନ୍ତୁ ମନ ଖୁସ୍ ଥିଲା ବୋଲି, ଲାଗୁଥିଲା ଯେମିତି କିଛି ନଥିଲା ।

## ॥ ୨ ॥

ପହ ପହରୁ ଉଠି ସଖୀ ଛରାପାଣି ଦେଲା, ବାସି ଖୁରି ମାଜିଲା । ଲୁଚନକୁ ନିଦରୁ ଉଠାଇ କହିଲା, 'ଶୁଣ୍, ମୁଁ ଯାଉଛି । ସୁରୁସାହୁ ଘରେ ଖୁରିଟି ଫେରାଇ, ବଡ଼ବ୍ରାହ୍ମଣ ଘରେ ଚୂନ ଘଷିବି । ଘରେ ଥିବୁ । ଥିରପିଆ ବେଳକୁ ଆସିବି । କିଛି କ'ଣ ଆଣିଲେ ଖାଇବୁ ! ମୋର ଡେରି ହେଲେ ତୋର କକା ଘରୁ ବାସିମୁଠେ ମାଗି ଖାଇଥିବୁ । ଅଖିଆ ଘରୁ ବାହାରିବୁ ନାହିଁ ।'

ମା ପଦେ ଅଧେ କହି ପଳେଇବ ବୋଲି ପ୍ରଥମେ ଲୁଚନ ତ କିଛି କହୁ ନଥିଲା । କଥା ତାର ବନ୍ଦ ହେବାର ନଦେଖି ପାଟି କଲା, 'ତୁ ଗଲୁ ଆଗ, ନିଜେ ଶୋଇବନି କି ଶୋଇ ବି ଦେବନି କିରେହୀ ।'

ସୁରୁସାହୁ ଘରୁ ଫେରି ବଡ଼ବ୍ରାହ୍ମଣ ଘରେ ସଖୀ ପହଞ୍ଚିବା ବେଳକୁ ରଘୁ ମା ଗାଧେଇ ଗଲାଣି । ଭୁଆସୁଣୀମାନେ ଉଠି ନାହାନ୍ତି । ପୁଅମାନେ ଯାହା କାମରେ ଗଲେଣି । ଘର ମେଲା । କିଏ ଯଦି କିଛି ବୋହି ନିଏ, ତାକୁ କହିବେ । ଟିକେ ହେଲେ ଧକ ଥାଆନ୍ତା ଆଜିକାଲିକା ବୋହୂମାନଙ୍କର ? ଜିନିଷ ରହିଲେ କେତେ ଗଲେ କେତେ? ସବୁ ଦୋଷ ରଘୁମା'ର । ବୋହୂମାନଙ୍କୁ ଟିକେ ଆୟତ୍ତରେ ରଖିନି । ନିଜେ ଦିନରାତି ଖଟୁଥିବ, କାହାକୁ କିଛି କହିବ ନାହିଁ । ଲୁଚନମା'ର ରାଗ ବୋହୂମାନଙ୍କରୁ ଆସି ରଘୁମା'ଠାରେ ଅଟକିଲା ।

ପାଟପୁର ଗାଁକୁ ବୋହୂହୋଇ ଆସିବା ଦିନୁ ସଖୀର ବ୍ରାହ୍ମଣ ଘରକୁ ଗତାଗତ । ସେତେବେଳକୁ ରଘୁର ମା' ବି ନୂଆଁ ହେଇ ଖଟି ଥାଏ । ଲୁଚନର ବା' ଏ ଘରେ ଗୋତି ଥାଏ । କୋଡ଼ି କୋଡ଼ି ବର୍ଷ ହୋଇଯିବଣି ସେ କଥା । ଦୁହେଁ ଭୁଆସୁଣୀ । କଥା ଗପିଲେ ବେଳ ଗଡ଼ିଯାଏ । ସେଦିନୁ 'ନାନୀ' ଛଡ଼ା ଅଲଗା କିଛି ଡ଼ାକେନି ରଘୁମା' ସଖୀକୁ । 'ହେଲେ ନହେଲେ ମୋ ଆଗରେ ତା ଘରକରା ।' ସଖୀ ମନେ ମନେ ଭାବେ, ପୋଡ଼ାମୁହିଁ ଶାଶୁବୁଢ଼ୀ ତାର କେତେ ଆକଟରେ ନ ରଖିଛି ବିଚାରୀକୁ । ଆଜି ବୁଢ଼ୀ ବଞ୍ଚିଥିଲେ, କେତେ ଦିନୁ ମରି ସାରନ୍ତାଣି ରଘୁମା' । ତା ଦୁଃଖର ଦିନ ଦେଖିଛି ସଖୀ, ସୁଖର ଦିନ

ବି ଦେଖୁଛି ଆଜି । ବୋହୂ ଖଟି ନାତିନାତୁଣୀ ଗଦାଏ ହେଲେଣି । ଲୁଚନ ପାରିଲାର ହୋଇଥିଲେ ଆଜି ସଖୀର ବି ବୋହୂ ଖଟନ୍ତାଣି । ହେଇଥିଲେ ନାତିନାତୁଣୀ ବି ହୁଅନ୍ତେଣି ଦୁଇ ଚାରୋଟି । ସବୁ କର୍ମର ଫଳ । ମା'କୁ ପୋଷିବ କ'ଣ, ଯୁଆନ ପୁଅକୁ ଥିର ଢୋକେ ଓହ୍ଲାଇ ନଦେଲେ ନ ଚଳେ । କପାଳକୁ ଲୁଚନର ବା' ଗାଡ଼ସୁଆ ହେଲେ ବଞ୍ଚିଥାନ୍ତା? କିରହ୍ମା ଅଂଧ ପୁଅଟେ କୋଳରେ ଦେଇ ମରିଗଲା । 'ମୁଁ କାହିଁକି ଭାଗନେବି ସବୁ ଦୁଃଖ ? ମୁଁ ବି ମରିଥାନ୍ତି ଯଦି ? ତୋ ପୁଅକୁ ତୁ ନସଂଭାଳିବୁ ଯେ, କିଏ ସଂଭାଳିବ, ରଇ ?' ଲୁଚନର ମଲା ବାପକୁ ସଖୀ ଗାଳି ଦିଏ, ଭୂଲି ଯାଏ ଯେ, ସେ ଶୁଣୁନି ତା'କଥା । ମନେ ପଡ଼ିଲେ ପସ୍ତାଏ ପୁଣି । ଆହା, କୋଉକାଳୁ ମରି ବିଚରା ଦେବ୍ରୂପ ହୋଇଗଲାଣି । ତାକୁ ଦୋଷ ଦେଇ କି ଲାଭ ? ବଂଚିଥିଲେ ସେ କ'ଣ ଆଜି ସଂଭାଳୁ ନଥାନ୍ତା ତା କୁଟୁମ୍ବ? ନାହିଁ ବୋଲି ସିନା କଥା ପଡ଼ିଛି ।

ବାହା ହେବାର ବର୍ଷ ପାଞ୍ଚଟା ନହେଉଣୁ ଲୁଚନର ବା' ଯେବେ ତାଳ ଗଛରୁ ପଡ଼ି ମଲା, ପରା ପାଟକରେ କେତେ ଲୋକ ତାକୁ କେତେ ବୁଦ୍ଧି ଦେଲେ । 'ଘର କରି ଯା, ଅଂଧ ପୁଅଟିର ଭରସାରେ କ'ଣ ଦିନ ବିତିବ? ଯୁଆନ ବୟସ । କେତେବେଳେ କି କଥା, ଥାଏ ତ !' ତାଙ୍କ ଗାଁର ଲବାରୁ ଆସି ନିଜ ମୁହଁରେ କହିଲା ରଖିବ ବୋଲି । ସଖୀ ବି କେତେଥର ଯେ ନଭାବିଛି ଲବାରୁ କଥା ତା ନୁହେଁ । ହେଲେ କହିଲା, ଏକା ଆସିବୁ । ପୁଅକୁ ଧରି ଆସିଲେ, ବାପା ମା'ମୋର ରାଜି ହେବେ ନି । ତିନି ବର୍ଷର ଅଂଧ ଛୁଆଟିକୁ ଛାଡ଼ି ସେ ହେଲେ ଘରକରି ଯା'ନ୍ତା ? ଲାଜନାହିଁ ତା ମୁହଁକୁ ? ହଉ ପଛେ ଅଂଧ, ତା ନିଜ ଜନ୍ମକଲା ପୁଅ ତ ! ଅବିହାଡ଼ି ମା ତ ନିଜ ଛୁଆକୁ ଛାଡୁନି । ଆଉ ମୁଁ ହେଲେ ନିଜ ପୁଅକୁ ଛାଡ଼ି ଘରକରି ଯିବି? ପୋଡ଼ିଯାଉ ସେ ଘରକରା । ସଖୀ ସଫା ସଫା ଶୁଣାଇ ଦେଲା । ସେ ଥରେ ଯେଉଁ ଫଇସଲା କଲା, ଆଜି ବୁଢ଼ୀହେଲା ପଛେ, ପଛକୁ ଦେଖିନି ।

ଏ ଯାଏଁ ଭୂଆସୁଣୀମାନେ ଉଠି ନାହାନ୍ତି । ରଘୁର ମା'ଗାଧେଇ ଫେରିବାର ବେଳ ହେଲାଣି । ଆଜି ଦିନକରେ କାମ ସରିଗଲେ ଭଲ । ପଟୁଆଁ ଭୂତି । ଏବେ କାମ ସରିଲେ, ପୁରା ଦିନର ଭୂତି ଦେବେ । କାମ ବୋଇଲେ ବି କେତେ ଯେ ? ଦି'ଟା ବଖରା ଚୂନ - କାଲି ଘଷି ଦେଇଥାନ୍ତା । ବୁଢ଼ୀ ହେଲା ବୋଲି କଥା ପଡ଼ିଛି ।

'ଏ ଉଠରେ ବୋହୂମାନେ । କେତେବେଳ ହେଲାଣି । ଖଟ ପିଣ୍ଡା ତେର । ଚୂନ ଘଷିବି ସେ ଘରେ ।' କହିଦେଲା ସିନା ଏତିକି, ଡରୁଥାଏ ମନେ ମନେ ସଖୀ । ଆଜିକାଲିକା

ଝିଅ । ମୁହଁ ଓଲଟାଇ ଦେଲେ, କୁଆଡ଼କୁ ହେବ ? ଶାଶୁବୁଢ଼ୀ ତାଙ୍କର ଥିବାଯାକେ ମାନ ଇଜ୍ଜତ ଅଛି ଏ ଘରେ । ତା ଅନ୍ତକେ, 'ତୁ' 'ତା' ନକରିବେ ବୋଲି କିଏ କହିବ?

ବଡ଼ବୋହୂ ଉଠିଲା, ରଘୁର ସ୍ତ୍ରୀ । ବର ତାର ଦୂର ସହରରେ ଚାକିରୀ କରେ । ଦୁଇ ଚାରି ମାସରେ ଥରେ ଆସେ ଗାଁକୁ । ଲୁଚନ ସାଁଗରେ ମାସେ ମାସକର ସାନବଡ଼ ଦୁହେଁ । କାଲି ଆସିଛି । ଭେଟିନି ଏ ଯାଏଁ ତାକୁ ସଖୀ । ଭେଟିଲେ ଲୁଚନ ପାଇଁ ପେନସନ କାଗଜଟାଏ କରିଦେବାକୁ ସବୁଥର କହେ ତାକୁ । ସରକାର ମାସକୁ ମାସ ଅପାରୁମାନଙ୍କୁ ପଚାଶ ଶହେ ଟଙ୍କା ଦିଏ କୁଆଡ଼େ ସେଥିରେ । ସେତିକି ମିଳିଲେ ବି ପୁଅ ତାର ଗୁଲୁଗୁଲା ହୁଅନ୍ତାନି । ସବୁଦିନ ହେଲେ ବଂଚିଥିବ ସେ ? ମଲା ଆଗରୁ ଲୁଚନର ଥଇଥାନ ହେଲେ ସିନା ? ମରିବା କଥା ପଡ଼ିଲେ ବୁଢ଼ୀର ଛାତି ଚାଉଁକରି ସୁଖିଯାଏ । ପୁଣି ନିଜକୁ ବୁଝାଏ, ଅଂଧକରି ଯଦି ଭଗବାନ ଜନ୍ମଟେ ଦେଇଛି ଲୁଚନକୁ, ପେଟଟାଏ ପୋଷିବାର ଉପାୟ କରିବନି? କିଛି ନହେଲେ ଭିକ ମାଗିଲେ ତ ଠାଁଚେ ମାଣେ ଚାଉଳ ମିଳିଯିବ ! ଚାଉଳ ଡକ ଦେଲେ, ତା କାକୀ ହେଲେ କଣ ଥିର ଢ଼ୋକେ ଓହ୍ଲାଇ ଦେବନି ? ହେଲେ ରଇ କ'ଣ ଭିକ ମାଗି ମରିବ? ଭୋକରେ ମରିବ ପଛକେ । ପଚାରିଲେ କହେ, 'ତୋ ସାଁଗରେ ମୁଁ ବି ମରିଯିବି ଗୋ ମା ।' ବୁଢ଼ୀ ପୁଣି ହତାଶ ହେଲା । ଆଜି ରଘୁକୁ ଭଲକରି ପେନସନ କାଗଜ କଥା କହିବ । ନୋହିଲେ ବାଟ ନାହିଁ । କେତେବେଳେ କେଉଁ କଥା?

ରଘୁର ମା' ଗାଧେଇ ଫେରିଲା । ବୋହୂ ବି ମୁହଁ ଧୋଇସାରି ଖଟ ପିଣ୍ଡା ତେରିଲା । ଲୁଚନର ମା ଟେବୁଲ ଉପରେ ଷ୍ଟୁଲଟେ ରଖି, ତା ଉପରେ ଚଢ଼ି ଚୂନ ଘଷିବା ଆରମ୍ଭ କଲା । ସର୍କସ କଲା ପରି ।

ରଘୁ ମା' କହିଲା, 'ନାନୀ, ବୋହୂ କହୁଛି, ଚୂନ କେଉଁଠି ମୋଟା ମୋଟା ଲାଗୁଛି ତ, ଆଉ କେଉଁଠି ମୋଟେ ଲାଗୁନି ।'

-ତ ପୁଣି କେଉଁଠି ଗାର କାଟିଲାପରି ହଉଛି ।' ବୋହୂ ଯୋଡିଦେଲା ।

ସଖୀ ବୁଢ଼ୀର ମୁହଁ ଖିସେଇ ଗଲା । ଖଟି ଆସିବା ଦିନୁ ଏ ଘରେ କେବେ କେହି କାମ ବାହାନି ନାହାନ୍ତି । କାଲିର ଟୋକୀଟେ ଘରକୁ ଆସି କେଡ଼େ କେଡ଼େ କଥା କହିଲାଣି । ସବୁ କରମ ଲେଖା । ତା'ରି ହାତରେ ଏବେ ପୂରୁଖା ପାଇବେ । ମୁଁ ବା କୋଉ କ୍ଷେତର ଢେଲ? ନିଜକୁ ଯଥା ସମ୍ଭବ କଁଅଳ କରି କହିଲା, 'ଏ ବୁରୁସ ଏମତି ଲୋ ମା । ମୁଁ ହେଲେ କ'ଣ କରିବି?'

- ବ୍ରୁସ ତ ନୂଆ । ତୁମେ ଘଷି ଜାଣିଲେ ଖାଲି ହେଲା । ବୋହୂ ପୁଣି ମୁହଁ ଦେଲା ।

ସଖୀ ବୁଢ଼ୀ ଆଉ ସଂଭାଳି ପାରିଲା ନି । ଦେହଟା ସାରା ତାର ଜଳିଗଲା ଯେମିତି । କହି ନଦେବ ଯଦି ନିଜେ ଜଳିଯିବ କାଳେ । କହିଲା, 'ତୋ ଶାଶୁ ଖଟି ଆସିବା ଆଗରୁ ମୁଁ ଏ ଘରେ କାମ କରୁଛି, ବୋହୂ । କେବେ କାହାରି ନାପସନ୍ଦ ହୋଇନି । ଆଜି ବୁଢ଼ୀ ହେଲି ବୋଲି ହାତରୁ କାମ ବିଗୁଡୁଛି ।'

ରଘୁର ମା' ମଝିରେ ପଡ଼ି କଥା ସଂଭାଳିଲା, 'ତାଙ୍କର କାମ କରିବାର ଆଉ ହେଲେ ବୟସ ଅଛି ବୋହୂ ? ନ କଲେ ନ ଚଳେ ବୋଲି କରୁଛନ୍ତି । ପୁଅ ପାରିଲାର ହୋଇଥିଲେ କେତେ ଆଡ଼ତାରେ ଘରେ ବସିଥାନ୍ତେ । ପୁଅ ଅଂଧ ବୋଲି ସିନା କଥା ପଡ଼ିଛି, ଆହା !'

ଲୁଚନର ମା' କିଛି କହୁନଥାଏ । ରଘୁ ମା'ର 'ଆହା' କଥା ତାଙ୍କୁ ଚିଡ଼ା ଲାଗେ । ହେଲେ ବୋହୂ କଥା ଆହୁରି ଚିଡ଼ା ଲାଗୁଥିବାରୁ ତାହା ଜଣା ପଡୁନଥାଏ ଆଜି । ବରଂ ବୋହୂ କଥାକୁ କାଟିବା ପାଇଁ ଉଦିଷ୍ଟ ହୋଇଥିବାରୁ କିଛି ଭଲ ବି ଲାଗୁଥାଏ ।

ଗୁଣୁଗୁଣୁ ହୋଇ ବୋହୂ କହିଲା, 'ଆମେ ତାଙ୍କୁ କାମ କରିବା ପାଇଁ ଭୁତି ଦଉଛେ କି ପୋଷିବା ପାଇଁ?' ସଖୀବୁଢ଼ୀ ବୋହୂ କଥାକୁ ଶୁଣି ଅଶୁଣା କରିଦେଲା । ଗୋରୁ ସହେ କି ଗରିବ ସହେ । ଧରି ବସିଲେ ଏମିତି ଛୋଟ ଛୋଟ କଥାକୁ, ଦିନ ଯିବନି କୋଉଠି ।

କିଛି ବେଳ ପରେ ରଘୁ ଫେରିଲା ଘରକୁ । ପହ ପହରୁ ଉଠି କ୍ଷେତ ବୁଲି ଯାଇଥିଲା ସେ । ଯେବେ ଗାଁ ଆସିବ କ୍ଷେତ ନ ବୁଲିଲେ ତାର ହୁଏନି ।

ରଘୁର ଆସିବାର ଦେଖି ଷ୍ଟୁଲ ଉପରେ ଥାଇ ଲୁଚନର ମା' ପଚାରିଲା, 'ରଘୁ, କାଲି ତୋ ଆସିବା କଥା ଶୁଣି ଲୁଚନ ଖାଲି ତୋ କଥା ପଚାରୁଛି । କହୁଛି, "ମୋର ଦାଦା ସାଂଗରେ ଟିକେ କଥାବାର୍ତ୍ତା କରନ୍ତି ଗୋ ମା । ପେନସନ କାଗଜ କଥା ।" ମୁଁ କହିଲି, "ଯିବୁ କେତେବେଳେ । ରହିବ ତ ଏବେ ଦିନେ ଅଧେ । ଦୁଇ ଭାଇ ମିଶି କଥାବାର୍ତ୍ତା କରିବ । ତୋର ବଡ଼ଭାଇ ରଘୁ କଣ ତତେ ଆଉ ସହାୟ କରିବ ନାହିଁ?" ଦିନେ ଅଧେ ରହିବୁ ତ ବାପା?' ଏକା ନିଶ୍ୱାସରେ କହିଗଲା ବୁଢ଼ୀ ।

ରଘୁ କହିଲା, 'ରହିବି ଯେ ବଡ଼ି, ଆଜି ତ ସହଲା ଯିବି । ବେଳବୁଡ଼ାକୁ ଫେରିବି ।' ଟିକିଏ ରାଗୁନଥାଏ ସେ । ପେନସନ କାଗଜ ହେଇ ନଥିଲେ ବି ଗଲା କେତେ ବର୍ଷ ଧରି ତାଙ୍କୁ ବୁଢ଼ୀ କାଗଜ କଥା ପଚାରୁଥିବା ପଛରେ ରଘୁର ବିରକ୍ତ ନ ହେବାଟା ଥିଲା ବଡ଼ କାରଣ । ଆଉ ମାନେ ତ କେତେବେଳୁ ହସି ଉଡେଇ ଦିଅନ୍ତେଣି ତା'କଥାକୁ । ବୁଢ଼ୀ କହିଲା, 'ଯଦି ସହଲା ଯିବୁ, ଆମ ଘର ଦେଇ ଯାଆନ୍ତୁ ହେଲେ । ଘରେ ଥିବ ଲୁଚନ ।

କରେଇ ଆଣନ୍ତୁ କାଗଜଟା ସହଲାରୁ ।'

ବୋହୂ ଉପରେ ପଡ଼ି କହିଲା, 'ଏଥର ତାଙ୍କର ସମୟ ହେବନି ବଡ଼ି । ଡାକ୍ତରଖାନା କାମ । କେତେ ଡେରି ହେବ କେଜାଣି?'

ଲୁଚନର ମା ଡରିଗଲା । 'ନା, ସମୟ ହେବ ଯଦି କହୁଥିଲି ଲୋ ମା ।' ରଘୁକୁ ପଚାରିଲା, 'ଆର ଥରକୁ ସେ କାଗଜ କଥା ବୁଝିବୁରେ ବାପା?' ଏଥର ନହେଲା ତ ଆରଥର ପାଇଁ କଥା ନେଇଯିବାକୁ ଚାହିଁଲା ବୁଢ଼ୀ ।

ରଘୁ କହିଲା, 'ହଁ ବଡ଼ି, ଆରଥରକୁ ବୁଝିବି । ଏଥର ବି ସମୟ ହେଲେ, ଅଫିସରେ କଥାଭାଷା ହେବି ।'

ଲୁଚନର ମା' ଉଷତ୍‌ରେ ଫାଟି ପଡ଼ିଲା । ଏମିତି ଭରଷା ସବୁଥର ଦିଏନି ରଘୁ । ଲାଗୁଛି, କରିବ ଆଗଥରକୁ କାଗଜଟା । ପଚାରିଲା, 'ଆଗ ଥରକୁ କେବେ ଆସିବୁରେ ବାବୁ?'

-ଦୁଇ ମାସ ଗଲେ ।' ରଘୁର ଉତ୍ତର ।

ରଘୁର ଛଅ ବର୍ଷର ପୁଅ ମଣ୍ଟୁ ସେ ପଟୁ କହିଲା, 'ଯେବେ ବାପା ଆସିବେ, ଆଈ ଖାଲି ପେନସନ୍ କାଗଜ କଥା ।' ପୁଅ କଥା ଶୁଣି ସମସ୍ତେ ହସିଲେ, ବୋହୂମାନେ ହସିଲେ, ରଘୁ ମା' ହସିଲା, ରଘୁ ବି ହସିଲା । ବୋହୂମାନେ ହସିଲେ ତାଙ୍କ ମନକଥା ପୁଅ କହିଦେଲା ବୋଲି; ରଘୁ ମା' ହସିଲା, ନାତି ତାର ବଡ଼ ଲୋକ ଭଳି କଥା କହି ଶିଖିଲାଣି ବୋଲି ଆଉ ରଘୁ ହସିଲା, ବାକୀମାନେ ହସୁଛନ୍ତି ବୋଲି । ହସିଲାନି ବୋଇଲେ ଜଣେ, ଲୁଚନର ମା ।

ସଖୀବୁଢ଼ୀ ଜାଣିଲା, ଲୁଚନର ପେନସନ୍ କାଗଜ କଥା ଏ ବେଳାରେ ଖାପ ଖାଉନି । ରଘୁକୁ ଏକା ଦେଖି ପଚାରିଲେ ଭଲ । ହେଲେ ଭେଟ ହେଲେ ତ? କିଛି ନ ହେଲେ ଛୁଆଗୁଡ଼ା ଲଟକି ଥିବେ ସେ ତା' ସାଁଗରେ । ପୁଣି ଭାବିଲା, ଆଜି ରଘୁ ବାଟକୁ ଆସିଛି । ତାକୁ ଆଉ ଟିକେ କହି ନଦେଲେ, ଭୁଲି ଯିବ ଯଦି? ମୋର ବା କି ଭରସା? ଦୁଇ ମାସ ପରେ ଆସିବା ବେଳକୁ ବଞ୍ଚିଥିବି ବୋଲି କି ମାନେ ଅଛି ? ଚାହିଁବ ଯଦି ରଘୁ, ମୁଁ ମରିଗଲେ ବି କରିଦେବ କାମଟି । ଲୁଚନ ରଇକୁ ତ ସବୁଥିରେ ଲାଜ । ମୋର ଅନ୍ତକେ, କାଗଜଟା କରିଦେ ବୋଲି ହେଲେ କ'ଣ କହି ପାରିବ? ଗୋରସ ପିଆ ଛୁଆଟିଏ କହିଦେଲା ତ କହୁ । କିଏ ଧରୁଛି ତା କଥାକୁ ? ସବୁ ସାହସ ଯୋଗାଡ଼ କରି ସେ ପୁଣି ରଘୁ ସାଂଗେ କଥା ହେବାକୁ ସ୍ଥିର କଲା । କାଳେ ସାହସତକ ମରିଯିବ-ଏହି ଭୟରେ ବୁଢ଼ୀ ସମସ୍ତଙ୍କର

ଛୁଆ କଥାରେ ହସିବାଟାକୁ  ଶୁଣି ଆଶୁଣା କରି ଦେଲା । 'କେତେବେଳୁ ଯେ ରଇ ତତେ ଭେଟି ଏ[illegible]ଣିରେ ବାପା ! କ'ଣ କରିବୁ, ଲାଜ ତ ଖାଇଲା ତାକୁ । ମୁଁ କହେ, "ତୋ ଧୋହ୍ମାନଙ୍କୁ କି ଲାଜରେ ରଇ ? ଯାଆନ୍ତୁ ସେଠିକି । ତୋ ଦାଦାମାନଙ୍କ ସଙ୍ଗେ ବସି କଥାବାର୍ତ୍ତା ହୁଅନ୍ତୁ । ଯିଏ ହେଲେ ତୋ କାଗଜ କଥା ଜିମା ନିଅନ୍ତେ ।" ବୁଢ଼ୀ ଜାଣେ, ରଘୁକୁ ଛାଡ଼ି ଆଉ କେହି କରିବେନି ଏ କାମ । ହେଲେ କଣ କହିପାରିବ ସତକଥା ?

ଲୁଚନ ମା'ର କଥା ରଘୁ ମା' ମନ ଦେଇ ଶୁଣୁଥିଲା । ରଘୁ ତଳକୁ ସାଧୁ, ଜପ ଆଉ ହରିକୁ ବି ବୁଢ଼ୀ ଲୁଚନଠାରୁ ବଡ଼ କରି ସାରିଲାଣି । ଏମିତି  ତ ରଘୁ ବି ଲୁଚନଠାରୁ ମାସେ ସାନ । ଥରେ ଅଧେ ସେ ନେଇ ଗୁଡାଉଚାର ହେବା ପରେ ରଘୁ ମା' ଶେଷରେ ମାନି ନେଇଥିଲା କଥାଟିକୁ । 'ହଁ, ତାକୁ ଖୁସି ଲାଗୁଛି ତ କହୁ । କାହା କଥାରେ ମୋ ପୁଅ କ'ଣ ବୁଢ଼ା ହୋଇଯିବ? ଆଜି ରଘୁର ସାନଭାଇ ସାଧୁ, ଜପ ଆଉ ହରିକୁ ବଡ଼ କରିଦେବାରୁ ଆଉ ସହି ପାରିଲାନି । କହିଲା, 'ଏ ଲୁଚନର ମା ! (ରାଗିଲେ 'ନାନୀ' ନ ଡ଼ାକି ଲୁଚନର ମା' ଡାକେ ସଖୀକୁ) ତୁମ ଲୁଚନଠାରୁ କ'ଣ ଆମ ହରି ବି ବଡ଼? ଏ ବର୍ଷ ତାକୁ ପନ୍ଦର ପୁରି ଷୋହଳ ଲାଗିଛି । ସହଲା ପାଠ ପାରିନି ।'

ଲୁଚନର ମା' ମାନିଗଲା ତୁରନ୍ତ । ନ ମାନି ଉପାୟ ନାହିଁ । 'ଘାଏ ଘାଏ ଭୁଲି ଯାଏଁ ଲୋ ଭଉଣୀ । କେତେ ହେଲେ ସୋର ରହିବ ! ମରିବା ବୟସ ହେଲା ଆସି ।' 'ରଘୁ ମା' ନ ଡାକି ଏମିତି ବେଳାରେ 'ଭଉଣୀ' ଡାକେ ସେ । 'ଭଉଣୀ' ଦୂରେଇ ଗଲେ 'ନାନୀ' ପାଖେଇ ଆସେ, ଜଣେ 'ଲୁଚନର ମା' ଡାକିଲେ ଆର ଜଣକ 'ଭଉଣୀ' ଡାକେ । ଏମିତି ପାଖେଇ ଆସୁ ନଥିଲେ କେବେଠୁ ହୁଏତ 'ନାନୀ-ଭଉଣୀ'ର ସଂପର୍କଟା ଦୁହିଁଙ୍କ ଭିତରେ ତୁଟି ସାରନ୍ତାଣି । ଯେଉଁ 'ମରିବା ବୟସ' 'ବୁଢ଼ୀ' କଥା ଆଉମାନେ କହିଲେ, ସଖୀକୁ ରାଗମାଡ଼େ, ଭାବେ ତା ଅପାରୁ ପୁଅର ଦାନା ମାରୁଛନ୍ତି ଏମିତି କଥା କହି, ସେ କଥା ଏବେ ସେ ନିଜେ କହି ନିଜକୁ ବଂଚାଇବାକୁ ଚେଷ୍ଟା କରେ ।

ଥିର-ପିଆ ବେଳକୁ ମାଏଝି ଭୁତିଆରକୁ କିଏ ପଖାଳ ଦଉଛି? ଭୁତି ତିନି ତାଁବି ଦେଲେ ଯାହାକୁ ଯେତେ ଭୁତିଆର । କିନ୍ତୁ ସଖୀ କାମ କଲାଦିନ ରଘୁ ମା' ପଖାଳ ଖୁରେ ଦବାକୁ ଭୁଲେ ନାହିଁ । କାଳେ ଅକାଳେ ଯଦି ଭୁଲି ଯାଏ, ଛିନା ଛକା ଦେଖି ବୁଢ଼ୀ ତାକୁ ମନେ ପକାଇଦିଏ, 'ରଘୁ ମା' କିଛି କ'ଣ ଦେବୁ ଭାଏଲ ? ସେ ରଇ ଚାକିଥିବ ଯେ । ତାକୁ ଲାଗେ 'ରଇ' ନ କହି 'ଲୁଚନ' କି 'ମୋ ପୁଅ' କହିଲେ କାଳେ ମନା କରିଦେବ । 'କଣା' ବୋଲି କହିଲେ ହୁଏତ ଆହୁରି ଦୁଇମୁଠା ଖୁରିରେ ଦେଇ ପାରନ୍ତି । ଅକରତବରେ

ପଡ଼ିଲେ ମଣିଷ ସବୁ ଭୁଲିଯିବ, 'ଅହା' 'ଚୁ....ଚୁ....' ସବୁକିଛି, କେବଳ ପେଟକୁ ଛାଡ଼ି । ପଖାଳ ଧରି ସଖୀ ଘରକୁ ଆସେ ।

ମଝିଆଁ ବୋହୂ କହେ, 'ବଡ଼ି, ସବୁ ପୁଅକୁ ଦେଇଦିଅ ଯେ, ନିଜେ କେମିତି ଦିଶିଲଣି ଦେଖିଛ ଥରେ?'

ରଘୁ ମା' କହେ 'ମା ମନ କେମିତି ବୁଝିବ ବୋହୂ ? ଆହା ! ପୁଅକୁ ଅଖିଆ ରଖି ନିଜେ କ'ଣ ଖାଇପାରିବ?'

ସାନବୋହୂ ଗଲା ବର୍ଷ ଖଟିଛି । ଭାରି ମଜା କରେ । ସବୁ କଥାରେ ତାର ଲଥାଟାଏ । ମୁହଁ ମଲକେଇ କହେ, 'ବଡ଼ି, ଆଉ ବେଳାକୁ ଗାଧି ଯାଅତ ! ଘାଟରେ କେହି ନଥିବେ । ପାଣି ଝଲମଲ କରୁଥିବ । ପଥର ଉପରେ ଛିଡ଼ାହେଇ ଘଡ଼ିଏ ବେଳ ଚାହିଁବ ପାଣିକୁ । ନିଜକୁ ଦେଖିବ ପାଣିରେ । କେମିତି ଦିଶୁଛ ଦେଖିବ ଥରେ । ପାନିଆଁଟେ ଦେବି, ମୁଣ୍ଡ ବି କୁଣ୍ଡେଇ ପକାଇବ ସେଠାରେ ।'

ସମସ୍ତେ ହସନ୍ତି । ଲୁଚନର ମା' ବି ଏଥର ଶୁଖିଲା ହସଟାଏ ହସେ । ନୋହିଲେ, ଯେମିତି କ'ଣ ଭାବିବେ ବାକୀମାନେ ! କହେ, 'ମୋର ଆଉ ବଳ ବୟସ ଅଛି ଯେ ମୁଣ୍ଡ କୁଣ୍ଡେଇବି ବୋହୂ? ତୁମେମାନେ କର ଏ ସବୁ ।'

## ॥ ୩ ॥

ସଖୀବୁଢ଼ୀ ଘରକୁ ଆସିବା ବେଳକୁ, ଲୁଚନ ଦାନ୍ତ ଘଷି ଟାକିଥାଏ । ମଟାତଳୁ ଡେକଚିଟା ଆଣି ପାଖରେ ରଖିଥାଏ । ମା' ଆସିବାର ଜାଣି ଡେକଚିଟା ବଢ଼େଇ ଦେଲା, ପଖାଳ ଭାଗ କରିବାକୁ । ମା' ପଖାଳ, ଲୁଣ, ମିର୍ଚ୍ଚା ସବୁ ଭାଗ କଲା । ନିଜ ଭାଗରେ ମା' କମ ନେଇଥିବ ଆଶଙ୍କା କରି ଲୁଚନ ଜିଦ୍ କଲା, ସେ ମା'ର ଭାଗ ନେବ, ଆଉ ମା' ତା ଭାଗ ନେଉ । ଲୁଚନ ଏବେ ନେଇଥିବା ଭାଗରେ ବୁଢ଼ୀ ପୁଣି ଗର୍ଯେ ପଖାଳ ଢାଳିଲା । ଲୁଚନ ଖୁସିରେ କହିଲା, 'ହଁ, ଏବେ ସମାନ ଭାଗ ହେଲା ।'

ବୁଢୀର କିନ୍ତୁ ରଘୁ କଥା ଆଡ଼େ ଧ୍ୟାନ । ସୁବିଧା ଉଣ୍ଡି ସବୁ ଲୁଚନକୁ ବୁଝାଇ ଦେବ । 'ଲୁଚନ, ବ୍ରାହ୍ମଣଘର ପିଲା ଆସିଛି କାଲି ।' ବୁଢ଼ୀ କହିଲା ।

ଲୁଚନ ପଚାରିଲା, 'କୋଉ ପିଲା ଗୋ ମା ? ରଘୁ ?'

ମା' କହିଲା, 'ହଁ, ତୋ କଥା ପଚାରୁ ଥିଲା । କହୁଛି, "ଲୁଚନର ପେନସନ୍ କାଗଜଟା ଯେମିତି ହେଲେ କରିଦେବି ଏଥର ।"

ଲୁଚନ କହିଲା, 'ସବୁଦିନ ତ ବୁଆ କହୁଛି । କେବେ କରିବ ଯେ?'

- ତୁ ତ ରଇ, ସବୁକଥାରେ କେଁ ଟାଏ ଖୋଜୁଥାଉ । ତା ହାତରେ କଥା ହେଇଥିଲେ, ଏତେ ଦିନ କାଗଜଟା ବାକୀ ଥା'ନ୍ତା? ଦୁଇ ଚାରି ମାସରେ ଥରେ ଆସିବ ଯେ କୁଆଡ଼ୁ ହେବ ସେ? ତା ନିଜର କେତେ କାମ ପଡ଼ିଛି । କ୍ଷେତରେ, ଖଳାରେ, ପୁଅ ଝିଅ କେତେ କଥା ଅଛି । ତଥାପି ଆସିଲା କ୍ଷଣି ପଚାରୁଛି, "ଲୁଚନର ପେନସନ୍ କାଗଜ କଥା କ'ଣ ହେଲା? ତା'ପାଇଁ କେବେ ଚିନ୍ତା କରିବୁନି ବଡ଼ି । ଏକା ପେଟର ନହେଲେ ବି ଭାଇ ତ ଆମର ସେ । ଆମ ଘରକୁ ଆଶ୍ରାକରି ତୋର ଦିନଗଲା । କାଲି ତୋ ଅନ୍ତକେ, ତାର କିଛି ଅସୁବିଧା ହେବ? ଆଉ ଆମେ ଭାଇମାନେ ବସି ଦେଖୁଥିବୁ?" କହୁଥିଲା, ସହଲା ଗଲା ବାଟରେ ତୋ ସହ ବସି କଥାଭାଷା ହେବ । ମୁଁ କହିଲି, "ନାରେ ବାବୁ, ଲୁଚନର କୋଉ ଭରସା? ସକାଳୁ ବାହାରି ଯିବଣି ଘରୁ ।"

ଲୁଚନ ମହା ଆଗ୍ରହରେ ସବୁ ଶୁଣୁଥିଲା । ଏତେ ଯୋର ଦେଇ ରଘୁ ଆଗରୁ କେବେ କହିନି । ଏଥରକ ଯେମିତି ହେଲେ କାଗଜଟା କରିଦେବ । ଏବେ ମା' ଉପରେ ସାମାନ୍ୟ ରାଗି କହିଲା, 'ତୁ ତ କହିଲୁ, ଟାକିଥିବୁ । ମୁଁ ଘରେ ଅଛି, ପଳେଇ ଯାଆନ୍ତି କୁଆଡ଼େ?'

- ହେଲା ଯେ, ତୁ ଯଦି ନଥାନ୍ତୁ? ଫେରି ଯାଆନ୍ତା ସେ ? କ'ଣ ଭାବନ୍ତା ମନରେ ? ଆଉ ଥରେ ଆସନ୍ତା ତତେ ଭେଟିବାକୁ ? ସହଲାରୁ ଫେରି ଆସିପାରେ । ଦୁଇ ଭାଇ ମିଶି ସେ କାଗଜ କଥା ହୁଅ । ଆର ଥରକୁ ଯେମିତି ହେଉ କାଗଜଟା ହେଇଗଲେ ଭଲ । ବୋହୂମାନେ ପଚାରୁଥିଲେ, 'ଲୁଚନ ଆମ ଘରକୁ କାହିଁ ଆସନ୍ତି ନି ?' ତୁ ଯିବୁ ତ ଥରେ ତାଙ୍କ ଘରକୁ, ରଘୁ ସଙ୍ଗେ ବସି ସବୁ ଫଇସଲା କରିଦେବ ।' ବୁଢ଼ୀ କହିଲା ।

- ନା ବୁଆ, କେହି ପଚାରନ୍ତିନି ତାଙ୍କ ଘରେ ।

- ତୋର କାକୀ  ବି ?' ବୁଢ଼ୀ ଭାବିଲା, ଲୁଚନ ପାଖରେ ଆଉ ଜବାବ ହେବନି ।

- ମୋର କାକୀ ପଚାରେ ଯେ, ଏତେ ବଡ଼ ପାଟିରେ 'ଆହା' ନ କରନ୍ତା ଯଦି ! ଲୁଚନ ଜବାବ ଦେଲା ।

- ହଇରେ ବୋହୂମାନେ ଚିହ୍ନିନାହାନ୍ତି ତତେ । କେମିତି ପଚାରିବେ ? ଘରର ମାଲିକ ତୋ କାକୀ । ସେ ପଚାରିଲେ ତୋର ଆଉ କାହାକୁ ଡର? ଲୁଚନର ମା'ର 'ଆହା' କଥାକୁ ଛାଡ଼ି ଦେଲା, ଯେମିତି ଶୁଣି ପାରିନି ତାହା ।

ସବୁ ସାହସ ଏକାଠି କରି ଲୁଚନ କହିଲା, 'ଯିବି ତାହେଲେ ?'

- କାହିଁକି ନଯିବୁ ? କହିବୁ, ମୁଁ ଲୁଚନ, ରଘୁ ସାଙ୍ଗରେ କଥା ଥିଲା ।' ବୁଢ଼ୀ

ଆଉଟିକେ ସାହସ ଦେଲା ।

- କେହି ନ ପଚାରିଲେ ?

- କେମିତି ନ ପଚାରିବେ ?' ମନରେ କିନ୍ତୁ ଡରୁଥାଏ ସଖୀ । ଯଦି ନ ପଚାରନ୍ତି ? ଅଖିଆ ମରିବ ପଛେ ଲୁଚନ, କେବେ ତୁଣ୍ଡ ଦେବନି ତାଙ୍କୁ ।

- ଆଜି ଯିବି ?

- ନା, ଆଜି ରଘୁ ସହଲା ଯାଇଛି । କାଲି ସକାଳୁ ଯିବୁ । କେହି ନ ପଚାରୁ ପଛେ, ତୁ ତୋର କଥା ହେଇ ଆସିବୁ ।

ଏକା ଯିବ କି ମା' ସାଙ୍ଗରେ ? ଦୁଇ ଚାରି ଥର ନିଜକୁ ନିଜେ ପଚାରି ଉତ୍ତର ଦେଇ ସାରିବା ପରେ ଲୁଚନ ପୁଣି କହିଲା, 'ନା, ଏକା ଯିବି । ତୋ ସାଙ୍ଗରେ ଗଲେ, ଭୁଆସୁଣୀମାନେ କହିବେ— "ବୁଢ଼ାଟେ ହେଲାଣି, ମା'ଗିଙ୍କେ ଗିଙ୍କେ ଲଂବିଛି ।" ମତେ ଲାଜ ମାଡ଼ିବ ବୁଆ ।'

ସେତେବେଳକୁ ଦୁହେଁ ପଖାଳ ଖାଇ ସାରିଥାନ୍ତି । ଅଧଖୁରି ଲେଖା ପଖାଳରେ ପେଟ ଅଧା ପୁରିଥାଉ ପଛେ, ମନ ପୁରିଥାଏ । ମା'ପୁଅ ଦୁହିଁଙ୍କର । ମାସେ ଦୁଇମାସରେ ଲୁଚନର ପେନସନ୍ କାଗଜଟା ହେଇଯିବ ! ପେଟ ତାର ଅପୋଷା ରହିବନି । ମାସକୁ ଶହେ ଟଙ୍କା ପାଇଲେ, ଯିଏ ହେଲେ ଥିର ଢୋକେ ଓହ୍ଲାଇ ଦେବାକୁ ମନା କରିବ ନାହିଁ । ସଖୀ ମରିଗଲେ ବି ଆଉ ଡର ନ ଥିବ । ନିଦରେ ନ ଶୋଇ ବସି ବସି ସ୍ୱପ୍ନ ଦେଖୁଥାନ୍ତି ମା'ପୁଅ । ରଘୁର ପୁଅ ମଣ୍ଟୁ ଆସି ଡାକ ଦେଲା, 'ଆଇ, ଘରକୁ ଆସ । ଚୁନ ଘଷିବ ପରା?'

ଲୁଚନ ଆଉ ତା ମା'ଦୁହେଁ ଉଠିଲେ । ଲୁଚନ ବାହାରିଲା, ଦିଗ ଘର ଆଡ଼େ, ଆଉ ମା'ବାହାରିଲା ବଡ଼ବ୍ରାହ୍ମଣ ଘରକୁ । ମଣ୍ଟୁ ଏଣିକି ବଡ଼ ପିଲା ହୋଇଗଲାଣି ଠାଣିରେ ଆଗରେ ଆଗରେ ଚାଲୁଥାଏ ।



# ପାତ୍ରୀ ଅନ୍ୱେଷଣ

ହେତୁ ହେଲା ଦିନୁ ଲକ୍ଷ୍ୟ କରିଛି, ବୟସ ଅନୁପାତରେ ଶ୍ରେଣୀଟା ମୋର ଆଗକୁ ଆଗକୁ ମାଡ଼ିଯାଉଛି । ଯେମିତି, ପଢୁଛି ତ ଦଶମ ଶ୍ରେଣୀରେ, ମାତ୍ର ଦିଶୁଛି ନବମ ଶ୍ରେଣୀର ଛାତ୍ର ଭଳି; ଭୋଜି ବେଳେ ଭୋକ ହେଉଛି ତ ପୁରା ଜଣକର, ହେଲେ ମିଳୁଛି ସାନ ଛୁଆର ଭାଗ । ମୋର ଗେଡ଼ା ଶରୀର, ସରୁକଣ୍ଠ ଓ କଅଁଳିଆ ମୁହଁ ଅନେକ ସମୟରେ ତେଣୁ ଚିହ୍ନାଜଣାଙ୍କ ଗହଣରେ ମତେ ଥତୋ ଥମୋ କରିପକାଏ । ଦୁଇ ଚାରି ମିନିଟିଆ ଚିହ୍ନାଜଣା, ଯାହାର ସଂଖ୍ୟା ସମଗ୍ର ଚିହ୍ନାଜଣାର ତିନି ଚତୁର୍ଥାଂଶରୁ କମ ନୁହେଁ, ଯିଏ ମୋର ସାମାଜିକ ଏବଂ ଶୈକ୍ଷିକ ଜୀବନର ପାଦଟିଏ ବି ଅଧିକ ଗହୀରକୁ ଯିବାକୁ ନାରାଜ, ଉତ୍ତର ଶୁଣି ଆଶ୍ଚର୍ଯ୍ୟ ହୁଅନ୍ତି । 'ଆଚ୍ଛା' 'ସତରେ' 'ବୟସ ତ ବହୁତ କମ' ଭଳି କେତେଗୋଟି ବିସ୍ମୟସୂଚକ ଶବ୍ଦ ଉଚ୍ଚାରଣ କରି ସେମାନଙ୍କୁ କଥା ଲମ୍ୱେଇବାକୁ ପଡ଼େ । ମତେ ଅଡୁଆ ଲାଗେ । ଏ ଦୁଃସ୍ଥିତିରୁ ମୁକ୍ତି ନିମନ୍ତେ 'ଦାଢ଼ି ମେଛା ଟିକିଏ ହୁଅନ୍ତା କି, ସକାଳୁ ଉଠିଲା ବେଳକୁ ଅଧଫୁଟ ଉଚ୍ଚତା ବଢ଼ିଥାନ୍ତା କି, କିମ୍ବା କଣ୍ଠଟା କର୍କଶ ବା ହୋଇଥାନ୍ତା' ବୋଲି ସବୁବେଳେ ନହେଲେ ବି ସପ୍ତାହକୁ କେତେଥର ଭଗବାନଙ୍କୁ ଗୁହାରି ହେବା କଥା ଏବେ ସୁଦ୍ଧା ମୋର ମନେ ପଡ଼େ ।

ପଢ଼ାସାରି ଚାକିରୀ ବେଳକୁ କିନ୍ତୁ ସମସ୍ୟାଟି ଠିକ ଓଲଟା ରୂପ ଧାରଣ କଲା । ମୁହଁ କର୍କଶ, ପାଟି ମେଲା, ମୁଣ୍ଡ ଚନ୍ଦା, ଶରୀର ପୃଥୁଳ-ସବୁକିଛି ମାସ କେତେଟାର ପରିବର୍ତ୍ତନ । ହଠାତ ଯେମିତି ବୟସଟା ବାଇଶରୁ ତେଇଶକୁ ଯିବା ବଦଳରେ ବତିଶକୁ ଲଂଫ ଦେଲା । 'ଚିତ୍ରହାର'ର ଦୃଶ୍ୟ ପରିବର୍ତ୍ତନ ପରି ଏସବୁ ଏତେ ଶୀଘ୍ର ଘଟିଗଲା ଯେ ଅନୁମାନ କରିବା କଷ୍ଟ । ଚାକିରୀ ହେବା ପାଇଁ, ଜାଣି ଗୁହାରି ମଞ୍ଜୁରି କରିବାକୁ ଭଗବାନ ଟାକି ରହିଥିଲେ । ବାରମ୍ବାର ବିନତି ଶୁଣି ସେ ହୁଏତ ବିରକ୍ତ ହୋଇଯାଇଥିଲେ । କିଛି ନ ହେଲେ ଲୋକଟି ପିଲା ତ ଛାତୁ ବୋଲି ଲକ୍ଷ୍ମୀ ଶକ୍ତ ସୁପାରିଶଟିଏ ନିଶ୍ଚୟ କରିଥିଲେ । ତେଣୁ ବିଦେଶୀ ଔଷଧର ପାର୍ଶ୍ୱ-ବଦଗୁଣ ପରି ଭଗବାନଙ୍କ ତଥାସ୍ତୁର ଓଲଟା ଗୁଣ ବାହାରିଲା । କଅଁଳିଆ

ମୁହଁ ଯାଇ ବୁଢ଼ା ଚେହେରା ପ୍ରାପ୍ତି ହେଲା । ଏଣିକି ଜାତୀୟବାଦୀମାନେ ଦେଶର ଗୌରବମୟ ଅତୀତ ଇତିହାସକୁ ରୋମନ୍ଥନ କରି ଜଗଡ଼ାମୟ ବର୍ତ୍ତମାନରେ ଘୁଂଘୁଡ଼ି ମାଇଲା ପରି ଜୀବନର କଅଁଳିଆ ଅଂଶକୁ ମନେ ପକାଇ ଖୁସି ହେବାକୁ ଚେଷ୍ଟା କଲି ।

ବୁଢ଼ା ଚେହେରା ପ୍ରାପ୍ତିର ପରିଣାମ କେତେ ଭୟାବହ ତା'କେବଳ ମୋ ପରି ଅପ୍ରାପ୍ତ ବୟସ୍କ ବୁଢ଼ା ହିଁ ଅନୁମାନ କରିପାରିବ । ପୂର୍ବୋକ୍ତ ଅଧ- ମିନିଟିଆ ଚିହ୍ନାଜଣା ତ ବିଶ୍ବାସ କରିବାକୁ ନାରାଜ ଯେ ଏହା ମୋର ପ୍ରଥମ ଚାକିରୀ; ଆଗରୁ ମୁଁ ଛାତ୍ର ଥିଲି । ତେଣୁ ଦୁଃସ୍ଥିତିରୁ ମୁକ୍ତି ନିମନ୍ତେ ପୂର୍ବ ରୀତିରେ ସଫେଇ ଦେଲି, ଚାକିରୀ ପୂର୍ବରୁ ଗବେଷଣା କରୁଥିଲି । ବାସ୍ତବିକ ଗବେଷଣା ଶବ୍ଦଟି ମହା ମହା ପ୍ରଶ୍ନକର୍ତ୍ତାଙ୍କୁ ଏମିତି ନାଗଫାଶରେ ପକାଏ ଯେ ପ୍ରଶ୍ନ ତାଙ୍କର କଳି ସମୟରେ ହିଁ ଉଭେଇ ଖାଇଯାନ୍ତି । ବିଚରା ଆଗକୁ ବଢ଼ିବାପାଇଁ ସାହସ ଯୋଗାଡ଼ କରିପାରନ୍ତି ନାହିଁ । ସତ କହିଲେ, ଭାବିବେ ମୁଁ ବୟସ ଲୁଚାଇଲି । ସମାଜରେ ଉକ୍ତ ଅପରାଧଟି କେବଳ ଝିଅଙ୍କ ପାଇଁ ଆରକ୍ଷିତ ଥିବାରୁ ମୋତେ ସ୍ତ୍ରୈଣ ବୋଲି ସନ୍ଦେହ ନ କରନ୍ତୁ, ତାହା ଥିଲା ସଫେଇ ପଛରେ ଅନ୍ୟ ଏକ ଉଦ୍ଦେଶ୍ୟ । ଅବଶ୍ୟ ଟିକିଏ ଚିହ୍ନାଜଣା ବଢ଼ିଲେ ଚନ୍ଦା ହେବା ଆମ ବଂଶ ପରମ୍ପରା ଅବା 'ଅମୁକ' (ଅ-ଚନ୍ଦା ଏବଂ ଅ-କର୍କଶ କୌଣସି ସାଧାରଣ ବନ୍ଧୁ) ମୋ ସାଙ୍ଗରେ ପଢୁଥିଲେ କହି ଅସଲ ବୟସ ଜଣାଇବା ନିମନ୍ତେ ପ୍ରୟାସ କରେଁ । ଦିନେ ପ୍ରୟାସ ସଫଳ ହୁଏ, ଦୁଇଦିନ ବିଫଳ ।

ବୁଢ଼ା ଚେହେରା ପ୍ରାପ୍ତି ପରେ ବିବାହ ବିଷୟକ ପ୍ରସଙ୍ଗଟି ସବୁଠାରୁ ବେଶି ଅଡୁଆ ସୃଷ୍ଟି କଲା । ମୁଁ ଆଜି ଯାଏଁ ଅବିବାହିତ ଥିବା କଥାଟି ବିଶ୍ବାସ କରିବା ପୂର୍ବରୁ ବନ୍ଧୁମାନଙ୍କୁ ଭ୍ରୂକୁଞ୍ଚନ, ସ୍ବର ଉତ୍ତୋଳନ ସମେତ 'ନା'ମ,' 'ସତରେ', 'ମୁଁ ଭାବୁଥିଲି··· ।' ଆଦି ଶବ୍ଦ ବ୍ୟବହାର କରିବାକୁ ପଡ଼ିଲା । ଜଣାକେତେ ଅତି ଅନ୍ତରଙ୍ଗ ଭାବ ଦେଖାଇ ମୋତେ କନ୍ୟା ମିଳିବା କାଠିକର ବୋଲି ଉଲ୍ଲେଖ କଲେ । ଆଉ ଜଣାକେତେ ଜନ୍ମଦିନ, ବିବାହ ଆଦି ସାମୟିକ ବନ୍ଧୁମିଳନରେ ହାସ୍ୟରସ ସୃଷ୍ଟି ପାଇଁ ସତ୍ୟଟିକୁ ଅତର୍କିତ ଭାବେ ଉତ୍‌ଥାପିତ କରି ଅନ୍ୟମାନଙ୍କର ପ୍ରିୟଭାଜନ ହେଲେ । କିଛି ଦିନ ପରେ ଏଭଳି ବନ୍ଧୁଙ୍କର ସଂଖ୍ୟା ଏବଂ ମୋର ଚିଡିଚିଡ଼ା ଭାବ ସମ ପରିମାଣରେ ବୃଦ୍ଧି ପାଇବାରେ ଲାଗିଲା । ମୁକ୍ତି ପାଇଁ ବୁଢ଼ା ଚେହେରାର ଏକ ମୁଖ୍ୟ ଅଙ୍ଗ ଚନ୍ଦାମୁଣ୍ଡକୁ ଘୋଡ଼େଇବା ଅତି ଆବଶ୍ୟକ ମନେ ହେଲା । ଫଳରେ ଟୋପିଟିଏ ପିନ୍ଧିଲି ।

ଟୋପି ପିନ୍ଧା ବେଳର ଗୋଟାଏ ଘଟଣା । ଜଣେ ନୂଆଁ ବନ୍ଧୁ ପଚାରିଲେ 'ଆପଣ ବାହା କାହିଁ ହେଉ ନାହାନ୍ତି?' ଏଭଳି ଜିଜ୍ଞାସା ରହିତ ପ୍ରଶ୍ନର ମୋ ପାଖରେ ଏକ ଧରାବନ୍ଧା

ଉତ୍ତର. 'ମୋତେ କେଉଁ ଝିଅ ମିଳିବ?' ଓଲଟା ପ୍ରଶ୍ନ ଶୈଳୀରେ ଉତ୍ତରଟି ମୋର ବିନମ୍ରତା ଏବଂ ପ୍ରଶ୍ନକର୍ତ୍ତାଙ୍କୁ ଏ ସଂପର୍କରେ ଅଧିକ ଆଗକୁ ନ ଯିବା ପାଇଁ ସଙ୍କେତ ପ୍ରଦାନ କରେ । ମୋର ଚନ୍ଦା ମୁଣ୍ଡରେ ଥରେ ଆଖିବୁଲେଇ ବଂଧୁ ଚୁପ ରହନ୍ତି । ତାଙ୍କ ମୌନତାରୁ ସମ୍ମତିର ସୂଚନା ବେଶ ବାରି ହୁଏ. ମାତ୍ର ଆଜି କଥା ଅଲଗା । ମୁଁ ଟୋପି ପିନ୍ଧିଥିଲି । ତେଣୁ ବଂଧୁ ଆଗକୁ ବଢ଼ିଲେ, 'କ'ଣ କହିଲେ ? ଝିଅ ମିଳିବେନି ? ମତେ କୁହନ୍ତୁ, ମୁଁ ଭାର ନେବି ।' ବଂଧୁଙ୍କ କଥାର ଦୁଇଟି ଅର୍ଥ ନ ଥିଲା । ଟୋପିଟି ବହୁତ କାମିକା ତାହେଲେ । ମନରେ ଆଶାର ଜୁଆର ଉଠିଲା । ଅଜାଣତରେ ହାତ ଟୋପିଟିକୁ ମୁଣ୍ଡରୁ କାଢ଼ି ଆଣନ୍ତେ ବଂଧୁ ସବୁ ବୁଝିଗଲା ଢଙ୍ଗରେ ମତ ଦେଲେ 'ଓହୋ, ଏମିତି କଥା । ପରେ କଥାବାର୍ତ୍ତା କରିବା ।' ଏ ଅନ୍ତେ ଆଜକୁ ଅନେକ ମାସ ବିତିଯାଇଥିଲେ ସୁଦ୍ଧା ବଂଧୁଜଣକ କେବେ ଆଉ ପ୍ରସଂଗଟିର ପୁନରୁଦ୍ଧାର କରିନାହାନ୍ତି ।

ଟୋପିର କେତେଗୋଟି ଉଲ୍ଲେଖନୀୟ ଗୁଣ ଥିଲା । ମୋର ଅସଲ ରୂପକୁ ଏହା ମଲାଟ ପରି ଲୁଚେଇ ରଖିଲା । ମୋ ଅନୁପସ୍ଥିତିରେ ମୋ କଥା ପଡ଼ିଲେ ଲୋକେ ଆଉ ଚନ୍ଦା ବା ବୁଢ଼ା ନ କହି 'ଟୋପିବାଲା' ବୋଲି କହିଲେ, ଯାହାକି 'ଚୁଡ଼ିବାଲା' 'ଫେରିବାଲା' ପରି ଶବ୍ଦରୁ ନିଶ୍ଚିତ ରୂପେ କମ ଶ୍ରୁତିକଟୁ । ମାତ୍ର ଟୋପିର ବଦଗୁଣ ବି କିଛି କମ ନୁହେଁ । ଏହା ମୋ ସଂପର୍କରେ ଜାଣିବା ପାଇଁ ସହର ସାରା ଲୋକଙ୍କ ମନରେ ଉତ୍ସାହ ସୃଷ୍ଟି କଲା । ଛୋଟ ସହର, ଟୋପି ପିନ୍ଧା ସଉକ ବା କେତେ ଜଣଙ୍କର ହେବ ? ତା' ଉପରେ ପୁଣି ଚିତ୍ର ତାରକାଗଣ ଆଜିକାଲି ଅଭିନୟଠାରୁ ଅଧିକ ଗୁରୁତ୍ୱ ନିଜ ବାଳର ଭିନ୍ନ ଭିନ୍ନ ଠାଣିରେ ଦେଲେଣି । ଅନୁକରଣପ୍ରିୟ ନବ ଯୁବକମାନେ ବା ଟୋପି ପିନ୍ଧିବେ କେମିତି? ଫଳ ସ୍ୱରୂପ ସମଗ୍ର ସହରରେ ଟୋପିବାଲା ଭାବରେ ମୁଁ ହିଁ ରେଖାଙ୍କିତ ହୋଇ ରହିଲି । ଅଫିସ, ଘର, ଲୋକ ବସୁଥିବା ଚା ଦୋକାନ ଏବଂ ଛିଡ଼ା ହେଉଥିବା ପାନ ଦୋକାନ ଅଗଣା ଯାଏଁ ମୋର ସଂସାର ଆଉ ସୀମିତ ନଥିଲା । ମନେ ହେଲା, ଯାହିଁ ଦେଖିବ ମୋର ଚର୍ଚ୍ଚା । ଖଳ ଲୋକେ ମୁଣ୍ଡରେ ବିଦ୍ୟମାନ ସାମାନ୍ୟ କେତୋଟି ବାଳର ଉପସ୍ଥିତିକୁ ମଧ୍ୟ ଅସ୍ୱୀକାର କଲେଣି । ସେମାନଙ୍କ ଦୃଢ଼ୋକ୍ତିକୁ ଚନ୍ଦାମୁଣ୍ଡ ସ୍ଥାନରେ କେବଳ ଟୋପି ଦେଖିଥିବା ଲୋକ ମଧ୍ୟ ବିଶ୍ୱାସ କଲେ । ଏସବୁ ବାଦ ଟୋପି ବା କେତେଦିନ ବାସ୍ତବିକତାକୁ ଘୋଡ଼େଇ ପାରିବ? ତେଣୁ ଅମାନିଆଁ କନ୍ୟାର ବିଜାତୀୟ ଟୋକା ସହିତ ପାପ ପ୍ରଣୟ ରାଷ୍ଟ୍ର ହେବାର ଅବ୍ୟବହିତ ପୂର୍ବରୁ ଚାଲାକ ବାପ ଜାତିବାଦ ବିରୋଧୀ ହୋଇ କନ୍ୟାର ଟୋକା ସହ ବିବାହ ଆୟୋଜନ କରିବା ଢଙ୍ଗରେ ମୁଁ ନିଜର ଖୋଲା ସ୍ୱଭାବର ପରିଚୟ ଦେଲି ଏବଂ ଟୋପିକୁ ମୁଣ୍ଡରୁ

ଓହ୍ଲାଇ ସଗର୍ବରେ ବିଚ୍ ରାସ୍ତାରେ ଚାଲିଲି ।

ସଂଧ୍ୟା ସମୟ । ଅଥା ହୋଇ କଲେଜରୁ ଫେରିଥାଏ । ଚା'ଟିକିଏ ପିଆଇବା ପାଇଁ ସୁଷ୍ଠା ଗୋଡ଼ ଉଠୁନଥାଏ । ଫେରିବା ବେଳେ ରାସ୍ତାରେ କେତେ ଜଣ ହସକୁରା ଛାତ୍ରୀଙ୍କର କଥାବାର୍ତ୍ତାକୁ ମୋ ପ୍ରତି ଆକ୍ଷେପ ବୋଲି ଅନୁମାନ କଲା ପରେ ଅଥାର ପରିମାଣ ଅସଂଭବ ଭାବରେ ବୃଦ୍ଧି ପାଇଥାଏ । ତା ଛଡା ଅଧ୍ୟକ୍ଷ ତାଙ୍କ ଘରକୁ କାଁଧିଏ ବାଡ଼ି କଦଳୀ ଓ ଦୁଇ ମୁଠି ସାଗ ପଠାଇଥିବା ଜଣେ ଚଂଦା ସହକର୍ମୀଙ୍କର ଭୂରି ଭୂରି ପ୍ରଶଂସା କରିଥିବାର ମୋର ଶ୍ରୁତିଗୋଚର ହୋଇଥାଏ । ବାହାଚୁଡ଼ା ହୋଇ ଆନନ୍ଦରେ ଘର ସଂସାର କରୁଥିବାରୁ ଚନ୍ଦାମୁଣ୍ଡିଆ ସହକର୍ମୀଜଣକ ଥିଲେ ମୋର ପ୍ରତିଦ୍ୱନ୍ଦୀ ଓ ଶତ୍ରୁ (ଅବଶ୍ୟ ତାଙ୍କ ଅଜାଣତରେ ମୋର ଏ ଯୁଦ୍ଧ ଘୋଷଣା) । ତେଣୁ ତାଙ୍କ ପ୍ରଶଂସା ଥିଲା ମୋର ନିନ୍ଦା ତୁଲ୍ୟ । ମୋଟ ଉପରେ ସେଦିନ ମୋର ମୁଡ଼ ଅଫ ଥାଏ । ଏ ଦୁଃସମୟରେ ସାଧାରଣତଃ ଜୀବନଟା ମିଛମାୟା ପ୍ରତୀତ ହୁଏ । ସୃଷ୍ଟିକର୍ତ୍ତା ପ୍ରତି ବିରକ୍ତି ଓ ସମାଜ ପ୍ରତି ବିତୃଷ୍ଣା—ଏ ସମୟରେ ଦୁଇଟି ଧରାବଂଧା ଭାବ । ବାହାରକୁ ରୂପଟି ଗଂଭୀର ଜଣାପଡ଼େ ସିନା, ଭିତରକୁ ଜଳି ପୋଡ଼ି ଛାର ଖାର ହୋଇ ସାରିଥିବା ପାଉଁଶ ଗଦାଟିଏ ଭଳି ଅନୁଭବ ହୁଏ ।

ଠିକ ଏହି ସମୟରେ ଜଣେ ଛାତ୍ର ଆସି ପହଂଚିଲା । ବିନା ଆମନ୍ତ୍ରଣରେ ତାର ଚୌକୀରେ ବସିବାର ଆୟୋଜନରୁ ମନେ ହେଲା, ଛାତ୍ରଟି ବସିବା ପାଇଁ, ଗପିବା ପାଇଁ ପୂର୍ବ ପ୍ରସ୍ତୁତି କରି ଆସିଛି । ଅରୁଣାଚଳ, ନୂଆଁ ଯାଗା, ଏଠିକା ଛାତ୍ର ବି ଉଭୟ ବଳ ଓ ବୟସରେ ଅଧ୍ୟାପକଂକର ଦେଢ଼ା । ଯାହାକୁ ପଚାର ଦୁଇଚାରୋଟି ଛୁଆର ବାପ । ଛାତ୍ରଙ୍କୁ ଘଉ ତଡ଼ିବା ତ ଦୂର କଥା, ଅଧ୍ୟକ୍ଷଙ୍କ ତୁଳନାରେ ସେମାନଙ୍କର ପ୍ରିୟପାତ୍ର ହେବା ଅଧିକ ଆବଶ୍ୟକ । ଭଲ କରି ପଦେ ନ କହିଲେ କଥା ବିଗିଡ଼ି ଯାଏ । ତେଣୁ ତା'କଥା ଗପିବାର ଅଭିପ୍ସା ଓ ମୋ ଚୁପ ରହିବାର ଇଚ୍ଛା ମଝିରେ ତାଳମେଳ ରଖି ଅଭିନୟ କରିବାକୁ ପଡ଼ିବ । ଛାତ୍ରଟି ଜାଣୁ ଯେ ମୋର 'ମୁଡ଼ ଅଫ' ଅଛି; ତା ସାଙ୍ଗକୁ ଏଇୟା ବି ଜାଣୁ ଯେ, 'ମୁଡଅଫ୍'ର କାରଣ ସେ ନୁହେଁ, ଭିନ୍ନ କିଛି ।

କଥାବାର୍ତ୍ତାର ଅନ୍ତକେ ଛାତ୍ରଟି ପରିବାର ପ୍ରସଂଗରେ ପହଞ୍ଚି ଗଲା ।

'ସାର ଏଠି ଏକା ?'

'ହଁ' । 'ମୁଡ଼' ଭଲ ଥିଲେ କହିଥାନ୍ତି, 'ଦୁନିଆ ସାରା ମଶା ମାଛି ଭଳି ଲୋକ ଭର୍ତ୍ତି; ମାତ୍ର ସମସ୍ତେ ଏକା ।' କଥାଟିକୁ ପ୍ରାମାଣିକ କରିବା ପାଇଁ କେଉଁ ଦାର୍ଶନିକଙ୍କର ଉକ୍ତିକୁ ଯୁକ୍ତି ତୁଲ୍ୟ ଉଦ୍ଧାର କରିଥାନ୍ତି । ଆଜି କିନ୍ତୁ 'ହଁ' ଗୋଟାକରେ ମୁଁ ଉତ୍ତର ସାରିଲି ।

'ପରିବାର କେଉଁଠି?' ଛାତ୍ରର ଦ୍ୱିତୀୟ ପ୍ରଶ୍ନ ।

'ଘରେ ।'

'ମେଡ୍ରେମ କ'ଣ ଚାକିରୀ କରନ୍ତି?' ମୁଁ ବିବାହିତ ବୋଲି ଭୁଲ ଆବିଷ୍କାରଟିଏ କେବେଠାରୁ କରିସାରିଛି ସେ । ତାକୁ ସତକଥା କହି ବା କି ଲାଭ? ତା'ଠାରୁ ଭଲ ଶୀଘ୍ର ବିଦାୟ ଦେବା । ତେଣୁ କହିଲି, 'ନା' ।

ସେ ବି କିନ୍ତୁ ନଛୋଡ଼ ବନ୍ଧା । ପଚାରିଲା-ଛୁଆମାନେ କ'ଣ ସାନ ଅଛନ୍ତି?

- ନା

- ଛୁଆ କେତେଟା କି?

- ନାହାନ୍ତି ।

ଚକ୍ରବ୍ୟୂହର ରାସ୍ତାଟିକୁ ଖୋଜି ପାଇଲା ଢଙ୍ଗରେ ଏବେ ସେ କହିଲା, 'ଓହୋ, ଏଥିପାଇଁ 'ମୁଡ୍ ଅଫ୍' ଆପଣଙ୍କର । କିନ୍ତୁ ବଡ଼ ସମସ୍ୟା ଏହା । କିଛି ଔଷଧ ପତ୍ର ବ୍ୟବହାର କରନ୍ତୁ । ପରେ ଔଷଧ ଖାଇଲେ ବି ଆଉ ରାସ୍ତା ନଥିବ ।' ସନ୍ତାନହୀନତା କଷ୍ଟରୁ ମୁକ୍ତି ପାଇଁ ସେ ବାଟ କହିଦେଇ ଗଲା ।

ପୁରାଣ ଯୁଗରେ ସାଗର ମନ୍ଥନରୁ ଜାତ ଗରଳତକ ନୀଳକଣ୍ଠ କୁଆଡ଼େ କେମ୍ପାକୋଲା ପରି ଢକ ଢକ କରି ପିଇଗଲେ । ତାଙ୍କ ପଥ ଅନୁକରଣ କରି ମୁଁ ମଧ୍ୟ ଛାତ୍ରଟିର କଥା ସବୁ ଇଚ୍ଛା ବିରୁଦ୍ଧରେ ଶୁଣିଗଲି । ଛାତ୍ରଟିର ଅନୁମାନ ଅନୁଯାୟୀ ବୟସ ମୋର ଜନସଂଖ୍ୟା ପରି ବାଇଶରୁ ବିତିଶ ଏବଂ ବିତିଶରୁ ଏବେ ବୟାଳିଶରେ ଯାଇ ପହଂଚିଲାଣି ।

ସେଦିନ ରାତିରେ ସ୍ଥିର କଲି, ଘରକୁ ଲେଖିବି—ଶୀଘ୍ର ବାହାଘର ହେବା କଥା । ମାତ୍ର ମୋ ଏକା ଚାହିଁବାରେ କ'ଣ ବାହାଘର ହେଇଯିବ? ଜନ୍ମ ଓ ମୃତ୍ୟୁ ବାଦ ଏହା ଜଗତର ଏକମାତ୍ର କାର୍ଯ୍ୟ ଯାହା କର୍ତ୍ତାର ଇଚ୍ଛା ଅନିଚ୍ଛା ସହ କୌଣସି ସଂପର୍କ ରଖେନି । ଅନ୍ୟ ସମାଜ କଥା ଭିନ୍ନ ଏଠି ତ ଏଥିପାଇଁ ବରକନ୍ୟାକୁ କେବଳ ବାଦ ଦେଇ, କନ୍ୟା ଓ ବର ପରିବାରର ସମସ୍ତଙ୍କର—ଗୋରୁ ଗାଈଙ୍କର ସୁଦ୍ଧା-ମନ ମିଳିବା କଥା । ନୋହିଲେ କିଏ କେଉଁଠୁ ରାମବାଣଟିଏ ମାରିବ ଯେ, ବର ଯାଇ ବେଦୀରେ ବସିଲା ବେଳକୁ କନ୍ୟା ଉଭାନ ହୋଇ ସାରିଥିବ । ଜଣେ ବଂଧୁର ବିବାହର ଆୟୋଜନ ସରିଲା, ବେଣ୍ଡବାଲାଙ୍କୁ ଆଗତୁରା ପଇସା ଦିଆ ହେଲା, ନିମନ୍ତ୍ରଣ ପତ୍ର ଛପା ହେଲା, ଝିଅର ପାସପୋର୍ଟ ଫଟୋ ତେଣିକି ବଂଧୁଙ୍କ ମନିପର୍ସର ଖାମରେ ଶୋଭା ପାଇଲାଣି । ଚିଠି ଆସିଲା-କନ୍ୟାର ଜଣେ ପୁରୁଣା ପ୍ରେମିକ ଅଛି-ଇତି 'ଶୁଭଚିନ୍ତକ' । ଅଜଣା ଶୁଭଚିନ୍ତକଙ୍କର ଉକ୍ତିର ସତ୍ୟତା ଜାଣିବା ପାଇଁ

କିଏ ଗୋୟେନ୍ଦା ନିଯୁକ୍ତି କରିବ? ସବୁଠୁ ଭଲ ଅନ୍ୟ କେଉଁଠି ଝିଅ ଖୋଜ । ଅର୍ଥାତ ବାତୁଅ ଦୋଷରୁ ମୁକ୍ତି ପାଇଁ ପୁଣି ବର୍ଷଟିଏ ଟାକ ।

ଆମ ପରିବାରରେ ସମସ୍ୟାଟି ଥିଲା ସାମାନ୍ୟ ଭିନ୍ନ ଧରଣର । ମୋ ବିବାହର ମୁଖ୍ୟ ପ୍ରତିବଂଧକ ଥିଲେ ଆମର ଭଂଗା ମାଟିଘର ଓ ମୋର ଜଣେ ଅବିବାହିତା ବଡ଼ ଭଉଣୀ । 'ଝିଅର ବିବାହ କାହିଁକି ଠିକ କରୁନ?' 'ଘର ତିଆରି ନ କରିବା ଯାଏଁ କିଛି କରିବୁନି ।' ବରପାତ୍ର ଯୋଗାଡ଼ ହୋଇ ପାରୁନଥିବାର ସତ୍ୟକୁ ଘୋଡ଼େଇବା ବେଳେ ଭଂଗା ଘରଟି ବେଶ ସାହାଯ୍ୟ କରେ । 'ତ ଘର ତିଆରି କର' । 'ପଇସା କେଉଁଠୁ ଆସିବ?' ସତ୍ୟକୁ ଘୋଡ଼େଇବା ପାଇଁ ମା' ପୁଣି ଚାଦରଟିଏ ଢ଼ାଙ୍କି ଦିଏ ।

ଆମ ପାଇଁ ଘରଟି ନିହାତି ଗୋଟାଏ ବଡ଼ ସମସ୍ୟା । ନେଇ ଦେଇ ଏବେ ଗୋଟାଏ ବଖରା ଘର । ବାକୀ ସବୁ ଭଙ୍ଗା । ବୋହୂଟିଏ ଆସିଲେ ତା' ଶୋଇବା ପାଇଁ ଯଦି ଘରଟି ଛାଡ଼ି ଦିଆଯାଏ, ବାପା-ମାଙ୍କୁ (ମନେକର ଭଉଣୀର ବାହାଘର ସରିଥିବ ସେତେବେଳକୁ ) ବାରଣ୍ଡାରେ ଆଶ୍ରୟ ନେବାକୁ ପଡ଼ିବ । ତେଣିକି ପୁଅ ବାହାଘର ପରେ ମା'କୁ ବୋହୂ ପରଷା ସାଙ୍ଗରେ ବର୍ଷା ଦିନରେ ପାଣି ଓ ଶୀତ ଦିନରେ ଥଣ୍ଡା ବି ଖାଇବାକୁ ପଡ଼ିବ । ତେଣୁ ଦରମା ଗଣ୍ଡାକ ସାଇତି ପ୍ରଥମେ ମତେ ଘର ତିଆରିବାକୁ ପଡ଼ିବ ।

ଘର ତିଆରିରେ ଗୁଣ୍ଟୁଚି ମୂଷା ଭଳି କିଛି କର୍ତ୍ତବ୍ୟ ବା ଅଛି ମୋର, ଯଦିଓ କର୍ତ୍ତବ୍ୟ ସମାପନ ବେଳକୁ ଅଧା-ପେନସନ ବେଳ ହୋଇଯିବ; କିନ୍ତୁ ଭଉଣୀ ପାଇଁ ବରପାତ୍ର ଯୋଗାଡ଼ରେ ବା କି ସହଯୋଗ କରିବି? ବଡ଼ ଭଉଣୀ ସେ; ମୋର ସବୁ ସାଙ୍ଗ ଡାକୁ ନାନୀ ଡାକନ୍ତି । ମୋଟ ଉପରେ ଉଭୟ ସମସ୍ୟା ମୋ ବିବାହ ସମ୍ଭାବନାକୁ କଳି ସମୟରେ ଦଳି ପକାଉଥିଲେ ।

ମା'ର ବୟସରେ ଯଦି ଭଉଣୀର ବିବାହ ହୋଇଥାନ୍ତା, ଏତେ ବେଳକେ ସେ ପନ୍ଦର-ସତର ବର୍ଷର ପୁଅ-ଝିଅ ଧରି ଦଶହରାରେ ଘରକୁ ଆସୁଥାନ୍ତା । କି ଦୁର୍ଯୋଗରେ ତା'ର ଜନ୍ମ ହେଲା କେଜାଣି? 'ପୁଣି ଦେଖିବାକୁ ଆସିବେ' କହି ଲୋକ ଯାଆନ୍ତି ଯେ ଆଉ ଦର୍ଶନ ମିଳେନି । ମା' ଭାବେ ବାପା ଯୋଗାଡ଼ିଆ ନୁହନ୍ତି; ଭଉଣୀ ଦୋଷ ଦିଏ ଭଙ୍ଗାଘରକୁ; ମତେ ଲାଗେ ଭଉଣୀର ରୂପ ହିଁ ସମସ୍ୟା; ବାପା କହନ୍ତି, ଅତିଥି ଚର୍ଚ୍ଚା ଠିକ୍ ହେଲେ ଲୋକଙ୍କର ଭଙ୍ଗା ଘର ଓ ଝିଅର ରୂପ ଆଡ଼େ ନଜର ଯିବ ନାହିଁ । ଭୁଲ ଯେଉଁଠି ଥାଉ, ପାତ୍ର ଆସନ୍ତି-ଯାଆନ୍ତି, ବାହଘର ଠିକ୍ ହୋଇ ପାରେନା ।

'ଭଉଣୀ ସାଙ୍ଗରେ କ'ଣ ପରିବାରର ଅନ୍ୟମାନଙ୍କର ମଧ୍ୟ ଜୀବନ ବରବାଦ ହେବ?' ମୁଁ ଦୁଇ ଚାରି ଥର ମା'କୁ କହିଲି । ବରବାଦ ହେବା ପାଇଁ 'ଅନ୍ୟମାନଙ୍କ' ଭିତରେ ମୋ

ବ୍ୟତୀତ ମୋର ଜଣେ ସାନ ଭାଇର ଜୀବନ ଥିଲା । ଭାଇ ସ୍କୁଲରେ ପଢୁଥିଲା ଏବଂ ଅରୁଣାଚଳ ଟୋକାଙ୍କ ବୟସରେ ବି ଯଦି ତାର ବିବାହ ହୁଏ ତାପାଇଁ ଦଶ ବର୍ଷ ବାକୀ ଥିଲା । କିନ୍ତୁ ଅଭିଯୋଗକୁ ବ୍ୟକ୍ତିକେନ୍ଦ୍ରିକ ହେବାରୁ ରକ୍ଷା କରିବାରେ ତାକୁ 'ଅନ୍ୟମାନଙ୍କ' ଭିତରେ ସାମିଲ କରିବା ଆବଶ୍ୟକ ହେଉଥିଲା । ଆଶା ଥିଲା, ମା' ଅଭିଯୋଗକୁ ବାପାଙ୍କ କାନକୁ ନେଇଯିବ । ମାତ୍ର କାହିଁ?

ଏହି ସମୟରେ ଗାଁରେ ଗୋଟାଏ ଚିନ୍ତାଜନକ ଘଟଣା ଘଟିଲା । କାର୍ତ୍ତିକ ମାସର ସକାଳ ଗାଧୁଆ ନାଁରେ ତିନି ଯୋଡ଼ି ଯୁବକ ଯୁବତୀ ସରକାରୀ ବିଜ୍ଞାପନ ଦୃଷ୍ଟିରୁ ପ୍ରାପ୍ତ ବୟସ୍କ ହେବା ବହୁ ପୂର୍ବରୁ ଏବଂ ଶରୀର ବିଜ୍ଞାନ ଦୃଷ୍ଟିରୁ ପ୍ରାପ୍ତ ବୟସ୍କ ହେବା ସାଙ୍ଗେ ସାଙ୍ଗେ ଉଧୁଲିଆ ଚାଲିଗଲେ । ଏହାଠାରୁ ବଳି ଦୁଃଖର କଥା—ସାଙ୍ଗରେ ସେମାନେ ସ୍ୱ ସ୍ୱ ଘରୁ ବଡ଼-ଭାଇ-ଭଉଣୀମାନଙ୍କ ବିବାହ ଉଦ୍ଦେଶ୍ୟରେ ସଂଚିତ ଟଙ୍କା-ସୁନା ମଧ୍ୟ ଧରି ଫେରାର ମାରିଥିଲେ । ଅର୍ଥାତ ସେମାନଙ୍କ ବିବାହ ପାଇଁ ପ୍ରତିବଂଧକ ସୃଷ୍ଟି କରୁଥିବା ବଡ଼ ଭାଇ-ଭଉଣୀଙ୍କର ବିବାହ ସଂଭାବନାକୁ ଦୁଇ ଚାରି ବର୍ଷ ପାଇଁ ମାଡ଼ି ଦଳି ଚାଲିଗଲେ । ସତର୍କତା ମୂଳକ ପଦକ୍ଷେପ ରୂପରେ ଗାଁର ଅନେକ ବିଚଳିତ ପିତା ନିଜ କନ୍ୟାମାନଙ୍କୁ ସ୍ନୋ-କ୍ରିମ ଲଗେଇ ଟେମ୍ ଟେନ୍ ହେବାରୁ ବଂଚିତ କଲେ ଏବଂ ପୁତ୍ରମାନଙ୍କୁ, ଝିଅ ଠିକ୍ କରି, ସ୍କୁଲ ସମୟରେ ହିଁ ବିବାହର ସ୍ୱପ୍ନ ଦେଖାଇଲେ ।

ଘଟଣାଟିର ଅନେକ ଗୁଡ଼ିଏ ସାମଞ୍ଜସ୍ୟ ଆମ ପରିସ୍ଥିତି ସହ ଥିଲା । ଭଉଣୀ ମୋ ବିବାହର ମୁଖ୍ୟ ପ୍ରତିବନ୍ଧକ । ଫେରାର ହେବା ପାଇଁ ବଡ଼ ଆବଶ୍ୟକତା ଟଙ୍କା-ସୁନା, ଭଉଣୀ ବିବାହ ନିମନ୍ତେ ଅତି କଷ୍ଟରେ ଆମ ଘରେ ସଂଚିତ ଥିଲା । ଏ ସବୁ ବାଦ ଉଧୁଲିଆ ଚାଲି ଯାଇଥିବା ଯୋଡିଠାରୁ ମୁଁ ବହୁତ ଅଧିକ ସଂଖ୍ୟାରେ ସିନେମା ଦେଖିବାର ଏବଂ ସେଥିରୁ ଉଧୁଲିଆ ଯିବାର ଉପାୟ ଶିଖିବାର ସୁଯୋଗ ପାଇଥିଲି । ଏମତି ବି ପାତ୍ର ଯୋଗାଡ଼ରେ ବିଫଳ ବାପାଙ୍କ ଚଉଦ ପୁରୁଖା ଉଧେଇ ଭଉଣୀ ଯେ ଫେରାର ନ ମାରିବ ତାର କି ଗ୍ୟାରାଣ୍ଟି ଅଛି? ହେଲେ କିଛି ହେଲା ନାହିଁ । ଯୋଡ଼ିମାନଙ୍କ ପିର ସିନେମାକୁ ସତ୍ୟତାରେ ପରିଣତ କରିବାର ତାକତ ଆମର ନଥିଲା । ଆମ ଅସାମର୍ଥ୍ୟକୁ ଅନୁମାନ କରି ହୁଏତ ବାପା-ମା ମଧ୍ୟ ନିଶ୍ଚିନ୍ତ ଥିଲେ । ନା ଝିଅ ଠିକ କରି ମୋତେ ବାହାଘରର ସ୍ୱପ୍ନ ଦେଖାଇଲେ, ନା ଭଉଣୀକୁ ଟେମ୍‌ଟେନ୍ ହେବାରୁ ବଂଚିତ କଲେ ।

ନିଜ ଗାମ୍ଭୀର୍ଯ୍ୟ ରକ୍ଷା କରି ମୁଁ ଆଗ କୌଣସି ବଂଧୁଙ୍କ ସହ ବିବାହ ପ୍ରସଙ୍ଗ ଆଲୋଚନା କରୁ ନଥିଲି । ବରଂ ଚେହେରାକୁ ଆଖି ଆଗରେ ରଖି ସେଥିରୁ ଦୂରେଇ ରହୁଥିଲି । ମନରେ

ଦମ୍ଭ ଥିଲା, ଯିଏ ଯାହା କହିଲେ ବି, କନ୍ୟା ମିଳିବା ପାଇଁ ଚାକିରୀ ଅଛି, କନ୍ୟା ଯୋଗାଡ଼ ପାଇଁ ବାପା-ମା ଅଛନ୍ତି, କିଛି ଅସୁବିଧା ହେବ ନାହିଁ । ବେଳୁ ବେଳ ଆଉ ଦମ୍ଭ ରହିଲାନି । ଅନ୍ତରଙ୍ଗ ଭାବୁଥିବା ବଂଧୁମାନଙ୍କ ଆଗରେ ସମସ୍ୟାଟି ଉତ୍‌ଥାପନ କଲି । କାଳେ କିଏ ନୂଆଁ ବୁଦ୍ଧି ରଖିଥିବ । ସତକୁ ସତ ଦିନେ ଜଣେ ବୁଦ୍ଧି ଦେଲା ଏବଂ ତା ବୁଦ୍ଧିରେ ମୁଁ ବାପାଙ୍କୁ ଲମ୍ବା ଚିଠିଟିଏ ଦେଲି । ବିଷୟ ଥିଲା—ଛୋଟ ସହରରେ ଖାଇବା ଅସୁବିଧା । ହୋଟେଲ ଭଲ ନୁହେଁ ; ରାନ୍ଧି ଖାଇବା, ଅର୍ଦ୍ଧେକ ଦିନ କିଛି ନଖାଇବା, ବାକୀ ଅର୍ଦ୍ଧେକ ଦିନ ଖିଚଡ଼ି ଖାଇବା, ଆଦି-ଖାଇବା ସଂପର୍କୀୟ ଯେତେ ଗୁଡ଼ିଏ ସମସ୍ୟା ଉପୁଜିପାରେ, ତାର ସବିସ୍ତୃତ ବିବରଣୀ ଥିଲା ଚିଠିରେ । ବଂଧୁଙ୍କ ଭବିଷ୍ୟତବାଣୀ—ଚିଠିପାଇ ବାପା ବିବାହର ବ୍ୟବସ୍ଥା କରିଦେବେ । ନୋହିଲେ ମା'ତାଙ୍କୁ ଆଉ ରଖି ଥୋଇ ଦେବ ନାହିଁ । ମାତ୍ର ହାୟ ! କେବଳ ଦୁଇ ଧାଡ଼ିର ଚିଠିରେ ବାପାଙ୍କ ପରାମର୍ଶ ଆସିଲା । 'ଚାକର ପିଲାଟାଏ ରଖ । ସବୁ ସୁବିଧା ହେବ ।' ଦୁଇଟି ସରଳ ବାକ୍ୟରେ ବାପା ଏତେ ବଡ଼ ଜଟିଳ ସମସ୍ୟାକୁ ସୁଧାରି ଦେବେ - ଏହା ବଂଧୁଜଣକ ସ୍ୱପ୍ନରେ ସ୍ରଷ୍ଟା ଭାବି ନ ଥିଲେ ।

ମାଘ ମାସ ସପ୍ତମୀ । ସକାଳୁ ଡାମରା କାଉ ଗାଁ ଚୌକିଦାର ପରି ଦୁଇ ଥର ଆମ ଛାତରେ ପାଟି କରି ଚାଲିଗଲା । ମା'ସକାଳୁ ଉଠି ଅନ୍ୟଦିନ ପରି ଝାଡୁ ବା ବିଲେଇ ନ ଦେଖି ତୁଳସୀ ଚଉଁରା ଦେଖିବାର ସୁଯୋଗ ପାଇଥାଏ (ମା'ର ଅଭିଯୋଗ ଯେ ମା' ଉଠିବା ଆଗରୁ ଖୁଡ଼ି ବାଟ ମୂହଁରେ ଝାଡୁ ରଖିଯାନ୍ତି ଅବା ବିଲେଇ ଭଳି ନିଜେ ଛିଡ଼ା ହୋଇଥାନ୍ତି ।) ଭଉଣୀର ବାଁ ଆଖି ଆଜି ଜର୍ଡା ଝୁରି ଭଳି ଫଡ଼କୁଥାଏ । ସମସ୍ତଙ୍କର ଆଶା ଥାଏ, ଆଜି କିଛି ଶୁଭ ହେବ । ସତକୁ ସତ ଥିର ପିଆ ବେଳକୁ ଭଉଣୀ ବୟସର ଦରବୁଢ଼ା ଲୋକଟାଏ ଆସି ପହଂଚିଲା । ବିନା କୌଣସି ଉପକ୍ରମଣିକାରେ ସେ କହିଲା, ବାହାଘର ପାଇଁ ସେ ଝିଅ ଖୋଜୁଛି । ଖବର ପାଇ ଆମ ଘରକୁ ଆସିଛି । ଚଉତ୍ରିଶ ବର୍ଷ ତାକୁ ହେଲା ଆସି । କମ ବୟସର ଝିଅ ତ ମିଳିବେନି । ଦରକାର ବି ନାହିଁ । ତେଣୁ ନିଜ ବୟସର ଝିଅଟିଏ ଖୋଜୁଛି ସେ । ଲୋକଟିର କଥାବାର୍ତ୍ତାରୁ ମନେ ହେଲା ଭଉଣୀଠାରୁ ମଧ୍ୟ ବିବାହ ପାଇଁ ସେ ଅଧିକ ବ୍ୟଗ୍ର । ମଧ୍ୟସ୍ଥି, ବାପ, ଭାଇ, ବରପାତ୍ର—ସମସ୍ତଙ୍କ କାମ ସେ ଏକା କରୁଛି । ନ ପଚାରୁଣୁ ଜବାବ ଦେଲା, ବାପା ନାହାନ୍ତି । ଭାଇ ବଡ଼ ସ୍ୱାର୍ଥପର । ନିଜେ ବାହା ହେଲା ପରେ ଚାହାନ୍ତି—ଦୁନିଆଁର କେହି ବାହା ନ ହୁଅନ୍ତୁ । ପଚାରିଲେ କହନ୍ତି- ବିବାହ ବଡ଼ ଜଞ୍ଜାଳ । ମଧ୍ୟସ୍ଥିମାନଙ୍କ ଉପରେ ତା'ବିଶ୍ୱାସ ନାହିଁ । କଥାକୁ ଓଲଟ ପାଲଟ କରି କୁହନ୍ତି ।

ଅନ୍ୟଥର କୁଣିଆଁ ଚର୍ଚ୍ଚାରେ ବାପା-ମା ନାକେଦମ ହୋଇ ପଡ଼ନ୍ତି । ମାତ୍ର ଏ ଲୋକଟିର

ସିଧା ସାଧା ବ୍ୟବହାର ଓ କଥାବାର୍ତ୍ତା ସେମାନଙ୍କୁ ଅଧା ଉଶ୍ୱାସ କରି ଦେଲା । ଚା କପଟିଏ ଆଣିବା ବାହାନାରେ ମା ବି ଆସି ତା ପାଖରେ ବସିଲା ଯେ, ଯିବାର ଆଉ ନାଁ ନେଲାନି । ଚା'ଧରି ଲୋକଟି କହିଲା, କୁଣିଆ ହେଇ କାହା ଘରକୁ ଗଲେ ସେ ଚା'ପିଏ ସିନା, ଘରେ ତାକୁ ପଖାଳ ଭଲ ଲାଗେ ।

ପ୍ରଥମ ଥର ମା ମନ ଖୋଲି ତାକୁ ଅନେକ କଥା ପଚାରିଲା, ପରିବାର, ପାରିବାରିକ ସ୍ଥିତି, ଶିକ୍ଷା-ଦିକ୍ଷା । ଏମିତି ପ୍ରଶ୍ନ ସବୁ ବାପା ପଚାରି ପାରି ନଥାନ୍ତେ । ଲୋକଟି ଆରାମରେ ସବୁ କଥା କହିଗଲା । ମେଟ୍ରିକ୍ ପାସ ପରେ ବର୍ଷଟିଏ ଚାକିରୀ ଖୋଜିଲା ସେ । ତା'ବି ବଡ଼ଭାଇ କଥାରେ ପଡ଼ି । 'ଏମେ, ବିଏମାନଙ୍କୁ ଚାକିରୀ ମିଳୁନି, ଆମକୁ କିଏ ପଚାରେ?' ଏବେ ଚାଷ କରୁଛି । ଚାରି ଏକର ଜମି । ଖାଇବାକୁ ସାଙ୍ଗରେ କେବଳ ବୁଢ଼ୀମା । ଭାଇ ନିଜ ଜଞ୍ଜାଳ ନିଜେ ବୁଝନ୍ତି । ମରୁଡ଼ି ନ ହେଲେ ପେଟ ଅପୋଷା ରହେନି । କ୍ଷେତର ସବୁ କାମ ସେ ବିନା ଭୁତିଆରରେ ନିଜେ କରେ । ଧୋବା ପିଲା ଜଣେ ଗାଁର ଦରକାର ବେଳେ ସାହାଯ୍ୟ କରେ । 'ତା' ଦରକାର ବେଳେ ମୁଁ ।'

ଝିଅ ଦେଖା କଥା ପଡ଼ିବାରୁ କହିଲା, ସୁନ୍ଦର, ଅସୁନ୍ଦର ସବୁ ଆଖିର ରୋଗ । ଏଠିକି ବୁଝିପାରିଲେ ଝିଅ ଭଲ କି ଖରାପ ତା'ବି ଆଉ ଏ ଦୁଇ ମିନିଟର ଦେଖାରୁ ଜାଣି ହେବ । ମା'କୁ କହିଲା, 'ତୁମେ ଝିଅଙ୍କୁ ପଚାର । ତାଙ୍କର ମୋତେ ପସନ୍ଦ ହେବା କଥା ।' ଭଉଣୀ କି ଆଉ ନାପସନ୍ଦ କରେ?

ସେ ଦିନ ହିଁ ସବୁ କଥା ପଟିଗଲା । ଗାଁର ଜଣେ କାମଚଳା ପଣ୍ଡିତର ସହାୟତାରେ ଲଗ୍ନ ବି ଠିକ୍ ହେଲା । ପନ୍ଦର ଦିନ ପରେ ବିବାହ । ଦିଆନିଆ କଥା ପଡ଼ିବାରୁ ଲୋକଟି ଯୋର ଦେଇ କହିଲା, କେବଳ ଶେଜ ପଲଙ୍କ ତାର ଦରକାର । ବାପା ଅଧିକ କିଛି ଦାବୀ ଅଛିକି ବୋଲି ପଚାରିବାରୁ ଉତ୍ତର ଦେଲା, ଘଡ଼ିଟିଏ ତାର ଅଛି । ଟି.ଭି. ସେ ଗାଁ ଯୁବକ ସଂଘରେ ଦେଖେ କେବେ କେବେ । ସାଇକେଲ ସେ ଚଢ଼ି ଜାଣେ ନା । କ୍ଷେତ ରାସ୍ତାରେ ସାଇକେଲ ବି ଯିବନି । ଚଳିବା ଭଳି କଂସା ବାସନ ଘରେ ଅଛି । ତା ସତ୍ତ୍ୱେ ବାପା ରେଡ଼ିଓଟିଏ ଦେବାକୁ ଇଚ୍ଛା ପ୍ରକାଶ କରିବାରୁ ତା'ବଦଳରେ କିଛି ଟଙ୍କା ଦେଲେ ବାହାଘରର ଧାର ପରିଶୋଧ କରିବ ବୋଲି ସେ ମତ ଦେଲା ।

ଘଟଣାଟିର ଆଉ ବିଶେଷ ବ୍ୟାଖ୍ୟା ନ କରି ମୁଁ ଜଣାଇବାକୁ ଚାହେଁ ଯେ ପନ୍ଦର ଦିନ ପରେ ଭଉଣୀର ବାହାଘର ଶେଷ ହେଲା । ବିବାହ ବେଳେ କେବଳ ଗୋଟାଏ ମହତ୍ୱପୂର୍ଣ୍ଣ ଘଟଣା ଘଟିଥିଲା—ବର ଆସିବାରେ ବିଳମ୍ବ । ଭଉଣୀ ଓ ମା ଜାଣେ ବର ଠକି ଦେଇ ଗଲା

ଆଶଙ୍କା କରି ଢେର କାନ୍ଦିଲେ । ଉପସ୍ଥିତ ବଂଧୁ ପରିଜନ ତାଙ୍କୁ ଝିଅ ଶାଶୁ ଘରକୁ ଯିବାର ଅବ୍ୟବହିତ ପୂର୍ବରୁ କାନ୍ଦଣା ଭାବି ଅବଶ୍ୟ ନଜର ଅଂଦାଜ କରିଦେଲେ ।

ମା'ର ନିର୍ଦ୍ଦେଶ ମତେ ଭଉଣୀ ବିବାହର (ଝିଅ ଦେଖା ଘଟଣା ସମେତ) ସମସ୍ତ ବିବରଣୀ ବାପା ଟିକିନିଖି ଭାବେ ମତେ ଚିଠି ନମ୍ବର ଏକ··ଦୁଇ··ତିନି କରି ଲେଖିଥିଲେ । ଗାଁରୁ ବହୁତ ଦୂରରେ ଥିବା ସତ୍ତ୍ୱେ ଚିଠି ଯୋଗୁଁ ମୁଁ ବୋଧହୁଏ, ବିବାହ ସଂମ୍ବଧରେ ଭଉଣୀଠାରୁ ବି ଅଧିକ ଜାଣିଗଲି ।

ବାପାଙ୍କ ଲମ୍ବା ଚିଠି ଲେଖିବାର ବଡ଼ କାରଣ ହେଲା ମୋଠାରୁ ବିବାହ ଖର୍ଚ୍ଚ ଦାବୀ । ତାଙ୍କୁ ଜଣା ଭଉଣୀ ବିବାହ ପାଇଁ ମୁଁ ଧାର କରିବାକୁ ସୁଦ୍ଧା ମନା କରିବି ନାହିଁ । ଏ ବାହାନାରେ ପୂର୍ବରୁ ଦୁଇଥର ବି ସେ ଟଙ୍କା ନେଇ ସାରିଛନ୍ତି । ତେଣୁ ଏଥରର ଚିଠି ପୂର୍ବ ଚିଠି ଭଳି ନୁହେଁ ବୋଲି ବିଶ୍ୱାସ ସୃଷ୍ଟି କରିବା ଥିଲା ଟିକିନିଖି ଚିଠିର ଏକ କାରଣ । ଦାବୀ ମତେ ଟଙ୍କା ପଠାଇବା ଆଗରୁ ମୁଁ ପୂର୍ବର ପରାମର୍ଶଦାତା ବଂଧୁକୁ ଡାକିଲି । ତା'ର ଦୃଢ଼ ମତ ମୋର ଆଦୌ ଟଙ୍କା ପଠାଇବା ଉଚିତ ନୁହେଁ । ପ୍ରାୟ ଆଠଟି ଅକାଟ୍ୟ ଯୁକ୍ତି ତା ମତ ସପକ୍ଷରେ । ଏବେ ନିଶ୍ଚିତ ହେଲି ଯେ, ପୂର୍ବୋକ୍ତ ଚାକର ରଖିବା ବିଷୟକ ବାପାଙ୍କ ଚିଠି ଯୋଗୁଁ ସେ ମୋ ଅଜାଣତରେ ବାପାଙ୍କୁ ଶତ୍ରୁ ଘୋଷଣା କରିଛି । ଦାବୀର ଅଧା ଟଙ୍କା ପଠାଇବାକୁ ଇଚ୍ଛା ପ୍ରକାଶ କରି, ମୁଁ ତାର ରାଗ ଊଣା କରିବାକୁ ଚେଷ୍ଟା କଲି । ମାତ୍ର କାହିଁ? ତା'ର ବିଶ୍ୱାସ, ଏହା ଦୁଇଟି ପୀଢ଼ି - ପିତା ଓ ପୁତ୍ର, ପୁରୁଣା ଓ ନୂଆ-ମଧ୍ୟରେ ଲଢ଼େଇ । ଟଙ୍କା ଦେଇ କୁଆଡ଼େ ମୁଁ ନୂଆ ପୀଢ଼ିର ଅପମାନ କରିବି । ପରଦିନ ଶ୍ରେଣୀରେ ପ୍ରଥମ ପିରିଅଡ଼ଟି ତାର ନଥିଲେ ଏବଂ ତାକୁ ବଡ଼ି ସକାଳୁ ଉଠିବାର ନଥିଲେ, ନିଶ୍ଚୟ ସେ ମୋ ସହ ଝଗଡ଼ା କରି ଚାଲିଥାନ୍ତା । ଶେଷରେ ଅବଶ୍ୟ ମୁଁ ବି ତା କଥା ମାନିଲି ବୋଲି କହିଲି । ପରଦିନ ବାପାଙ୍କ ନାଁରେ ଟଙ୍କା ପଠାଇଲା ବେଳେ କାଳେ ତା ସହ ବେଂକରେ ଦେଖା ହୋଇଯିବ ବୋଲି ଡର ମାଡୁଥାଏ । ଭାଗ୍ୟକୁ ତା ସହ ଦେଖା ହେଲା ନାହିଁ ।

ଭଉଣୀର ବିବାହପରେ ଖର୍ଚ୍ଚର ଟିକିନିଖି ବିବରଣୀ ସମ୍ମିଳିତ ଆଉ ଯେଉଁ କେତୋଟି ପୋଷ୍ଟକାର୍ଡ ଆସିଲା, କୌଣସିଥିରେ ମୋ ବିବାହ ସଂପର୍କରେ ବିନ୍ଦୁ ବିସର୍ଗ ସୁଦ୍ଧା ଉଲ୍ଲେଖ ନଥିଲା । ଏବେ ଭଙ୍ଗା ଘର ଠିକ ହେବା ଯାଏଁ ଅପେକ୍ଷା କରିବାକୁ ହେବ । ସେତେବେଳକୁ ବାଳ କଥା ଛାଡ଼, ମୁଣ୍ଡ ଝଡ଼ି ପଡ଼ିଲେ ସୁଦ୍ଧା କାହାରି ଚିନ୍ତା ନାହିଁ । ରାଗରେ ମୋର ହାଡ଼ ପୋଡ଼ି ଗଲା । ଟିକିଏ ସୁଦ୍ଧା କାଣ୍ଡଜ୍ଞାନ ଥାଆନ୍ତା? ମନରେ ଆତ୍ମବିଶ୍ୱାସ ଅଛି ବୋଲି ସିନା! ନୋହିଲେ କେବେଠୁ ମଣିଷ ପାଗଳ ହୋଇ ସାରନ୍ତାଣି । ହଁ, କାମଧେନୁ ଭଳି ମାସକୁ ମାସ

ଦରମା ଗଣ୍ଡାକ ପଠେଇ ଦେଲା ପରେ ପୁଅ ଅଖିଆ ରହିଲେ ବା ବାତୁଅ ହେଲେ କା'ର କ'ଣ ଯାଏ ? 'ବାହାଘର ପରେ ଖର୍ଚ୍ଚ ବଢ଼ିବ; ମାସିକ ପାଉଣା ତାଙ୍କର ଊଣା ହେବ; ତା ଛଡ଼ା ସ୍ତ୍ରୀ ବୁଦ୍ଧିରେ ପଡ଼ି ପୁଅ ଟଙ୍କା ପଠେଇବା ପୁରା ବନ୍ଦ କରି ନଦେବ ବୋଲି କି ମାନେ ଅଛି?' ସ୍ୱାର୍ଥପର ସମସ୍ତେ । ବାପା ଓ ମା ମଧ୍ୟରେ ଚାଲୁଥିବା କଥୋପକଥନକୁ ଅନୁମାନ କରି ନିଜର ରାୟ ଦେଲି । ପ୍ରତ୍ୟେକ ଥର ଘରୁ ଚିଠି ଆସିଲେ ଏହି ଅନୁମିତ କଥୋପକଥନଟି ପ୍ରତିଧ୍ୱନୀତ ହୋଇ ମତେ କିଛି ବେଳ ଦହଗଂଜ କରେ । ଏ ସମୟରେ ମୁଣ୍ଡରୁ କେଶପତନର ପରିମାଣ ଓ ବଂଧୁଗଣଙ୍କ କଟୂକ୍ତିର ମାତ୍ରା ବୃଦ୍ଧି ହେଲା ପରି ମନେହୁଏ । ପରାମର୍ଶଦାତା ବଂଧୁ 'ମୁଡ଼ ଅଫ୍' ଥବାର ଟେର ପାଇ ଜାଣିବାକୁ ଚାହେଁ ସବୁ । କୌଣସି ନୂଆ ସମସ୍ୟା ଭିତରକୁ ଠେଲି ହୋଇଯିବା ଆଶଙ୍କାରେ ମୁଁ ମନ ଖୋଲି ତା ସହ କଥାଭାଷା କରି ପାରେନା ।

ଦିନେ ସ୍ଥିର କଲି ଦୁଇ ମାସର ଛୁଟୀ ନେଇ ଗାଁରେ ରହିବି । ଲାଜ ସରମ ଛାଡ଼ି ସବୁ କଥା ବାପା-ମାଙ୍କୁ କହିବି । 'ସ୍ତ୍ରୀ ସୁଖ ପାଇଁ ଯଦି ବାହା କଥା ଉଠାନ୍ତି, ଆହୁରି ଦଶବର୍ଷ ବାହା ନହେଲେ ବି ଚିନ୍ତା ନାହିଁ । ଭୟ ମୋର ଲୋକ ଲଜ୍ୟାକୁ । ଆସି ରୁହ ମୋ ସାଙ୍ଗରେ, ଦେଖ ମୋ ଦୁରବସ୍ଥା । ତାପରେ ବୁଝିବ ମୁଁ କାହିଁକି କହୁଛି ।' ୟା ପରେ ବି ଯଦି କୌଣସି ସନ୍ତୋଷ ଜନକ ଉତ୍ତର ନମିଳେ ନିଜେ ଝିଅ ଠିକ କରି ବାହାହେବାର ଧମକି ଦେବି । ଭୟ, ବାପା ଯେମିତି ଲୋକ, ଯଦି କହିବେ, 'ହଁ, ଠିକ ଅଛି,' କି ପ୍ରତିକ୍ରିୟା ହେବ ମୋର ? ନିଜ ଚେଷ୍ଟାରେ ପାତ୍ରୀ ଅନ୍ୱେଷଣ କ'ଣ ସଂଭବ? ଏ ପ୍ରଶ୍ନର ଆଉ ଉତ୍ତର ନଥିଲା ମୋ ପାଖରେ । 'ଦେଖାଯିବ ସେତେବେଳକୁ' ପରି ଏକ ବିରାଟ ସମ୍ଭାବନା ଭିତରକୁ ପ୍ରଶ୍ନଟିକୁ ହାବୁଡ଼େଇ ଦେଇ ମୁଁ ଚିନ୍ତାଶୂନ୍ୟ ହେବାର ଚେଷ୍ଟା କଲି । 'ବିବାହ ପ୍ରଶ୍ନ ନେଇ ବାପ ଓ ପୁଅ ଭିତରେ ଯୁକ୍ତିତର୍କ ।' ଆମ ଗାଁ ରାଜଧାନୀ ଏବଂ ବାପା ଦେଶର ରାଷ୍ଟ୍ରପତି ହୋଇଥିଲେ ମୋ ଘରେ ପହଂଚିବା ପରଦିନ ସଂବାଦପତ୍ରର ପ୍ରଥମ ପୃଷ୍ଠାରେ ଝୁଲା ସଂବାଦଟିଏ ପଢ଼ିବାକୁ ମିଳନ୍ତା । ସପ୍ତାହେ ପରେ ସଂପାଦଙ୍କଂକୁ କ୍ରମାଗତ ପତ୍ର ସ୍ତମ୍ଭରେ ଲୋକେ ନିଜ ନିଜ ଝିଅର ପ୍ରସ୍ତାବ ଦିଅନ୍ତି । ଅତ୍ୟାଧୁନିକା ବୋଲି ଦାବୀ କରୁଥିବା ଭଉଣୀ ପରି ଅବିହାଡ଼ି, କିନ୍ତୁ ଚିଠି ଲେଖାରେ ଓସ୍ତାଦ ଝିଅମାନେ ଅଭିଭାବକଙ୍କ ବିନା ପ୍ରତୀକ୍ଷାରେ ନିଜେ ଚିଠି ଲେଖୁଥାନ୍ତି । ସମ୍ବାଦପତ୍ରରେ ପ୍ରକାଶିତ 'ରାଷ୍ଟ୍ରପତିଙ୍କ' ପୁତ୍ରର ଫଟୋ ଦେଖିବା ପରେ ବି? ଏହି ପ୍ରଶ୍ନଟି ମତେ କଳ୍ପନା ରାଜ୍ୟରୁ ବାସ୍ତବିକତାକୁ ଫେରିବାରେ ବହୁତ ସାହାଯ୍ୟ କଲା ।

ଗାଁରେ ପହଂଚିବା ପରେ ପରେ ମୋର ଜଣେ ବିଧବା ପିଉସୀ, ଯିଏ ଭଉଣୀ ବିବାହ ପୂର୍ବରୁ ଆସି ବିବାହର ତିନି ମାସ ପରେ ସୁଦ୍ଧା ସ୍ୱ-ଘରକୁ ଫେରିନଥାନ୍ତି, ବିବାହର ବିବରଣୀ

ଦେବାରେ ଲାଗିଲେ । ବାପାଙ୍କ ଚିଠିରେ ମଧ୍ୟ କୌଣସି ଅଂଶ ବିବରଣୀର ବାଦ ପଡ଼ିଥାଇପାରେ, ଏ ଧାରଣା ମୋର ଆଗରୁ ନଥିଲା । ମା'ର ଚିର ଶତ୍ରୁ ଖୁଡ଼ିଙ୍କ କୁ-ଚକ୍ରାନ୍ତ (ବିବାହ ବେଳେ) ଏବଂ ବରର ଖୋଲା ସ୍ୱଭାବ ଉପରେ ତାଙ୍କ ବିବରଣୀରେ ବିଶେଷ ଗୁରୁତ୍ୱ ଥାଏ । ଭିଣେଇଙ୍କର (ଏବେ 'ଲୋକଟି ନୁହେଁ') ପ୍ରତି କଥାରେ କୁଆଡ଼େ ମଣିଷ ହସି ହସି ବେଦମ ହୋଇଯାଏ । ଉଦାହରଣ ଆଳରେ ବିବାହ ବେଦୀରେ ଭିଣେଇ କହିଥିବା କେତୋଟି କଥା ବି ସେ ଉଲ୍ଲେଖ କଲେ । ମତେ ହସ ମାଡ଼ିଲା ନାହିଁ । ଏତେ ବେଶୀ ଚିନ୍ତା ହେଲେ କୋଉ କଥାରେ ବା ହସ ମାଡ଼ିବ? ନିଜ ପାଇଁ ଆତ୍ମଦୟା ଓ ଭିଣେଇ ପ୍ରତି ଦରଦ ଥାଏ ମୋ ଭିତରେ । 'ହଁ, ବାପାଙ୍କ ଚିଠିରୁ ମତେ ସବୁ ଜଣା । ଯଦି ଇଚ୍ଛା, ଏବେ ମୋ ବିବାହ କଥା କ'ଣ ହେଲା କୁହ । ନୋହିଲେ ଚୁପ ରୁହ ।' ପିଉସୀଙ୍କୁ ତାଗିଦା କରିବା ପାଇଁ ମନ ତାକୁଥାଏ । କିନ୍ତୁ ଏଆଡ଼େ ଆଗ୍ରହରେ ତାଙ୍କ କଥା ଶୁଣିବାର ଅଭିନୟ କରୁଥାଏ । ଏ ଘରେ କୁଆଡ଼େ କେବଳ ମୁଁ ହିଁ ତାଙ୍କୁ ପଚାରେ । ଆହୁରି କିଛି ବେଳ ଗପିଥାନ୍ତେ ସେ, ଖୁଡ଼ି ସାଙ୍ଗରେ କିଛି ଝଗଡ଼ା ବାକୀ ଥିବାର ବାହାନାରେ ଉଠି ଚାଲିଗଲେ । ମୋର ଶୁଣିବା ପାଇଁ ଆଗ୍ରହ ନ ଥିବା କଥା ଅନୁମାନ କଲେ ବୋଧହୁଏ । ଦେଖିଲି, ମା'ର ଖୁସି ପାଇଁ ସେ ଖୁଡ଼ିଙ୍କୁ ପୁରାଣ ଯୁଗର ଖଳ ଚରିତ୍ର 'ମନ୍ଥରା' ନାମରେ ସଂବୋଧନ କରୁଛନ୍ତି । ପିଉସୀ ବିଚାରି ବୁଢ଼ୀ ଲୋକ, ପଚା ପରିବା ପରି । ଯେଉଁଠି ରହିବେ ଟିକିଏ ଅଧିକ ତେଲ ନ ହେଲେ ଗଂଧ କରିବେ । ଆମ ଘରେ ମା'ମନଧରି ନ ରହିଲେ ବା ତାଙ୍କୁ କିଏ ରଖିବ? ଯାହା ହେଉ 'ମନ୍ଥରା' ଖୁଡ଼ି ପିଉସୀ ଦାଉରୁ ମୋର ରକ୍ଷାକାରିଣୀ ରୂପେ ଏବେ ଉଭା ହେଲା ।

ପିଉସୀ ଯିବା ପରେ ଚା'କପଟିଏ ଧରି ମା'ପାଖକୁ ଆସିଲା । କପେ ଚା'ରେ ମତେ ତାହେଲେ ବାକୀ ଥିବା ବିବରଣୀତକ ଶୁଣିବାକୁ ପଡ଼ିବ । ବାମ ହାତରେ ଚନ୍ଦା ମୁଣ୍ଡ ଆଉଁସା ଓ ଡ଼ାହାଣ ହାତରେ ବ୍ରଣ ଉତ୍ପାଟନ କାର୍ଯ୍ୟଟି ମା'କୁ ଦେଖି ମୁଁ ଆରମ୍ଭ କଲି । ଏକ ଗମ୍ଭୀର ବାତାବରଣ ସୃଷ୍ଟି ପାଇଁ ଗତ କେତେ ବର୍ଷ ହେଲା ଏହି ଭାବଟି ମତେ ଲଗାତର ସାହାଯ୍ୟ କରି ଆସିଛି । ଆଜିର ପରିସ୍ଥିତିରେ ଇଚ୍ଛା ବିରୁଦ୍ଧରେ କିଛି ଶୁଣିବାରୁ ରକ୍ଷା ପାଇବା ପାଇଁ ଏହା ଥିଲା ମୋ ପାଖରେ ଏକମାତ୍ର ବିକଳ୍ପ ।

ଚା କପଟି ମୋ ହାତକୁ ଦେଇ ମା' ନାନା ଉପକ୍ରମଣିକା ଆରମ୍ଭ କଲା । ଯଥା - କେବେ ବାହାରିଲି, କେତେ ଦିନ ରହିବି, ରାସ୍ତାରେ ସୁବିଧା-ଅସୁବିଧା ଇତ୍ୟାଦି । ନୂଆ ଭିଣେଇକୁ ଆଦର୍ଶ ରୂପେ ଗ୍ରହଣ କରିବା ପରେ ସୁଦ୍ଧା, ଆମ ପରିବାରରେ ଉପକ୍ରମଣିକା ବିହୀନ କଥାବାର୍ତ୍ତା କାହାକୁ ପସନ୍ଦ ନଥିଲା । ମନ୍ଥରା ଖୁଡ଼ିର ଚକ୍ରାନ୍ତ, ଭଉଣୀ ବିବାହର

ଖର୍ଚ୍ଚ, ଖଟି ଯିବା ବେଳେ ଭଉଣୀର ଫିଟି ପଡୁଥିବା ରୂପ, ଆଦି ବର୍ଣ୍ଣନା କରିବା ପାଇଁ ମା'ଙ୍କ ହୁଏତ ଏହା ପୂର୍ବ ପ୍ରସ୍ତୁତି । ସବୁସାରି ତା କଥା ମୋ ବିବାହ ପ୍ରସଂଗକୁ ପହଞ୍ଚିବା ବେଳକୁ ନିଶ୍ଚୟ ଲଗ୍ନ ନଥିବ ଅବା ଛୁଟୀ ସରିଯାଇଥିବ । ତେଣୁ ତା କଥାକୁ କେଉଁଠି କାଟି ଅସଲ ସମସ୍ୟାଟି ଉତ୍‌ଥାପନ କରିବି, ମୁଁ ସୁଯୋଗ ଉଣ୍ଟୁଥାଏ । ବାପା-ମା'ଙ୍କର ଦୂରଦର୍ଶିତାର ଅଭାବ ବୋଲି କ'ଣ ପୁଅ ସବୁଦିନ ଚୁପ ରହିବ? ରୀତି ଉଲଙ୍ଘନ ପୂର୍ବରୁ ନିଜକୁ ମୁଁ ଦମ ଦେଲି । ପର ମୁହୂର୍ତ୍ତରେ ମନେପଡ଼ିଲା, ଭାବିବେ, ପୁଅ ନିଜ ମୁହଁରେ ଏମିତି ଲଜ୍ଜାକର କଥା ସବୁ କ'ଣ କହୁଛି? ଉଧୁଳିଆ ଯାଇଥିବା ଗାଁର ନବ ଯୁବକ-ଯୁବତୀ ଓ ଉଚ୍ଚଶିକ୍ଷିତ ପୁଅ ଭିତରେ ତେବେ କି ଫରକ? ଦମ୍ଭ ସବୁ ପାମ୍ପଡ଼ ପରି ଭାଙ୍ଗିଗଲା ।

'ଏଥର ବାହାଘର ପାଇଁ ତୁ ମନା କରିବୁନି ।' ଚିନ୍ତାରାଜ୍ୟରେ ମୁଁ ବାଟବଣା ହୋଇ ବୁଲୁଥିଲାବେଳେ ମା'ର ଏ ପଦକ ମତେ ମଝିରାସ୍ତାକୁ ଆଣି ଆସିଲା । ଅଯଥାରେ ତାକୁ ଶତ୍ରୁ ଘୋଷଣା କରି କେତେବେଳୁ ତା କଥାର ଖିଅ ଛାଡ଼ି ସାରିଥାଏ ସିନା, ମା ଯେ ମୋ ହିତ କଥା କହୁଛି । ପୁଣି କହିଲା, 'ଭଉଣୀ ବାହାଘର ନ ସରୁଣୁ, ଆମେ ତୋ ବିବାହ ଆୟୋଜନରେ ଲାଗିଛୁ, ମଝିରେ ତୋ ପିଉସୀ ନଥିଲେ ତ କିଛି କାମ ଆଉ ବାକୀ ନ ଥାନ୍ତା । ବୁଢ଼ୀ ଯିବ କି ଏଠି ରହି ମରିବ ଯେ?' ପିଉସୀ ବିରୋଧରେ ମା' ଖଡ଼ଗହସ୍ତା ତାଙ୍କ ଉପସ୍ଥିତି କେମିତି ସବୁ ଅସୁବିଧାର ମୂଳ, ତା ମୁଁ ମା'କୁ ପଚାରିପାରିଲି ନାହିଁ । ସେ ପ୍ରସଂଗ ଆରମ୍ଭ କଲେ, ବିବାହ ପ୍ରସଂଗକୁ ମା' ଡେରିରେ ଫେରିବ ବା ଆଦୌ ଫେରିବ ନାହିଁ

ମା'ର 'ଆୟୋଜନ' ଭିତରେ ଖଳିପତ୍ର, ବିବାହ ଲଗ୍ନ, ସବୁକିଛି ଅନ୍ତର୍ଭୁକ୍ତ ଥିଲା ଭଉଣୀ ବିବାହର ବେଦୀ ଭଂଗା ହୋଇନି; ମଡୁଆ ଉଲା ହୋଇନି । ସେସବୁ ମୋ ବାହାଘର ବେଳେ କାମରେ ଆସିବେ । ଯୋଗାଡ଼ ହୋଇନି ମାନେ କେବଳ ଝିଅଟିଏ । ମା ପାଖରେ ଏ ପ୍ରଶ୍ନର ସମାଧାନ ବି ଥିଲା । 'ଝିଅର କୋଉ ଅଭାବ? କୁଢ଼କୁ କୁଢ଼ ଝିଅ ଭର୍ତ୍ତି । ପୁଅ ଖାଲି ପସନ୍ଦ କରିବା କଥା । ଅସଲରେ ଭଉଣୀ ବାହାଘର ପାଇଁ ପୁଅ ଠିକ୍ କରିବା ଦୁଃସମୟରେ ମା'କୁ ଦୁନିଆଁ ସାରା କାଛୁକୁଣ୍ଡିଆ ଭଳି ଝିଅ ଭର୍ତ୍ତି ଥିବା ଏବଂ ପୁଅର ଦୁର୍ଭିକ୍ଷ୍ୟ ରହିଥିବା କଥା ମର୍ମେ ମର୍ମେ ଅନୁଭୂତ ହୋଇଥିଲା । ଯାହାକୁ ବରଟିଏ ଯୋଗାଡ଼ କରିବା ପାଇଁ କହିଲେ ଉତ୍ତର ଆସେ, 'ମୋ ଦ୍ୱାରା ସେତକ ହେଲେ, ମୋ ଝିଆରୀ/ଭାଣିଜୀ ଆଜିଯାଏ ବାଡୁଅ ଥାନ୍ତା ।' ନିଜ ଝିଅ କାହାରି ଦରବୁଢ଼ୀ ହେଲା ଯାଏଁ ଅବିହାଡ଼ି ରହେନି; ଝିଆରୀ ବା ଭାଣିଜୀ ରହନ୍ତି ! (ଏଥିଯୋଗୁଁ ତ ମା'ର ଖୁଡ଼ି ସାଙ୍ଗରେ ଶତ୍ରୁତା) । ପାତ୍ର ସମ୍ବନ୍ଧରେ ମା'ର ଏହି ପୂର୍ବଧାରଣା ଭଉଣୀ ବିବାହ ପରେ ସୁଦ୍ଧା ଅତୁଟ ଥିବାର ମୁଁ ଲକ୍ଷ୍ୟ କଲି । ମା'ର

ବିଶ୍ୱାସ ମୋ ମନରେ ମଧ୍ୟ ଆତ୍ମବିଶ୍ୱାସ ସୃଷ୍ଟି କଲା ।

ମା' ଭାବିଥିଲା ବିବାହ କଥା ପଡ଼ିଲେ ମୁଁ ଡିଆଁ ମାରିବି । କହିବି, ରୁହ ଯାଉ କିଛି ଦିନ । ମୋ ଉତ୍ତରରେ ଆଦୌ ବିଚଳିତ ନ ହୋଇ ବିବାହର ଉପକାରିତା ଉପରେ କେତୋଟି ଯୁକ୍ତି ବାଢ଼ିବା ପାଇଁ ପ୍ରସ୍ତୁତି ସୁଦ୍ଧା କରିଛି ହୁଏତ । ପୁରୁଣା ଓ ନୂଆ ପୀଢ଼ିର ଚିନ୍ତା ଭିତରେ କେତେ ବଡ଼ ଫାଟ ସତେ ! ବୁଢ଼ା ଚେହେରା ପ୍ରାପ୍ତି ପରେ ବି ନିଜକୁ ନୂଆ ପୀଢ଼ିରେ ସାମିଲ କଲାବେଳେ ଆତ୍ମବିଶ୍ୱାସ ମୋର ଆହୁରି ବଢ଼ୁଥାଏ । କଳ୍ପିତ ଫାଟକୁ ଟିକିଏ ରଂଚେ କମ କରିବାକୁ ହେଲେ ମା ପ୍ରସ୍ତାବରେ ତୁରନ୍ତ 'ହଁ' ଭରିବା କଥା ନୁହେଁ । କହିଲି, 'ରହିବା ପାଇଁ ଘର ଦିବଖରା ଆଗ ତିଆରି ସରୁ, ତାପରେ ବିବାହ । ଭୟ ଥାଏ, ମା ଯଦି କହେ, 'ଠିକ ଅଛି' ତାହେଲେ କଣ କହି ତାକୁ ଘର ଓ ବାହାଘର ଭିତରେ ଦ୍ୱିତୀୟଟି ବେଶୀ ଜରୁରୀ ବୋଲି ଧାରଣା ଦେବି ? ଯା' ହେଉ, ମା କଣ୍ଠରେ ସରସ୍ୱତୀ ବସିଲେ । ପୂର୍ବ ପ୍ରସ୍ତୁତ ଯୁକ୍ତି କେତୋଟିକୁ ବାଢ଼ି ସେ ବାହାଘରକୁ ଅଧିକ ଆବଶ୍ୟକତା ଦେଲା ।

'ବାପା କେତେ ଚିଠି ଦେଲେ, ପ୍ରତ୍ୟେକ ଚିଠିରେ ଭରଣ ଭରଣ କଥା ଲେଖିଲେ, କାହିଁ କେଉଁଠି ମୋ ବିବାହକୁ ନେଇ ପଦଟିଏ ଲେଖିଥାନ୍ତେ ? ଅନାୟାସରେ ମଣିଷ ଏତେ କାଳ ଘାଣ୍ଟି ହେଲା ।' ସିଧା ସିଧା ପ୍ରଶ୍ନ କେତେଗୋଟି ପଚାରିବାକୁ ଇଚ୍ଛା ଥିଲା ମୋର । ମାତ୍ର ମା'ର ସୂଚନା ଏବଂ ତଦ୍‌ପରେ ମୋର ସମ୍ମତି ପ୍ରଦାନ ଦିନଠାରୁ ଆମେ ସମସ୍ତେ ଏତେ ମାତ୍ରାରେ ବ୍ୟସ୍ତ ହୋଇ ପଡ଼ିଲୁ ଯେ, ଫାଲତୁ କିଛି ପଚାରିବାକୁ ସମୟ ମିଳିଲାନି । ଏକମାତ୍ର ବାରଣ୍ଡାରେ ବସି ବାପା ସଂଭାବ୍ୟ ପ୍ରସ୍ତାବ ଗୁଡ଼ିକର ଖିଅ ଖୋଲିବେ; 'ନା'ମ ତାଙ୍କ ଘରେ ଆମେ କି ବନ୍ଧୁ ବାନ୍ଧିବୁ, ଠିକ୍ ଅଛି । ପୁଅକୁ ପଚାରେଁ କହି ମା ଏକମାତ୍ର ଭିତର ଘରକୁ ଆସିବ; ବାପା ଓ ମାଙ୍କ କଥୋପକଥନକୁ ଶୁଣି ଭିତର ଘରେ ମୁଁ ଉତ୍ତର ପ୍ରସ୍ତୁତ କରିସାରିଥିବି ଏବଂ ମା ଢୁକିବା ବେଳକୁ ପେଟମାଡ଼ି ପଡ଼ିଥିବା ବହିଟିକୁ ଉଠେଇ ପଢ଼ିବାର ଅଭିନୟ କରୁଥିବି । ସାରାଦିନ ବାରଣ୍ଡାରୁ ଭିତର ଘର ହୋଇ ମା'ର ଆଣ୍ଠୁ ବଥା ବଢ଼ିଲା ସତ, କିନ୍ତୁ ଆମ ସମସ୍ତଙ୍କୁ ବ୍ୟସ୍ତ ରଖିବାରେ ଏବଂ ପୁରୁଣା ଓ ନୂଆ ପୀଢ଼ି ମଝିରେ ଥିବା ଫାଟକୁ ଯଥା ସମ୍ଭବ ପାଟିବାରେ ଦୁଇ ଚାରିଦିନ ଏହା ବେଶ ସାହାଯ୍ୟ କଲା । ପରେ ଅବଶ୍ୟ ମା'ର ଆଣ୍ଠୁ ଦରଜ ଏବଂ ବାରଣ୍ଡାର ସାର୍ବଜନୀନ ଭାବକୁ ଆଖିରେ ରଖି ବାପା ଭିତର ଘରେ ଆସି ବସିଲେ । ଗୋପନୀୟ ଏବଂ ମହତ୍ୱପୂର୍ଣ୍ଣ ଆଲୋଚନା ପାଇଁ ସର୍ବଦା ଭିତର ଘର ହିଁ ସମସ୍ତଙ୍କର ପସନ୍ଦ । ଭିତର ଘରେ ବି ସବୁକଥା ବାପା ଓ ମୁଁ ମା'କୁ ଲକ୍ଷ୍ୟ କରି କହିଲୁ । ମା' ଯୋଗସୂତ୍ର ରକ୍ଷା କଲା । ତେଣୁ ନୂଆ ପରିସ୍ଥିତିରେ ମା'ର ଆଦୌ ଗୁରୁତ୍ୱ କମିଲା ନାହିଁ । ବରଂ ତାକିଆ

ସାଙ୍ଗକୁ ଟୀକାକାର ଭୂମିକା ମଧ୍ୟ ତାଙ୍କୁ ମିଳିଗଲା ।

ଗ୍ରହଣଯୋଗ୍ୟ ପ୍ରସ୍ତାବ ଭିତରେ ଜଣେ ଡାକ୍ତରଙ୍କ ଝିଅର ନାମ ଆସିଲା । ଝିଅର ଜନ୍ମ ବେଳକୁ ଡାକ୍ତର ଜଣକ ଆମ ଗାଁ ପାଖ ସହରରେ ଅବସ୍ଥାପିତ ଥିଲେ । ଝିଅ ଜନ୍ମ ପରେ ଡାକ୍ତରାଣୀ ପାଇଁ ସଜନାଛୁଇଁ ପଥ୍ୟ ଖୋଜା ବେଳେ ତାଙ୍କର, ବାପାଙ୍କ ସହ ପରିଚୟ ହେଲା । ତେଣିକି ସଜନା ଛୁଇଁ ସାଙ୍ଗକୁ ବାଡ଼ିରୁ ଅନ୍ୟାନ୍ୟ ପନିପରିବା ଧରି ବାପା ନିୟମିତ ଡାକ୍ତର ପାଖକୁ ଗଲେ ଏବଂ ସମୁଧି ବୋଲି ସମ୍ବୋଧନ କଲେ । ନୂଆ ହୋଇ ସେତେବେଳକୁ ମା'ର ଆଣ୍ଠୁ ବଥା ଏବଂ ବାପାଙ୍କ ଛାତି ଦରଜ ଆଦି ଆରମ୍ଭ ହୋଇଥାନ୍ତି । ସମୁଧି ଡାକ ସାଙ୍ଗକୁ ବିମାର ଗୁଡ଼ିକ ମଧ୍ୟ ଆମ ଘରେ ଚିରସ୍ଥାୟୀ ହୋଇ ରହିଗଲେ । ସଂପ୍ରତି ଡାକ୍ତରବାବୁ ପଦୋନ୍ନତି ପାଇ ଜିଲ୍ଲା ମହକୁମାରେ ଘର କରି ରହିଲେଣି । ତାଙ୍କ ପରିବାର ସହ ବିବାହ ସମ୍ବନ୍ଧ ରହିଲେ ଚିରସ୍ଥାୟୀ ବିମାରଗୁଡ଼ିକ ପାଇଁ ଘରୋଇ ଡାକ୍ତର ଜଣେ ଓ ଦିନେ ଅଧେ ସହରରେ ରହିବା ପାଇଁ ବିନା ଭଡ଼ାରେ ଘରଟିଏ ଲାଭ କରିବାର ଲୋଭ ହିଁ ବାପାଙ୍କୁ ଡାକ୍ତର ଆଡ଼େ ଟାଣୁଥିଲା ।

ବାପାଙ୍କୁ ସମୁଧି ଡାକି ଡାକ୍ତରବାବୁ କିଛି ମହଙ୍ଗା ବଜାର କରୁନଥିଲେ । ତାଙ୍କର ତିନୋଟି ଝିଅ; ଦର୍ଶକଙ୍କ ଦୃଷ୍ଟିରେ (ମୁଁ ଦ୍ରଷ୍ଟା ନୁହେଁ ଆଜି ଯାଏଁ) ସମସ୍ତେ ସମପରିମାଣରେ ଅସୁନ୍ଦରୀ । ସମସ୍କନ୍ଧ ପାତ୍ର କିମ୍ବା ସମସ୍କନ୍ଧ ସମୁଧି ମିଳି ପାରନ୍ତି (ଯୌତୁକ ଲୋଭରେ) ମାତ୍ର ଉଭୟ ସମସ୍କନ୍ଧ ସମୁଧି ଓ ପାତ୍ର ମିଳିବା ମୁସ୍କିଲ । ମୋର ଅଧ୍ୟାପକ ଚାକିରୀ; ମନ୍ଦ କଣ? ଗରିବ ବାପାମାନଙ୍କର ଉଚ୍ଚ ଶିକ୍ଷିତ ପୁତ୍ରଗଣ ଏତେ ବେଳକୁ କାମରେ ଆସନ୍ତି । ତା'ଛଡ଼ା ଏକ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ଆମ ଗାଁ ଦେଇ ଗସ୍ତ ବେଳେ ଗୋଟାଏ ଚାଷୀ ପରିବାରରୁ ପ୍ରାପ୍ୟ ଯୋଗ୍ୟ ଗୁଡ଼, ଉଖୁଡ଼ା, ପନି ପରିବା ଆଦି ବିଭିନ୍ନ କୃଷିଜାତ ଦ୍ରବ୍ୟ ତାଙ୍କୁ ବିନା ପାଉଣାରେ ଆମ ଘରୁ ମିଳୁଥିଲା ।

ପରଦିନ ଝିଅ ଦେଖିବାକୁ ମୁଁ ଡାକ୍ତର ଘରକୁ ବାହାରିଲି । ବିନା ପୂର୍ବ ସୂଚନା ଓ ପ୍ରସ୍ତୁତିରେ କେବଳ କକା ମୋ ସହ ବାହାରି ପାରିଥାନ୍ତେ । ମାତ୍ର 'ମଛରା' ଖୁଡ଼ି ଯୋଗୁଁ ତାଙ୍କ ସହ ସାମାଜିକ ସମ୍ପର୍କ ଛିନ୍ନ । ମତେ ଏକା ଯିବାକୁ ପଡ଼ିଲା । ବାପାଙ୍କ ସହ ପୂର୍ବ ପରିଚିତି, ମୋର ଚାକିରୀ ଏବଂ ଝିଅ ଗୁଡ଼ିକର କଦର୍ଯ୍ୟରୂପ (ବୋଧହୁଏ ମୁଁ ବଡ଼ ଝିଅକୁ ଦେଖିବା ପାଇଁ ଯାଉଥିଲି) ଯୋଗୁଁ ମୁଁ ବିଚଳିତ ନଥିଲି । ଜାଣି, ଆମ ଓ ତାଙ୍କ ପରିବାର ମଝିରେ କେବଳ 'ହଁ' କରିବାକୁ ମୁଁ ବାକୀ ଅଛି । ଅନ୍ୟ ସମସ୍ତେ ହଁ କରି ସାରିଛନ୍ତି । ମୋର ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକାଟିକୁ ଅନୁମାନ କଲାବେଳେ, ଚଣ୍ଡାମୁଣ୍ଡ, ମେଲା ପାଟି,

ଏବଂ ବ୍ରଣପୂର୍ଣ୍ଣ ମୁହଁ କଥା କ୍ୱଚିତ ମନେ ପଡୁଥିଲା । ଯଥୋଚିତ ଅତିଥି ସତ୍କାରରେ ମୋର ପ୍ରତିକ୍ରିୟାକୁ ନେଇ ମନ ଭିତରେ କେବଳ ପ୍ରସ୍ତୁତି ଚାଲିଥାଏ । ଖାଦ୍ୟ ଦ୍ରବ୍ୟ ଭିତରେ ମହଙ୍ଗା ଜିନିଷ ତ' ଆଦୌ ଛୁଇଁବି ନାହିଁ । ଯଥା- ପେଡ଼ା ଓ ଆଳୁଚପ ଭିତରେ କେବଳ ଆଳୁଚପ ଖାଇବି । ସାଧାରଣତଃ ଅତିଥିମାନେ ମୁଢ଼ି ଓ ପକୋଡ଼ି ଭିତରେ କେବଳ ପକୋଡ଼ି ଖାଇ ନିଜର ଓଜନ ହରାନ୍ତି । ବହୁପୂର୍ବରୁ ଆବିଷ୍କୃତ ଏହି ତତ୍ତ୍ୱଟି ଯାହାହେଉ ଆଜି ବ୍ୟବହାରରେ ଆସିବ । ଖାଇବା ଟେବୁଲରେ ଛାତ୍ର ଜୀବନର ଦୁଇ ଚାରୋଟି ଅନୁଭୂତି କହିବି, ଯାହା ଶୁଣି ସମସ୍ତେ ହସିବେ । ବିଶେଷ କରି ତିନି ଭଉଣୀଯାକ ଭିତର ଘରେ ହସି ହସି ଗଡ଼ିଯିବେ । ଅନୁଭୂତି ଗୁଡ଼ିକ ଖାଇବା ମାମଲାରେ ମୋର ସ୍ୱାଦଠାରୁ ପରିମାଣର ଅଧିକ ଆବଶ୍ୟକତାକୁ ଇଙ୍ଗିତ କରିବା କଥା । ଖୋଲା ଖୋଲି କଥା ଗୁଡ଼ିକ ଗମ୍ଭୀର ବାତାବରଣକୁ ସହଜ କରିବ; ରସହୀନ ଡାକ୍ତର ପରିବାରରେ ରୂପବିହୀନା କନ୍ୟାଗଣଙ୍କୁ ଏକ ନୂଆ ସ୍ୱାଦ ଚଖେଇବ । ଅନ୍ୟପକ୍ଷରେ ମୋର ଖୋଲା ସ୍ୱଭାବର ପରିଚୟ ଦେବା ସାଙ୍ଗକୁ ଚନ୍ଦାମୁଣ୍ଡ, ଆଦି ଯୋଗୁଁ ହରାଉଥିବା ବ୍ୟକ୍ତିତ୍ୱକୁ ଅଳ୍ପ ସମୟ ପରେ ଏହା ଫେରାଇ ଆଣିବ । ହଁ, ଝିଅମାନେ ଯଦି ହସିବାକୁ ଚାହାନ୍ତି, ମୁଁ ଆହୁରି କେତୋଟି ଅନୁଭୂତି ବଖାଣିବାକୁ ପ୍ରସ୍ତୁତ । ଅବଶ୍ୟ ସବୁଗୁଡ଼ିକ ଶୃଙ୍ଗାର ରସଶୂନ୍ୟ । ବୟସର ପ୍ରଭାବରେ ସେମାନେ ଯଦି ଖୋଜି ଖୋଜି ସେଥିରେ ଶୃଙ୍ଗାର ରସ ଖୋଜନ୍ତି, ମୋର ବା କି ଦୋଷ? ଅସଲ କଥା ହେଲା ଦୁଇ ତିନି ଘଣ୍ଟାର ରହଣି କେବେ ବିରକ୍ତିକର ନ ହେଉ । ପାତ୍ରୀ ପସନ୍ଦ-ନା ପସନ୍ଦ ହେଲା ପର କଥା, ଅତି କମରେ ପାତ୍ରୀକୁ ମଣିଷ ଭଳି ତ ଦେଖିବା କଥା । ବର୍ଷ ବର୍ଷ ଧରି ଭଉଣୀକୁ ଯେତେ ଲୋକ ଦେଖିବା ପାଇଁ ଆସିଲେ, କେହି ଜଣେ ଏତିକି ବିଚାରବନ୍ତ ହୋଇଥାନ୍ତେ (ଅବଶ୍ୟ ଶେଷ ଜଣକୁ ବାଦ ଦେଇ) ? ନିଜ ଘରେ ଭଲ କରି ମୁଠେ ଖାଇବାକୁ ମିଳୁ ନଥିବ, ଝିଅ ଦେଖି ନ ଆସୁଣୁ ଭି·ଆଇ·ପି· ସମସ୍ତେ । ମୁଁ ବି ଯଦି ସେମାନଙ୍କ ପରି ବ୍ୟବହାର କରେ, ମୋର ଉଚ୍ଚଶିକ୍ଷା ଓ ସେମାନଙ୍କ କୁଶିକ୍ଷା ଭିତରେ ଫରକ କଣ? ଡାକ୍ତର ଘରେ ରିକ୍ସାରୁ ଓହ୍ଲାଇ ବିନା ପ୍ରତିବାଦରେ ରିକ୍ସାବାଲାର କହିବା ମତେ ପଇସା କାଢ଼ି ଦେଲାବେଳେ ମୁଁ ନିଜକୁ ନିଜେ ପଚାରିଲି ।

କଲିଂ ବେଲରେ ହାତ ଦେବା ଆଗରୁ ଚନ୍ଦାମୁଣ୍ଡର ଅବଶିଷ୍ଟ ବାଳ କେତୋଟିକୁ ସାଉଁଟିଲି ଥରେ । ଯୋତାର ଫିତା, ପେଣ୍ଟର ଚେନ, କୁରୁତାର ବଟନ ସବୁଆଡ଼େ ନଜର ବୁଲିଗଲା । କଲିଂବେଲରେ ହାତ ନ ଦେଉଣୁ କବାଟ ଖୋଲିଲା । ସରକାରୀ ଡାକ୍ତରମାନେ ଘରୋଇ ଚିକିତ୍ସା ନିମନ୍ତେ ଘର ଖୋଲା କରିବା ଦିନୁ ରୋଗ ଓ ରୋଗୀ ଆବାହନ ସକାଶେ ଭାରି

ଆଗ୍ରହ ସବୁଠି । ହସ ହସ ମୁହଁରେ କବାଟ ଖୋଲିବା ପାଇଁ ସର୍ବଦା ଜଣେ ନିଯୁକ୍ତ ରହୁଛନ୍ତି । ଏଠି ଡାକ୍ତରାଣୀ ସେ ଦାୟିତ୍ୱରେ ଥିଲେ । ପଚାରିଲି, 'ଡାକ୍ତରବାବୁ ନାହାନ୍ତି?' 'ଆସିଯିବେ, ବସନ୍ତୁ' । ମତେ ରୋଗୀ ଭାବିଲେ ବୋଧହୁଏ । ବାଟଘରରୁ ସେ ଅନ୍ତର୍ଦ୍ଧାନ ହେବା ପୂର୍ବରୁ ମୁଁ ନିଜର ପରିଚୟ ଦେଲି । ସେ ଚିହ୍ନିଲେ, କିଛି କହିଲେ ନାହିଁ; ଭିତରକୁ ପଶିଗଲେ ଯେ ବାହାରିଲେ ନାହିଁ । ଯା'ପରେ ଡାକ୍ତରଙ୍କ ଆସିବା ଯାଏ ଅପେକ୍ଷା କରିବା ଏବଂ ସେ ଅବସରରେ ଔଷଧ କମ୍ପାନୀମାନଙ୍କଠାରୁ ପ୍ରାପ୍ତ କାନ୍ଥର ବିଭିନ୍ନ କେଲେଣ୍ଡର ନିରିକ୍ଷଣ କରିବା ବ୍ୟତୀତ ମୋର ଆଉ କିଛି କାମ ବାକୀ ନଥିଲା । କେଲେଣ୍ଡରରେ କେବଳ ସୁନ୍ଦରୀ ଝିଅ ଓ ସ୍ୱାସ୍ଥ୍ୟବାନ ଛୁଆର ଛବି । କମ୍ପାନୀର ଔଷଧ ଖାଇ କୁଆଡ଼େ ସେମାନଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ । 'ଡାକ୍ତର ଜଣକ ଏସବୁ ଔଧଷ ନିଜ କନ୍ୟା ରତ୍ନଙ୍କୁ ଦେଉନି କାହିଁକି?' ପ୍ରଶ୍ନଟି ନିଜକୁ ପଚାରିବା ଯାଏ ଅନ୍ତତଃ ମୋର ଆଶା ଥିଲା, ଡାକ୍ତର ବାବୁ ଆସିବେ; ଅତିଥି ସତ୍କାରରେ ତ୍ରୁଟୀ ପାଇଁ କ୍ଷମା ପ୍ରାର୍ଥନା କରିବେ; ଏବଂ ମୁଁ ପାତ୍ରୀ ଦେଖିବି । ମାତ୍ର ସେଭଳି କିଛି ହେଲା ନାହିଁ । ଅନେକ ସମୟ ଧରି ଭକୁଆ ପରି ଅପେକ୍ଷା କଲାପରେ ଘର ଭିତରକୁ ଲକ୍ଷ୍ୟ କରି 'ଆସୁଛି' କହି ମୁଁ ବିଦାୟ ନେଲି । ଆଉ ଏଭଳି ଭାବେ ମୋର ପ୍ରଥମ ପାତ୍ରୀ ଦେଖା ପାତ୍ରୀର ମା'କୁ ଦେଖି ଶେଷ ହେଲା ।

ଏ ଘଟଣା ପରେ ବାପା-ମା'ଙ୍କର ସାମାନ୍ୟ ମୋହ ଭଙ୍ଗ ହେଲା । ଡାକ୍ତର ଘରେ ହିନସ୍ତା ହେବା ଯାଏ, ସେମାନେ ମତେ କୌଣସି ମଧ୍ୟଯୁଗୀୟ ରାଜକୁମାର କିମ୍ବା ଆଧୁନିକ ଯୁଗୀୟ ଚିତ୍ର ତାରକାଠାରୁ କମ ସ୍ତରର ବୋଲି ବିଚାରୁ ନଥିଲେ । ବାକିରିଆ ପାତ୍ରକୁ ପୁଣି କିଏ ନାପସନ୍ଦ କରିବ ଏବଂ ତାର ସନ୍ତକ ସଦୃଶ ପାଣି ଗ୍ଲାସଟିଏ ସୁଦ୍ଧା ନ ଦେଇ ବିଦା କରିବ-ଏ ଖଳ ଆଶଙ୍କା ତାଙ୍କର କେବେ ନଥିଲା । ଏବେ ମନେ ପଡ଼ିଲା ଯେ, ପ୍ରଥମେ ପାତ୍ରୀ ପକ୍ଷ ମତିଗତି ବୁଝି ପୁଅକୁ ପଠେଇବାର ଥିଲା । ଏକଥା ମଧ୍ୟ ଆବିଷ୍କାର କଲି ଯେ ନିଜ ତରଫରୁ ଡାକ୍ତର କେବେ କନ୍ୟା ପାଇଁ ବିବାହ ପ୍ରସ୍ତାବ ଦେଇ ନାହାନ୍ତି । ଦେଶର ସମ୍ବିଧାନ ପରି ବହୁ ବର୍ଷ ପୁରୁଣା ସମୁଧି ଡାକର ଆଶାରେ ବାପା ମତେ ସେଠିକି ପଠେଇଛନ୍ତି । ନୋହିଲେ ଡାକ୍ତର କେବେ ଭାରତୀୟ ପ୍ରଶାସନିକ ସେବକଠାରୁ କମ ପାହ୍ୟାର ଜୋଇଁ କଥା ଚିନ୍ତା କରି ନାହାନ୍ତି । ରୂପବିହୀନା କନ୍ୟାଗଣ ଦେଶ ପ୍ରଶାସନର ସେବା ସାଙ୍ଗରେ ନିଜ ପତିକୁ ରୂପରେ ଚିତ୍ର ତାରକା ତୁଲ୍ୟ ହେବା ଚାହାନ୍ତି । ରୋଗ ଓ ରୋଗୀ ଆବାହନରେ ନିମଗ୍ନା ଡାକ୍ତରାଣୀଙ୍କ ପସନ୍ଦ ସମ୍ପର୍କରେ ଅବଶ୍ୟ କୌଣସି ତଥ୍ୟ ସଂଗୃହୀତ ହୋଇ ପାରିଲା ନାହିଁ । କିନ୍ତୁ ଡାକ୍ତର ଓ କନ୍ୟାଗଣଙ୍କ ପସନ୍ଦ ତୁଳନାରେ ତାଙ୍କ ପସନ୍ଦ ଯେ ନିହାତି ମାନ୍ଦା

ନୁହେଁ, ଏହା ଭଦ୍ରମହିଳାଙ୍କ ଠାଣି ଏବଂ ଅନ୍ୟପ୍ରତି ଦୁର୍ବ୍ୟବହାରରୁ ସ୍ପଷ୍ଟ ଜଣାପଡୁଥିଲା ।

ଡାକ୍ତର ଘରୁ ଚକମା ଖାଇ ଫେରିବା ପରେ ବାପା ଓ ମୋ ଭିତରେ ପୁଣି ଦୂରତା ବଢ଼ିଗଲା । ମୋର ରାଗ, ତାଙ୍କ ଯୋଗୁଁ ଚକମା ଖାଇଲି । ଅପମାନ ରାଷ୍ଟ୍ର ହେବାର ଆଶଙ୍କାକୁ ଖାତିର ନକରି ମୁଁ ବାରଣ୍ଡାରେ ହିଁ ଆସ୍ଥାନ ଜମାଇଲି ଏବଂ କୃଷ୍ଣ ପାଟିରେ ବିବାହ ସମ୍ବନ୍ଧୀୟ ମତ ପ୍ରଦାନ କଲି । ସେପଟେ ବାପା ଭିତର ଘରେ । ଆଣ୍ଟୁବଥାକୁ ନଜରଆଢାଳ କରି ମା ଯୋଗସୂତ୍ର ରକ୍ଷା ନିମିତ୍ତ ପୁଣି ବାରମ୍ବାର ବାରଣ୍ଡାରୁ ଭିତର ଘର ହେଲା । ତା ଦୂରବସ୍ଥା ଦେଖି ମନେହେଲା ଭଙ୍ଗାଘର ସଜଡ଼ା ବିବାହଠାରୁ ମଧ୍ୟ ଅଧିକ ଆବଶ୍ୟକ । ବାରଣ୍ଡା ଉପରେ ଏତେ ନିର୍ଭରଶୀଳତା ଆଦୌ ସ୍ପୃହଣୀୟ ନୁହେଁ । ଆଉ ଗୋଟାଏ କୋଠରୀ ଥିଲେ, ଗୋଟାକରେ ମା'ପାଟିକରି ବାପା ଓ ମୋ ଭିତରେ ଯୋଗସୂତ୍ର ରଖନ୍ତା । ଆଉ ଏବେ? ଭିତର ଘରୁ ବାରଣ୍ଡାକୁ ଲକ୍ଷ୍ୟ କରି କଥା କହିଲେ ଖୁଡ଼ି ଶୁଣି ଅନର୍ଥ ବାହାର କରିବେ, ବାରଣ୍ଡାରେ ବସି ଭିତର ଘରକୁ ଲକ୍ଷ୍ୟ କରି କହିଲେ ଗାଁ ସାରା ଶୁଣିବେ । ଘର ଓ ବାହାଘର ଦୁଇଟି ଭିନ୍ନ ସମସ୍ୟା ନୁହନ୍ତି, ବରଂ ଗୋଟାଏ ସମସ୍ୟାର ଦୁଇଟି ଅଂଶ— ମୁଁ ନିଶ୍ଚିତ ହେଲି ।

ସମୀକ୍ଷା ଦୃଷ୍ଟିରୁ ଅବଶ୍ୟ ବାପାଙ୍କ ମୋହ ସାଙ୍ଗରେ ପରିବାରର ନିର୍ଦ୍ଧନତା ଓ ମୋ ବୁଢ଼ା ଚେହେରା ମଧ୍ୟ ଅପମାନ ପାଇଁ ସମପରିମାଣରେ ଦାୟୀ । ମାତ୍ର ସମୀକ୍ଷକ ଯେତେବେଳେ ମୁଁ ନିଜେ, ମୋର ଭୁଲ ବା ଦେଖିବି କେମିତି? ତା ଛଡ଼ା ପରିବାରର ନିର୍ଦ୍ଧନତା ଅମାବାସ୍ୟାର ଅନ୍ଧକାର ଭଳି ଚିରନ୍ତନ ସତ୍ୟଟିଏ । ତାକୁ ଦୋଷ ଦେଇ ବା କି ଲାଭ? ଫଳରେ ଅପମାନର ସବୁ ଦୋଷ ବାପା ମୁଣ୍ଡରେ ଏକା ଲଦି ଦେଲି । 'ସମୂଧି ଡାକିଲେ କି ସତରେ କେହି ସମୂଧି ହେବେ? ତାହେଲେ ରାଷ୍ଟ୍ରନେତାଙ୍କ ଭାଷଣ ଶୁଣି ତ ରୋଜ ଲକ୍ଷ ଲକ୍ଷ ଲୋକ ଦେଶ ଗଠନ ନିମନ୍ତେ ସ୍ୱାର୍ଥତ୍ୟାଗ କରନ୍ତେ । ମାସେ ଦୁଇମାସେ ପରେ ଖୋଦ ରାଷ୍ଟ୍ରନେତାଙ୍କୁ ଛାଡ଼ି ସ୍ୱାର୍ଥତ୍ୟାଗ ପାଇଁ ଅନ୍ୟ କେହି ବାକୀ ନଥାନ୍ତେ !' ମୋର ତୁଳନାତ୍ମକ ବିଚାର ଶୁଣି ବାପାଙ୍କ ଜ୍ଞାନୋଦୟ ହେଲା ନା କ'ଣ, ଏଣିକି ଆଗତୁରା ପ୍ରସ୍ତାବ ବାଢ଼ିବାକୁ ସେ ଆଗଭର ହେଲେ ନାହିଁ । ବରଂ ଅଧିକ ସମୟ ଚୁପ ରହିଲେ । ତାଙ୍କ ମତିଗତି ଦେଖି ଏଥର ବାହାଘର ହେବାର ଆଶା ମଉଳି ଯାଉଥାଏ । ଚାକର ଟୋକା ରଖି ଅତିକମରେ ଖାଇବା ସମସ୍ୟାର ସମାଧାନ କରିବାକୁ ହେବ । ଏଆଡ଼େ କେମିତି କେଜାଣି, ସମସ୍ତ ସତର୍କତା ସତ୍ତ୍ୱେ ପାତ୍ରୀ ଘର ମତେ ପ୍ରତ୍ୟାଖ୍ୟାନ କରିବା ବିଷୟକ 'ଉଡ଼ା' ଖବର ଗାଁରେ ଚେର ଧରିଲାଣି । ଯାହାକୁ ଭେଟ, ନେଇ ଆଣି ଡାକ୍ତର ଘର କଥା ପଚାରୁଛନ୍ତି ।

ଜାଣି, ଗାଁ ସାରା ରୋଗୀ ବାପିଗଲେଣି । ଛୁଟୀ ଶେଷ ହେବା ପୂର୍ବରୁ ଗାଁ ଛାଡ଼ି ଚାଲିଗଲେ ଜଷ୍ଟା ।

ଦୁର୍ଯୋଗର ଅମା ଅନ୍ଧାର ଘୋଟି ଆସୁଥିବା ବେଳେ ଜଣେ ମଧ୍ୟସ୍ଥି ଆସି ପହଞ୍ଚିଲା । ହାତରେ ତାର ଦୂର ସହରର କୌଣସି ଏକ ପାତ୍ରୀର ପ୍ରସ୍ତାବ । ପାତ୍ରୀଟି କୁଆଡ଼େ ସର୍ବଗୁଣ ସମ୍ପନ୍ନା । ମୋ ରୁଚି ସହ ତା ରୁଚି କ୍ଷୀରନୀର ପରି ମିଶିଯିବ । 'ମୋର ରୁଚି ସବୁ କ'ଣ?' ପଚାରିବାକୁ ଇଚ୍ଛା ହେଲା, ମାତ୍ର କାଳେ ଲୋକଟି ଡରିଯିବ ଆଶଙ୍କା କରି ପୁଣି ମନ କଥା ମନରେ ରଖିଲି । ପାତ୍ରୀର ରୂପ ବର୍ଣ୍ଣନା କରିବାକୁ ଯାଇ କହୁଛି, ଦେଖିବାକୁ ଆମେ ଦୁହେଁ କୁଆଡ଼େ ଭାଇ ଭଉଣୀ ପରି ଦେଖାଯିବୁ । ଅର୍ଥାତ୍ ଝିଅର ମୋ ଭଉଣୀ ପରି ରୂପ ! ସେଥିପାଇଁ ପୋଖତ ମଧ୍ୟସ୍ଥିର ଆବଶ୍ୟକତା ହେଉଛି । ଶୁଣି ଖୁସି ଲାଗିଲା; ଅସୁନ୍ଦରୀ ଝିଅ ତ ନାକଚ କରୁଛନ୍ତି, ସୁନ୍ଦରୀ ଝିଅର ପ୍ରସ୍ତାବ ଆସିଲେ ମୁଁ କି ଆଉ ଘରୁ ପାଦ କାଢ଼େ? ଲୋକଟି କିନ୍ତୁ ମୋତେ ଖୁସି ଓ ମୋ ରୂପର ପ୍ରଶଂସା କରିବା ସଦିଚ୍ଛାରେ, ମୋ ଭଉଣୀକୁ ଦେଖି ନ ଥିବା ସତ୍ତ୍ୱେ, ପ୍ରସ୍ତାବିତ ପାତ୍ରୀକୁ ତା ସହ ତୁଳନା କରିଥିଲା । ଭାତ ଖାଇଲା ବେଳେ ମା'କୁ ମୁଁ ଆଚାର ମାଗିବାର ଶୁଣି, ମଧ୍ୟସ୍ଥି କହିଲା, 'ଝିଅଟି କି ବଢ଼ିଆ ଆଚାର ତିଆରେ !' ଶୋଇବା ପୂର୍ବରୁ ତକିଆକୁ ଲକ୍ଷ୍ୟ କରି କହିଲା, 'ଝିଅଟି ତକିଆ ଗୁଡ଼ିକରେ ସୁନ୍ଦର ଫୁଲ ଆଙ୍କିପାରେ । 'ଗୁଡନାଇଟ', 'ୱେଲକମ', ସବୁ ଲେଖି ଜାଣେ ।' ରାନ୍ଧିବାରେ ବି ସେ 'ଏକ୍ସପୋଟ' । ଅସଲରେ 'ଗୁଡନାଇଟ' ଓ 'ୱେଲକମ' ଶବ୍ଦ ଦୁଇଟିକୁ ବାଦ ଦେଲେ, ନିଜ ବକ୍ତବ୍ୟରେ ବହୁଳ ବ୍ୟବହୃତ ସମସ୍ତ ଇଂରାଜୀ ଶବ୍ଦର ଉଚ୍ଚାରଣ ଓ ପ୍ରୟୋଗ କିମ୍ବା ଉଭୟ ଉଚ୍ଚାରଣ ଓ ପ୍ରୟୋଗର ଭୁଲ ତର୍ଜମା କରୁଥିଲା ସେ ଯଥା-'ଡିଫେରେନ୍‌ସ'କୁ 'ଡିଫିକଲ୍‌ଟି' ଏବଂ 'ଡେଭେଲପମେଣ୍ଟ'କୁ 'ଡିପାଟମେଣ୍ଟ' । ପୂର୍ବ ଅଭ୍ୟାସମତେ ନମ୍ରତା ପ୍ରଦର୍ଶନ ପୂର୍ବକ ମୁଁ ପଚାରିଲି, 'ମତେ କିଏ ପସନ୍ଦ କରିବ?' ଉତ୍ତର ମିଳିଲା, 'ତୁମକୁ ପସନ୍ଦ କରିବେ ନାହିଁ? ଉଚ୍ଚ ଶିକ୍ଷିତ, ଚାକିରୀ କରୁଛ ।' ପୁଣିଥରେ ମୋର ରୂପର ପ୍ରଶଂସା କରି ସେ କହିଲା, 'ତା ଛଡ଼ା ତୁମେ ଫିଜିକାଲି ବି ହାଣ୍ଡିକ୍ୟାପ୍‌ଡ ତ !' ଇଂରାଜୀ ଶବ୍ଦଟିର ସୁନ୍ଦର ପ୍ରୟୋଗ କରି ପାରିବା ଜନିତ ଆତ୍ମତୁଷ୍ଟି ତା ମୁଖମଣ୍ଡଳରୁ ବିଚ୍ଛେଇ ହୋଇ ପଡୁଥାଏ ।

ହାତରେ ସମୟ ଥିଲେ ମୁଁ ତା କଥାର ସତ୍ୟାସତ୍ୟ ପରୀକ୍ଷା କରିଥାନ୍ତି । ଏବେ ତ ସମୟ ଅଭାବ । ଦୁଇମାସ ଛୁଟୀରୁ ପନ୍ଦର ଦିନ ପ୍ରାୟ ଗଲାଣି । ସତ୍ୟାସତ୍ୟ ପରୀକ୍ଷାରେ ଯଦି ଆଉ ପନ୍ଦର ଦିନ ଯାଏ, ତେଣିକି ଏ ବର୍ଷ ବାହା ନୋହିବ । ଆସନ୍ତା ବର୍ଷକୁ ମୁଁ ଥିବି, ମଧ୍ୟସ୍ଥି ଥିବ, ନଥିବ ବୋଇଲେ ଏକା ମୁଣ୍ଡର ବାଳ ! ଜଣାପଡୁଛି ପ୍ରସ୍ତାବିତ ପାତ୍ରୀଜଣକ ବାହା ହେବା ପାଇଁ ବ୍ୟାକୁଳ । ଡାକ୍ତର କନ୍ୟା ପରି ଅସୁନ୍ଦରୀ ହେଲେ ସୁଦ୍ଧା, ବୟସରେ

ଯଦି ମୋଠାରୁ ବଡ଼ ନୁହେଁ, ପ୍ରସ୍ତାବଟିକୁ ବିଚାର କରାଯାଇ ପାରେ । ଚିତ୍ରତାରକା ତୁଲ୍ୟ ପ୍ରଶାସନିକ ପତି ଅପେକ୍ଷାରେ ଥିବା ପାତ୍ରୀ ଘରେ ହିନସ୍ତା ହେବା ତୁଳନାରେ ବିବାହ-ବ୍ୟାକୁଳା ପାତ୍ରୀ ଘରେ ସମ୍ମାନ ପାଇବା ଶତଗୁଣେ ଭଲ । ମନରେ ଏତକ ସ୍ଥିର କଲାପରେ ମଧ୍ୟସ୍ଥିର କୌଣସି ଉକ୍ତି ମତେ ଅତିରଂଜନ ଅବା ବିରକ୍ତିକର ଲାଗିଲା ନାହିଁ । ବାପା-ମା ତ ତାକୁ ପୂରା ସତ ମଣୁଥାନ୍ତି । ଏମତି କି ଯେତେବେଳେ ଲୋକଟି କହିଲା, 'ପ୍ରତିଦିନ ପାତ୍ରୀକୁ ଦଶ/ବାର ଘରୁ ଦେଖିବାକୁ ଆସୁଛନ୍ତି' । ମୋ ମୁହଁରୁ ବାହାରି ପଡ଼ିଲା, 'ତାହେଲେ ସେ ପାତ୍ରୀ ନା ଶିଳ୍ପ ପ୍ରଦର୍ଶନୀ ?' ବାପା କିନ୍ତୁ ବିସ୍ମୟସୂଚକ 'ଆଚ୍ଛା' କହି ସମ୍ମତି ଜଣାଇଲେ ।

ମିଛର ବି ଏକ ସୀମା ଅଛି । ସୀମା ଡେଇଁଲେ ମିଛୁଆ ସତ୍ୟବାଦୀ ତ ହୁଏନି, କିନ୍ତୁ ମିଛୁଆ ହୋଇ ବି ଆଉ ରହେ ନାହିଁ । ମଧ୍ୟସ୍ଥିଟି ଏହି ଧରଣର ପ୍ରାଣୀ । ଭଲ କରି ମୁଠିଏ ଖାଇବ; ବିବାହ ଠିକ ହେଲେ ଧୋତି ଗାମୁଛା ହଳେ ନେବ; ଯୋଡ଼ି ଯଦି ସୁଖରେ ଘର କରନ୍ତି, କାଳ କାଳ ଧରି ତାଙ୍କ ବିବାହର ମଧ୍ୟସ୍ଥି ନାଁରେ ସାମାନ୍ୟ ଅମୂର୍ତ୍ତ ଆତ୍ମଗର୍ବ ବି ଲାଭ କରିବାର ହୁଏତ ତାର ଆଶା ଅଛି । ଏତକ ଫାଏଦା ପାଇଁ କଣ କମ ମିଛ କହୁଛି ସେ ? ଘର ବିଗିଡ଼ିଲେ ତାକୁ ଗାଳି ପଡ଼ିବାର ବି ଭୟ ଅଛି । ପୁଣି ପୁଅ-ନାତି କେବେ ଯଦି ତାର ବଡ଼ଲୋକ ହୁଅନ୍ତି, ମଧ୍ୟସ୍ଥି ବେଉଷା କରି ପେଟ ପୋଷୁଥିବା ଲୋକଟିକୁ ନିଜ ପୂର୍ବଜ ବୋଲି ସ୍ୱୀକାର ମଧ୍ୟ କରି ନ ପାରନ୍ତି । ଆହା !

ମଧ୍ୟସ୍ଥି ଉପରେ ଦୟାଭାବ ପ୍ରକଟ ହେବା ଉତ୍ତାରୁ ପ୍ରସ୍ତାବିତ ପାତ୍ରୀ ପାଇଁ ସୁଦ୍ଧା ମୋ ମନରେ ସହାନୁଭୂତିର ଉଦ୍ରେକ ହେଲା । ସୁନ୍ଦର-ଅସୁନ୍ଦର ସୃଷ୍ଟିକର୍ତ୍ତାର କରାମତି । ସୃଷ୍ଟି ଅସୁନ୍ଦରୀ ହେଲେ ସ୍ରଷ୍ଟାକୁ ଯାଇ ଫେରାଦ ହୁଅ । ସୃଷ୍ଟିର ସେଥିରେ କି ଦୋଷ ? ଆହା, ସମାଜ ଆଖିରେ ଝିଅଟି କେତେ ହିନସ୍ତା ହେଉ ନଥିବ ! ମନୋବଳ ଦୃଢ଼ ନ ଥିଲେ କେବେ ଆତ୍ମହତ୍ୟା ବି କରିପାରେ । ସେତେବେଳେ ବଡ଼ ପାଟିରେ ସମାଜ 'ଆହା.... ହା... ଚୁ...ଚୁ' କରିବ । କି ଲାଭ ସେଥିରେ ? ସମାଜ ଠିକ ଭାବେ ନିଜ କର୍ତ୍ତବ୍ୟ କରୁ, ଆତ୍ମହତ୍ୟାର ଆବଶ୍ୟକତା ହେବ କାହିଁକି ? ଏତେ ପରୋପକାରୀ 'ସମାଜସେବୀ' ଯୁବକ ସବୁ ଭୁଆଁ ବୁଲୁଛନ୍ତି; କେହି ବାହାରନ୍ତୁ; ଜଣେ ରକ୍ଷା ପାଉ । ପ୍ରତିଦିନ ସାତ ଆଠ ଜଣ ଯୁବକ (ମଧ୍ୟସ୍ଥିର ଉକ୍ତି ଅନୁଯାୟୀ ଦଶବାର ନୋହିଲେ ବି !) ବଜାରର ଆଳୁ-ବାଇଗଣ ଭଳି ଝିଅଟିକୁ ଦେଖିଲେ କି ତାର ଉଦ୍ଧାର ହେବ ? ଅନ୍ତତଃ ତାକୁ ମଣିଷ ପରି ଦେଖ । ସ୍ୱତଃ ପ୍ରବୃତ୍ତଭାବରେ ଝିଅ ପାଇଁ ଉଦ୍ଧାରକର୍ତ୍ତାର ଭୂମିକା ମୁଣ୍ଡେଇ ନେଲାବେଳେ ଡାକ୍ତର ଘର ଅନୁଭୂତି ମୁଁ ଭୁଲିବା ଉପରେ । ପାତ୍ର ବଜାରରେ ମୋର ଏଯାଏଁ କାଟତି ଥିବାର ଅନୁମାନ କଲାବେଳେ ଆତ୍ମବିଶ୍ୱାସ

ପୁଣି ଥରେ ମନରେ ଗଜା ଦେଲା ।

ମଧ୍ୟସ୍ଥି ଓ ପ୍ରସ୍ତାବିତ ପାତ୍ରୀ ସମ୍ପର୍କରେ ମୁଁ କୌଣସି କଟୁ ମତ ପରିବେଷଣ କଲି ନାହିଁ । ତେଣୁ ବାପା-ମା ଧରିନେଲେ ପାତ୍ରୀ ଦେଖିବାରେ ମୋର ଆପତ୍ତି ନାହିଁ । ପୂର୍ବ ଅନୁଭୂତି ଯୋଗୁଁ ଏକା ଯିବାର ପ୍ରଶ୍ନ ନଥିଲା । ଅତି ଆଗ୍ରହରେ ମଧ୍ୟସ୍ଥି ମୋ ସହ ଯିବାକୁ ରାଜି ହେଲା । ପାତ୍ରୀର ବାସସ୍ଥଳୀ ସହର ଏବଂ ଆମ ଗାଁ ମଝିରେ ତା ଘର । ସେଠୁ ତାକୁ ସାଙ୍ଗରେ ନେଲେ ଅର୍ଥାତ୍ ଗାଡ଼ିଭଡ଼ା ଦେଲେ ହେଲା ।

ତିନିଦିନ ପରେ ଶୁଭ ମୁହୂର୍ତ୍ତ ଦେଖି ମୁଁ ବାହାରିଲି । ମଧ୍ୟସ୍ଥି ଘରେ ପହଞ୍ଚି ଶୁଣିଲି ସେ ଡାକ୍ତରଖାନା ଯାଇଛି । ଆମ ଘରେ ଆକଣ୍ଠ ଭୋଜନର କୁଫଳ ! କେବେ ଫେରିବ ଜଣା ନାହିଁ । ତା' ସ୍ତ୍ରୀ ବ୍ୟବହାରରେ ମଧ୍ୟସ୍ଥିଠାରୁ ସମ୍ପୂର୍ଣ୍ଣ ଅଲଗା । ବଡ଼ଲୋକ ହେବାର ଯଥେଷ୍ଟ ଆଗରୁ ହୁଏତ ପରିବାର ଲୋକଟିକୁ ଅସ୍ୱୀକାର କଲାଣି । ତେଣୁ ଗ୍ରାହକମାନଙ୍କ ପ୍ରତି ମଧ୍ୟସ୍ତ୍ରୀଲୋକଟିର ଉଦାସୀନତା । ଜବାବ ଦେବା ବ୍ୟତୀତ ତା ମୁହଁରୁ ଅଧିକ କିଛି ବାହାରୁ ନାହିଁ । ଘରେ ବସିବା ପାଇଁ ପୁଛା ଆମନ୍ତ୍ରଣ ନାହିଁ । ବୟସରେ ମୋର ଦେଢ଼ଗୁଣା ହେବ, କିନ୍ତୁ ଏମିତି ବ୍ୟବହାର କରୁଛି, ଜାଣି, ସେ ଷୋଡ଼ଶୀ ନାରୀ ଓ ମୁଁ ସିନେମାହଲ ଆଗରେ ପଇଁତରା ଏବଂ ସିଟି ମାରୁଥିବା ନବ ଯୁବକଟିଏ । ବିରକ୍ତ ହୋଇ ମୁଁ ମୋ ରାସ୍ତା ଧରିଲି ।

କିଛି ସମୟ ଅପେକ୍ଷା କଲେ ହୁଏତ ଲୋକଟି ସହ ଦେଖା ହୋଇଯିବ । କିନ୍ତୁ ଗାଁରେ ଅପେକ୍ଷା କରିବି କେଉଁଠି ? ଗାଁ ସାରା ଲୋକ ଦାଣ୍ଡରେ ଛିଡ଼ା ହୋଇ ମୋତେ ଦେଖୁଛନ୍ତି । ଯେମିତି ଲଂଝାତାରାଟିଏ ମୁଁ, ଖସି ଆସିଛି କେଉଁଠୁ । ଶେଷରେ ପୁଣି ବସ ଧରିବାକୁ ରାସ୍ତାରେ ପହଞ୍ଚିଲି । ଯିବି କି ଫେରିଯିବି ? ହାତରୁ ବୟସ ପରି ଛୁଟୀ ଖସି ଖସି ଯାଉଛି । ସେଆଡ଼େ ଝିଅଟି ବିବାହ-ବ୍ୟାକୁଳା । ପାତ୍ରୀ ଘରୁ ଦାବୀ ମତେ ପାଉଣା ପାଇଲାନି ବୋଲି ହୁଏତ ଲୋକଟିର ଅସହଯୋଗ । ଘରକୁ ଫେରି ଆସିବା ପାଇଁ ଯେ କିଛି ଯୁକ୍ତି ପେଶ କରିନାହିଁ – ଏକଥା ନୁହେଁ । ମାତ୍ର ବିଶ୍ୱାସଘାତି ମଧ୍ୟସ୍ଥି ଯୋଗୁ ପ୍ରସ୍ତାବଟି ହାତଛଡ଼ା ହେବାର ଭୟ ଓ ଆତ୍ମଘାତୀ ପାତ୍ରୀକୁ 'ସମାଜ' କବଳରୁ ଉଦ୍ଧାର କରିବାର ଅଭିପ୍ସା ମତେ ସହରକୁ ହିଁ ଟାଣି ନେଲା ।

ପାତ୍ରୀ ଘରେ ପହଞ୍ଚି ଦେଖିଲି, କବାଟ ଖୋଲା ଅଛି (ଡାକ୍ତର ଘରଠୁ ଏଠି ସ୍ଥିତି ଅଲଗା); କେହି ଦେଖାଯାଉ ନାହାନ୍ତି । କଲିଂବେଲର ଅଭାବରେ ଖୋଲା କବାଟରେ ଠକ୍ ଠକ୍ କରିବା କଥା । ମାତ୍ର ଆଙ୍ଗୁଠିରେ ମୁଦି ନାହିଁ ଯଦି କାଠ କବାଟଟି ପିଟି ପିଟି ହାତ ବଥା ହେବ ପଛେ, କେହି ଶୁଣିବେନି । ଭିତରେ ଯଦି ଟି.ଭି., ଟେପରେକର୍ଡର ଗୁଞ୍ଜରଣ –

ଆଉ କହିବା କଥା ନୁହେଁ । କବାଟର ଠକ୍ ଠକ୍ ସଂଗୀତର ତାଳ ସୃଷ୍ଟି କରିବ । ଭାଗ୍ୟକୁ ଭିତରୁ ଯାନ୍ତ୍ରିକ କିମ୍ବା ମୌଖିକ ଗୁଞ୍ଜରଣ ଆସୁ ନଥିଲା । ବିବାହ-ବ୍ୟାକୁଳା ପୌଢ଼ା ପାତ୍ରୀଟି ଅତି କମରେ ଘୁଁ ଘୁଁ କରି କାନ୍ଦୁଥିବା କଥା । ହେଲା କ'ଣ? ଦେଖିଲି ରାସ୍ତାରେ ଗୋଟାଏ ଛୋଟ ଝିଅ ଯାଉଛି । ତାକୁ କହିଲି, 'ଘରେ ଟିକିଏ ଖବର ଦେଲୁ ।' ଝିଅଟି ବିନା ପ୍ରତିକ୍ରିୟାରେ ନିଜ ଗନ୍ତବ୍ୟ ପଥରେ ଚାଲିଗଲା । ରାସ୍ତାରେ ବଡ଼ ଲୋକ କେହି ନ ବାହାରିଲେ ଖବର ଦେବା ମୁସ୍କିଲ । ଜନାକୀର୍ଣ୍ଣ ସହରରେ ପୁଣି ଏମିତି ଜନଶୂନ୍ୟ ଗଳିରାସ୍ତା ସବୁ ଅଛି - ତାହା ମୁଁ ଆଜି ଜାଣିଲି । ପୁଞ୍ଜିବାଦୀ ରାଷ୍ଟ୍ରରେ ସର୍ବହରା ବି ରହୁଥିବାଟା ସତ ତାହେଲେ ! ଅଳ୍ପ ସମୟପରେ ଲକ୍ଷ୍ୟ କଲି ଜଣେ ସ୍ତ୍ରୀ ଲୋକ ଝିଅ ପଶିଥିବା ଘରୁ ବାହାରି ଆସୁଛନ୍ତି । ସେ ଖୋଲା ଘରକୁ ହିଁ ଆସିଲେ । ସାନ ଝିଅଟି ତାଙ୍କୁ ଖବର ଦେଇଥିଲା ତାହେଲେ । ମୁଁ ତାଙ୍କୁ ପରିଚୟ ଦେଲି । ନିର୍ଲିପ୍ତ ଚାହାଣୀରେ ଘର ଭିତରକୁ ମତେ ଆମନ୍ତ୍ରଣ କରି ସେ ସୂଚନା ଦେଲେ, ଘରେ କେହି ନାହାନ୍ତି । ଅର୍ଥାତ୍ ପାତ୍ରୀ ଓ ପାତ୍ରୀର ବାପା ଅନୁପସ୍ଥିତ । ଭୀଷଣ କଠୋର ସୂଚନା । ଦୁଇ ମିନିଟ ପରେ ପାଣି ଗ୍ଲାସଟିଏ ଧରି ଭଦ୍ର ମହିଳା ଆସିଲେ । ନିଶ୍ଚୟ ସେ ପାତ୍ରୀର ମା । ମୁଁ ଅନୁମାନ ଲଗେଇଲି । ମଧ୍ୟସ୍ଥିର ନାଁ, ବସରେ ଆସିବା ବେଳେ ଭିଡ଼ ଆଦି କଥା କହି ମୁଁ ମୌନତା ଭାଙ୍ଗୁଥାଏ । ଭଦ୍ରମହିଳାଙ୍କ କଥାବାର୍ତ୍ତାରୁ ଆଗ୍ରହ-ଅନାଗ୍ରହ ବାରିବା ମୁସ୍କିଲ । ଚା'କପ ଆସିବା ଯାଏ ମୁଁ କେବଳ ସମୟ କାଟୁଥାଏ । ତାଙ୍କର ଘରୁ ଏଠିକା ସ୍ଥିତି ଅଲଗା କରିବାରେ ମୋର ବି ତ କିଛି ଯୋଗଦାନ ରହିବା କଥା ! ଯେତେ ଡେରି ହେଉ ପଛେ ଚା'ପାଇଁ ଅପେକ୍ଷା ନ କଲେ ସ୍ଥିତି ପୁଣି ଅଲଗା ହେବ କେମିତି?

ଘରକୁ ଫେରି ବିଭିନ୍ନ ଦିଗରୁ ଘଟଣାଟିକୁ ଥରେ ଅନୁଧ୍ୟାନ କଲି । କନ୍ୟା ଏବଂ କନ୍ୟା ପିତାର ଅନୁପସ୍ଥିତିରେ ଯଦି ସତ୍ୟତା ଥାଏ, ପୁଣି ଥରେ ସେମାନେ ଖବର ଦେବେ । ସେ କ୍ଷେତ୍ରରେ ବିଶେଷ ନିରାଶ ହେବାର କୌଣସି କାରଣ ନାହିଁ । ଆଉ ଯଦି ଏଠି ବି ମୁଁ ନାପସନ୍ଦ ହେଲି, ତେବେ ଏ ଜନ୍ମରେ ବିବାହ ଅସମ୍ଭବ । ବିବାହ ଅସମ୍ଭବ ବୋଲି ଭାବିବା ପରେ, ଆଶା ସୂଚକ କେତେଗୁଡ଼ିଏ ନୀତିବାଣୀ ଧାଏଁ ଧାଏଁ ମନକୁ ପଶି ଆସିଲେ । ଭିଣେଇର ଭାଇ କହିବା ମତେ ବିବାହର ଅନ୍ୟ ନାମ କ'ଣ ଜଞ୍ଜାଳ ନୁହେଁ? ଏତକ ହୃଦୟଙ୍ଗମ କରିବା ପାଇଁ କ'ଣ ଅଭିଜ୍ଞତା ନିହାତି ଆବଶ୍ୟକ ? ଯାବତୀୟ ସାମାଜିକ ଜଟିଳତାରୁ ମୁକ୍ତି ନିମନ୍ତେ ନି-ର୍ବିବାହ ହିଁ ଏକମାତ୍ର ରାସ୍ତା । ବିବାହ ପରେ, ସ୍ତ୍ରୀ ସାଙ୍ଗରେ ମତେ ଦେଖି, ଖଳ ଲୋକ, 'ଦ୍ୱିତୀୟ ବିବାହ କି ?' ବୋଲି ନ ପଚାରିବେ ତାର କି ମାନେ ଅଛି ? ବିବାହ ପରେ ବି ଯଦି ଲୋକଙ୍କ ଭର୍ତ୍ସନାପୂର୍ଣ୍ଣ ପ୍ରଶ୍ନବାଚୀର ପରିମାଣ ଊଣା ନ ହୁଏ, ବରଂ ଭଲ ଅବିବାହିତ

ରହିବା । ଏକ ମହାନ ସଭ୍ୟତା ଗଢ଼ି ତୋଳିବାରେ ଅବିବାହିତ ମାନଙ୍କର କ'ଣ କମ ତ୍ୟାଗ ? ଏହି ଆତ୍ମାନ୍ୱେଷୀ ପ୍ରଶ୍ନ ମୋର ହତାଶାକୁ, ସାମୟିକ ଭାବେ ହେଉ ପଛେ, ତଳି ତଳାନ୍ତ କରିବାରେ ବେଶ ସହାୟକ ହେଲା ।

ମୁଁ ହତାଶାର ଉର୍ଦ୍ଧ୍ୱ ସ୍ତରକୁ ଯାଉଥିବା ବେଳେ ଶୁଣିବାକୁ ମିଳିଲା ଦ୍ୱିତୀୟ ଅଭିଜ୍ଞତାର ପ୍ରକୃତ କାରଣ । ଆମ ଘରୁ ଫେରି ତଦ୍ରୂପ ଉତ୍ସାହରେ କୁଆଡ଼େ ମଧ୍ୟସ୍ଥି ପାତ୍ରୀ ଘରେ ପହଞ୍ଚିଥିଲା । ସେଠି ପରିଚୟ ହେବା ମାତ୍ରକେ ପାତ୍ର ଅର୍ଥାତ୍ ମୁଁ ବିବାହ ପାଇଁ ବ୍ୟାକୁଳ ଥିବାର ପ୍ରକାଶ କଲା । ଜୀବନରେ ପାତ୍ରର ଏକମାତ୍ର ଅଭିଳାଷ – ଉକ୍ତ କନ୍ୟା ସହ ବିବାହ କରିବ । ମୋର ମନର ବ୍ୟଗ୍ରତା ଜଣାଇ ସେ କନ୍ୟା ପ୍ରାଣରେ ପ୍ରେମ ଓ ଦୟାଭାବ ସୃଷ୍ଟି କରିବ ବୋଲି ଆଶା କରିଥିଲା । କିନ୍ତୁ ଫଳ ହେଲା ଓଲଟା । ବିବାହ-ବ୍ୟାକୁଳା-କନ୍ୟା (କେଜାଣି? ଏବେ ତ ମଧ୍ୟସ୍ଥିର ପ୍ରତ୍ୟେକ ଶବ୍ଦକୁ ସଂନ୍ଦେହ କରିବାକୁ ହେବ ।) ସବୁଶୁଣି ନିଜକୁ ଅପସରା ଏବଂ ମତେ ଖଳନାୟକ ସହ ତୁଳନା କଲା ଏବଂ ସିନେମାରେ ଯେମିତି ହୁଏ, ରାଜକୁମାର ସ୍ୱୟଂବର ସଭାକୁ ନ ଆସିବା ଯାଏ ଅପେକ୍ଷା କରିବା ପାଇଁ ଜିଦ୍ କଲା । କଲେଜ ଜୀବନରେ ମୁଁ ଅନେକ ଝିଅର ଜୀବନ ବରବାଦ କରିଥିବା ବିଷୟକ ଉଡ଼ା ଖବରଟିଏ ପରିବାର ଏବଂ ମଧ୍ୟସ୍ଥି ଆଗରେ ପେଶ କରି ନିଜ ସ୍ଥିତିକୁ ସେ ସୁଦୃଢ଼ କଲା । ତାର ଭ୍ରମଧାରଣା ଦୂର କରିବାରେ ମଧ୍ୟସ୍ଥି ଭଳି ପୋଖତ ଲୋକ ଯେତେବେଳେ ଫେଲ ମାଇଲେ ବୁଢ଼ା-ବୁଢ଼ୀଙ୍କର ବା ଜୁ କେଉଁଠି ? ପରିଣାମ ସ୍ୱରୂପ ମୁଁ ଯେତେବେଳେ ତାଙ୍କ ଘର କବାଟରେ ଠକ୍ ଠକ୍ କରିବା ପାଇଁ ଆଙ୍ଗୁଠି ସଜାଡୁଥିଲି ପାତ୍ରୀର ଅନନ୍ୟୋପାୟ ପିତା ପଡ଼ୋଶୀ  ଘରେ ବସି ତାସ ଖେଳୁଥିଲେ ଏବଂ ପାତ୍ରୀ ବାନ୍ଧବୀ ଘରେ ବସି ସୌମ୍ୟ ରାଜକୁମାରର ପ୍ରତୀକ୍ଷା କରୁଥିଲା । ଠିକ୍ ସେହିଭଳି ମଧ୍ୟସ୍ଥି ଘର କବାଟ ମୁହଁରେ ମୋର ପହଞ୍ଚିବା ବେଳେ, 'ଭଦ୍ରଲୋକ' ମଧ୍ୟସ୍ଥତା ବାହାନାରେ ଅନ୍ୟ କେଉଁଠି ବସି ଭୁରି ଭୋଜନ କରୁଥିଲେ । ଶୁଣାଖବରଟି ସଂପୂର୍ଣ୍ଣ ନ ଥିଲା; ତେଣୁ ଆବିଷ୍କୃତ ତଥ୍ୟଗୁଡ଼ିକର ପରସ୍ପର ସହିତ ଭଲ ଭାବେ ମେଳ ଖାଉ ନ ଥିଲା । ତଥାପି ମୋର ଚିରକୁମାର ରହିବା ସଂକ୍ରାନ୍ତୀୟ ପୂର୍ବ ନିଷ୍ପତ୍ତିକୁ ଏହା ଅଧିକ ସୁଦୃଢ଼ କଲା ।

ଗାଁରେ ବାପାଙ୍କ ଜଣେ ଦୂର ସଂପର୍କୀୟ କକା ଥିଲେ । ଆମ ପରିବାରଠାରୁ ମଧ୍ୟ ତାଙ୍କ ନିର୍ଦ୍ଧନତା ବେଶି । ତେଣୁ ବହୁଦିନରୁ ବାପା ତାଙ୍କୁ ସଂବୋଧନ ବି ବନ୍ଦ କରି ସାରିଥିଲେ । ତାଙ୍କର ପ୍ରତ୍ୟେକଥର ଆମ ଘରକୁ ଆସିବାର ଉଦ୍ଦେଶ୍ୟ କପେ ଚା ବୋଲି ଧରିନେବା ପରେ ମୁଁ ଓ ଭଉଣୀ ମଧ୍ୟ ବୁଢ଼ାକୁ ଆଦର କରିବା ଶିଖି ନଥିଲୁ । ଏକମାତ୍ର ପୁତ୍ର ବାଳୁଙ୍ଗା

ହେଲାପରେ ଆଦର, ଅନାଦର, ଆଦି ଅମୂର୍ତ୍ତ ବାସନା ସବୁ ତ୍ୟାଗ କରି ବୁଢ଼ା ପ୍ରତ୍ୟେକ ସଂବନ୍ଧୀୟ ଘରେ ପୁଅ ନାଁରେ ଫେରାଦ ହେବା ଏବଂ ସେ ବାହାନାରେ କପେ ଚା (ଚା' ତା ପାଇଁ ଖାଦ୍ୟ ଓ ପାନୀୟର କାର୍ଯ୍ୟ କରେ ।) ପିଇବା - ଏକ ରୀତିମତ ଅଭ୍ୟାସରେ ପରିଣତ କରି ସାରିଥିଲା । ସେଦିନ ବି ବୁଢ଼ା ଆମ ଘରକୁ ଆସିଲା । ତା ଅନୁମାନିକ ଆସିବା ସମୟ ଆଗରୁ ଆସିଥିଲା, ତେଣୁ ତା ଆସିବା ବାପା-ମାଙ୍କୁ ଅଧିକ ବିରକ୍ତିକର ମନେ ହେଲା । ବିରକ୍ତ ହେବା ପାଇଁ ଅଧିକ ସୁଯୋଗ ନ ଦେଇ ସେ ପୁଅ ନାଁରେ ଫେରାଦ ହେବା ପରିବର୍ତ୍ତେ ଏକ ପାତ୍ରୀର ପ୍ରସ୍ତାବ ବାଢ଼ିଲା । ପାତ୍ରୀର ପିତା କୁଆଡ଼େ ତାର ଦୂର ସଂପର୍କୀୟ । ଧନୀ ହୋଇ ସହରରେ ଘର କରିବା ପୂର୍ବରୁ ଦୁହିଁଙ୍କ ଭିତରେ ଯା ଆସ ବି ଥିଲା । ଏବେ ନାହିଁ । ଶିକ୍ଷିତା କନ୍ୟା ପାଇଁ ପାତ୍ର ଯୋଗାଡ଼ିଲା ବେଳେ ଏବେ ସେ ବୁଢ଼ାର ଗୋଡ଼ ଧରୁଛି । ପୂର୍ବର ଅଭିଜ୍ଞତା, ଶଠ ମଧ୍ୟସ୍ଥିର ପ୍ରତାରଣା ଓ ଚିରକୁମାର ରହିବା ସଂକ୍ରାନ୍ତୀୟ ପୂର୍ବ ନିଷ୍ପତ୍ତି ଯୋଗୁଁ ମୁଁ ପ୍ରସ୍ତାବଟିରେ ବିଶେଷ ଆଗ୍ରହ ପ୍ରଦର୍ଶନ କଲି ନାହିଁ । ନିରାଶ ନ ହୋଇ ବୁଢ଼ା କହିଲା, 'ସବୁ କଥା ସେ ଜାଣେ ।' 'ସବୁ - ମାନେ କେତେ ଜାଣେ?' ସେ - ମାନେ କିଏ? ଭଗବାନ କି କନ୍ୟାର ବାପ? କେହି ନ ଜାଣିଲେ ବି ମୋର ସମସ୍ତ ଦୁଃଖ କାହାଣୀ ବୁଢ଼ା ଜାଣେ - ଏତକ ତା ଭାବରୁ ସ୍ପଷ୍ଟ ଜଣା ପଡୁଥାଏ । 'ଚିରକୁମାର' ସଂକ୍ରାନ୍ତୀୟ ନିଷ୍ପତ୍ତି ସମେତ ସବୁ ଜଣା ତାହେଲେ ଗାଁ ଲୋକଙ୍କୁ । ଅଜଗା ଘା'ଦେଖାଇବାକୁ ପଡ଼େନି, ନିଜେ ଖୋଳି ତାଡ଼ି ଦେଖି ପକାନ୍ତି ଲୋକ । ବୁଢ଼ା ମଧ୍ୟସ୍ଥି ଧରଣର ମିଛୁଆ ବି ହୋଇପାରେ ! ପରଖିବା ପାଇଁ ବାପା ପଚାରିଲେ, 'ପାତ୍ର ଯୋଗାଡ଼ ପାଇଁ କ'ଣ ଚିଠି ଲେଖିଥିଲେ ସେମାନେ?' ବୁଢ଼ା ଚିଠିଟିଏ ଦେଖାଇଲା । ମୋ ନାଁର ଉଲ୍ଲେଖ ଅଛି ସେଥିରେ । ମତେ ଏତେ ଖୁସି ଲାଗିଲା, ଜାଣି ପରୀକ୍ଷା ଫଳ-ସୂଚକରେ ମୋ ନାଁ ବାହାରିଛି । ଏଣିକି ଆମ ସମସ୍ତଙ୍କର ବୁଢ଼ା ପ୍ରତି ଆଦର ଓ ପ୍ରସ୍ତାବ ପ୍ରତି ବିଶ୍ୱାସ ଜାତ ହେଲା । ମୁଁ ପୁଣିଥରେ ପାତ୍ରୀ ଦେଖିବାକୁ ମନ ତିଆରିଲି । ଅପମାନର ଆଶଙ୍କା ଦୂର କରିବା ପାଇଁ ଗାଡ଼ିଭଡ଼ା ଦେଇ ବାପା 'କକାଙ୍କୁ' (ଏବେ ବୁଢ଼ା ଆଉ 'ବୁଢ଼ା' ନୁହେଁ) ମୋ ଆଗରୁ ପାତ୍ରୀ ଘରକୁ ପଠାଇଲେ । ତାଙ୍କ କାମ - ସେଠି ମୋ ମୁଣ୍ଡରେ 'କମ ବାଳ ଥିବା', ଶରୀରର 'ଉଚ୍ଚତା ବେଶି ନଥିବା' ଏବଂ ବୟସ୍କ ହୋଇ ନ ଥିବା ସତ୍ତ୍ୱେ 'ବୟସ୍କ ଜଣାପଡୁଥିବା' ସମ୍ବାଦ ଦେବା । (ମତେ ନଜରରେ ରଖି ବାପା ଯଦି ଶବ୍ଦକୋଷ ତିଆରନ୍ତେ କଟୁ ଶବ୍ଦ ବୋଧହୁଏ ଉଦ୍ଭାବନ ହୋଇସାରି ଥାନ୍ତେ ।) ତା ସତ୍ତ୍ୱେ ଯଦି ସେମାନେ 'ହଁ' କରନ୍ତି, ପୁଅ (ମୁଁ) ଦେଖିବାକୁ ଯିବ । ବୁଢ଼ା ଆଗ୍ରହରେ ଦାୟିତ୍ୱ ସ୍ୱୀକାର କଲେ ।

ଏକା ଯିବାକୁ ମୁଁ ରାଜି ନ ଥିଲି । ତେଣୁ ସାଙ୍ଗରେ ଯିବାକୁ ବାପା ଉକ୍ତ ସହରରେ ରହୁଥିବା ଜଣେ ସଂପର୍କୀୟ ଭାଇକୁ ଯୋଗାଡିଲେ । ଘରୁ ବାହାରିବା ଦିନ ମା ଘିଅ ଦୀପ ଜାଳିଥାଏ । ପୂଜା ଘରେ ମୁଣ୍ଡିଆ ମାରି ଯିବାକୁ ବାପା ମା ମାର୍ଫତରେ ପରାମର୍ଶ ଦେଲେ । ବିଧବା ପିଉସୀ ଭିତର ଘରୁ ବାହାରୁ ନ ଥାନ୍ତି । ଶୁଭ କାମରେ ବିଧବା ମୁହଁ ବାହିଁଲେ କୁଆଡ଼େ କାର୍ଯ୍ୟ ସଫଳ ହୁଏନି । ମେଟ୍ରିକ ପରୀକ୍ଷାର୍ଥୀ ପରୀକ୍ଷା ହଲକୁ ଯିବା ଅବା ବେକାରଯୁବକ ଇଣ୍ଟରଭ୍ୟୁ ବୋର୍ଡକୁ ପଶିବା ବେଳର ପ୍ରସ୍ତୁତି ଏ ସବୁ ।

ଏତେ ଗୁଡ଼ିଏ ସୁରକ୍ଷା ବ୍ୟବସ୍ଥା ସତ୍ତ୍ୱେ ମନରୁ ମୋର ଡର ଛାଡୁ ନଥାଏ । ପ୍ରତ୍ୟେକ ଥର ନୂଆ ନୂଆ ଢଂଗରେ ଲୋକ ଅପମାନିତ କରୁଛନ୍ତି । କେଉଁଠି ବା ନ ପାଇ ମୁଁ ଅପମାନିତ, ତ ଅନ୍ୟ କେଉଁଠି ବା ଖାଇ ଅପମାନିତ । ଏଥର ପୁଣି କ'ଣ ହେବ କେଜାଣି? ସଂପର୍କୀୟ ଭାଇ ଘରେ ପହଞ୍ଚିଲା ବେଳକୁ ମନର ଅବସ୍ଥା ଆହୁରି ଶୋଚନୀୟ । ଭାଇଙ୍କ ଫେରିବାରେ ସାମାନ୍ୟ ଡେରିଥାଏ । ତାଙ୍କ ସହ ମୋର ପାତ୍ରୀ ଘରକୁ ଯିବା କଥା । ଏଥର ନାପସନ୍ଦ ହେଲେ ଭାଇ ଭାଉଜଙ୍କଠାରୁ କିଛି ଲୁଚେଇ ହେବ ନାହିଁ । ତେଣୁ ଭାଉଜଙ୍କ ପାଖରେ ଆଗରୁ କିଛି ସଫେଇ ଦେଇ ରଖିବା ଭଲ ହେବ । କିଛି ହେଲେ ଅନ୍ତତଃ ଭାଉଜ ସାକ୍ଷୀ ଦେବେ, ପାତ୍ରର ବି ମନ ନ ଥିଲା ସେଠି । କହିଲି, 'ପାତ୍ରୀ ଘର ଆମଠାରୁ ଧନୀ । କୁଆଡ଼େ ମହଲ ସାଙ୍ଗକୁ ଗାଡ଼ି ମୋଟର ମଧ୍ୟ ଅଛି ତାଙ୍କର । ବିବାହ, ବିବାଦ ଓ ବନ୍ଧୁତା ସମସ୍ତରରେ ଶୋଭା ପାଏ; ବଡ ନୁହେଁ କି ସାନ ନୁହେଁ । ଭାଉଜ ମୋର କଥାକୁ ବିଶ୍ୱାସ କଲେ, କହିଲେ, 'ତୁମର ମନ ଯଦି ସେଠି ନାହିଁ, ଆମ ପଡ଼ୋଶୀ ଘରେ ଝିଅଟିଏ ଅଛି, ଦେଖ । ଭଲ ଝିଅ । ଦେଖିବାକୁ ଅପସରା ନୁହେଁ, କିନ୍ତୁ ମନ୍ଦ ନୁହେଁ । ଶିକ୍ଷାରେ କଲେଜ ଯାଇଛି, ପାଶ୍ ଫେଲ୍ କଥା ମୁଁ କହି ପାରିବିନି' । 'ତୁମେ ପଚାର ତାଙ୍କ ଘରେ । ଯଦି ତାଙ୍କର ଆପତ୍ତି ନାହିଁ, ଆଜି ଦେଖିବାକୁ ଯିବି ।' ମୁଁ କହିଲି । 'କଥା ପଡ଼ିବାରୁ ଭାଉଜ ପ୍ରସ୍ତାବ ଦେଇଥିଲେ ସିନା, ମୋର ଏତେ ଆଗ୍ରହ ହେବ ବୋଲି ତାଙ୍କର କଳ୍ପନା ନ ଥିଲା । ସାଙ୍ଗେ ସାଙ୍ଗେ ବାହାରିଲେ ପଚାରିବାକୁ । ଯାଇ, ଝିଅଟିକୁ ଡାକି ଆଣିଲେ ମଧ୍ୟ ସାଙ୍ଗରେ । ଝିଅଟିକୁ ଦେଖୁ ଦେଖୁ ମୋର ପ୍ରଥମ ପ୍ରଶ୍ନ - 'ମତେ ବାହାହେଲେ ତୁମର ଚଳିବ ତ ?' ତାର ମୌନତା ମୋତେ ସମ୍ମତିର ଲକ୍ଷଣ ପରି ମନେ ହେଲା ।

ଝିଅ ପାଖରୁ ସମ୍ମତି ପାଇବା ପରେ ମନେ ହେଲା ସଫଳତା ମୋ ହାତ ମୁଠାରେ । ଆନନ୍ଦରେ ଛାତି ଭିତରଟା କୁତୁ କୁତୁ ହେଲା ଖାଲି । ଝିଅଟିଏ ପସନ୍ଦ କଲାଣି ମତେ; କାହାକୁ ମୋର ଆଉ ଡର ? ଆଗ ପଛ ହୋଇ ଦୁଇ ବାରୋଟି ପ୍ରଶ୍ନ ପଚାରିଗଲି । ଭାଉଜ

ପୁରୁଣା ପାଢ଼ିର ହେଲେ ମୋର କି ଖାତିର ? 'କେତେ ଯାଏ ପଢ଼ିଛ ? କେଉଁଠି ପଢ଼ୁଥିଲ ? କ'ଣ ସବୁ ବିଷୟ? ସୁବିଧା ମିଳିଲେ କ'ଣ ବିବାହ ପରେ ପଢ଼ିବ ନାହିଁ?' ଝିଅଟି ଗୋଟାଏ ବା ଅତି ବେଶି ହେଲେ ଦୁଇଟି ଶବ୍ଦରେ ଉତ୍ତର ଦେଉଥାଏ । ସଂକ୍ଷିପ୍ତ ହେଲେ କ'ଣ ହେଲା, ଉତ୍ତରଗୁଡ଼ିକରୁ ଉତ୍ସାହ ତାର ବାରି ହେଉଥାଏ । କେତେ କଥା ପଚାରି ସାରିଲା ପରେ ମୋର ହଠାତ ମନେ ପଡ଼ିଲା ଯେ ତା ନାଁ ପଚାରିନି । ଏତେ ଡେରିରେ ଆଉ କି ନାଁ ପଚାରିବି ? ପରେ ଭାଉଜଙ୍କଠାରୁ ବୁଝିନେଲେ ଚଳିବନି ? ନାଁ ପଚାରିଲି ନାହିଁ ଅଗତ୍ୟା ।

ଝିଅକୁ ନାହିଁ କରିବାର ଆଉ ପ୍ରଶ୍ନ ଉଠୁ ନଥିଲା । ସବୁକିଛି ଏବେ ନିର୍ଭର କରୁଚି ତା ବାପା ଉପରେ । 'ସେ ନିଜେ ବି ତ ହଁ କଲାଣି ।' ମୁଁ ନିଜକୁ ଧୈର୍ଯ୍ୟହରା ନ ହେବା ପାଇଁ କହିଲି । ତାକୁ ବାଟେଇ ଆସିବା ଅବସରରେ ଭାଉଜ ପଚାରିଲେ, 'ପାତ୍ର ବର୍ତ୍ତମାନ ଯଦି ଦେଖିବା ପାଇଁ ଆସନ୍ତି, ତୁମର କିଛି ଆପତ୍ତି ଅଛି କି?' କନ୍ୟା ପିତାର ଉତ୍ତରରୁ ତାଙ୍କ ମନର ଭାବ ଜାଣି ହେବ । ନୋହିଲେ ଦେଖିବାର କି ଆଉ ବାକୀ ଅଛି? ଉତ୍ତର ମିଳିଲା, 'ଦଶ ମିନିଟ ପରେ ଆସନ୍ତୁ ।' 'ହୋଟେଲରୁ ଜଳଖିଆ କିଣିଆଣିବାରେ ଦଶମିନିଟ ସମୟ ଲାଗିବ ।' ଭାଉଜ ଉକ୍ତିର ବିଶେଷ ଅର୍ଥ କଲେ ।

ଠିକ ଦଶ ମିନିଟ ପରେ ମୁଁ ପାତ୍ରୀ ଘରେ ହାଜର । ସାଙ୍ଗରେ 'ଟିଫିନ୍' ଖାଇବା ବାସନାରେ ପୁତୁରା ଛୁଆଟି ଯାଇଥାଏ । କନ୍ୟା ପିତା ଫେରି ନ ଥାନ୍ତି । ସ୍ୱତନ୍ତ୍ର 'ଟିଫିନ'ର ଅର୍ଡର ଦେଇଛନ୍ତି ନିଶ୍ଚୟ ! ପେକିଂରେ ଡେରି ହେଉଛି । ସତକୁ ସତ ଅଳ୍ପ ସମୟ ପରେ ଉଭୟ ଟିଫିନ୍ ଓ କନ୍ୟା-ପିତା ଆସିଲେ । ସ୍ୱତନ୍ତ୍ର ଟିଫିନ୍ ! ରସଗୋଲା ପାଟିକୁ ନେବା ଆଗରୁ ପାଟିରୁ ଲାଳ ଓ ରସଗୋଲାର ସିରା ଏକା ସାଙ୍ଗରେ ତଳେ ପଡ଼ି ଚଟାଣକୁ ପିମ୍ପୁଡ଼ିମୟ କରିଦେଲେ । ମୋତେ ଡର ମାଡୁଥାଏ, କାଳେ ସେହି ଭୁଲ ଯୋଗୁଁ ନାପସନ୍ଦ ହୋଇଯିବି । ପୁତୁରା ଛୁଆଟି ଭକୁଆ ଭଳି ମୋର ମୁହଁକୁ ଚାହିଥାଏ ।

ପୂର୍ବ ଦୁଇ ଥର ଭଳି ଏଥର ବି ମୁଁ ଝିଅ ଦେଖିଲିନି, କାରଣ ଆଗରୁ ଦେଖି ସାରିଥିଲି । ଭଗବାନଙ୍କୁ କୋଟି କୋଟି ଧନ୍ୟବାଦ-କନ୍ୟା, କନ୍ୟାପିତା, କେହି ମତେ ନାପସନ୍ଦ କଲେ ନାହିଁ । କୋଡ଼ିଏ ଦିନ ଭିତରେ ବିବାହ ସମ୍ପୂର୍ଣ୍ଣ ହେଲା । ଆଉ ଜନ୍ମ କଥା ପରେ ଦେଖାଯିବ, ଯାହା ହେଉ ଏ ଜନ୍ମକ ପାଇଁ ବାଡୁଅ ଦୋଷରୁ ତ୍ରାହି ମିଳିଲା । ଏଣିକି ଆନନ୍ଦରେ ଘର ସଂସାର କରି ଅଧ୍ୟକ୍ଷଙ୍କ ଘରକୁ କାନ୍ଧିଏ ବାଡ଼ି କଦଳୀ ଓ ମୁଠିଏ ଶାଗ ପଠାଇବାକୁ କେବଳ ମନ ଡାକିଲା । ନିଜର ଆଶୁ ସମୃଦ୍ଧି ଓ ଶତ୍ରୁର ବିନାଶ ନିମନ୍ତେ ଏଥିରୁ ଭଲ ଉପାୟ ମତେ ଆଉ ଜଣା ନଥିଲା ।



# ରାମ

ତ୍ରେତୟା ଯୁଗରେ ଅଯୋଧ୍ୟା ନାମରେ ଏକ ରାଜ୍ୟ ଥିଲା । ସେଠି ଦଶରଥ ବୋଲି ଜଣେ ବୁଢ଼ା ରାଜା ଶାସନ କରୁଥିଲେ । ରାଜାଙ୍କର ରାମ ନାମକ ଜଣେ ଜ୍ୟେଷ୍ଠ ପୁତ୍ର ଥିଲେ । ରାଜ୍ୟରେ ବହୁ-ବିବାହ ପ୍ରଥା ବାରଣ ଥିଲା । କିନ୍ତୁ ରାଜା ତ ରାଜା; ତାଙ୍କୁ କି ବାରଣ? ସେ ଅନେକ ରାଣୀ ରଖିଥିଲେ । ଦିନେ କୈକେୟୀ ନାମକ ଏକ ରାଣୀ କଥାରେ ପଡ଼ି ରାଜା ରାମଙ୍କୁ କହିଲେ, 'ଯା, ଜଙ୍ଗଲକୁ ଯା । ଚଉଦ ବର୍ଷ ବନବାସ କରି ଆସିବୁ ।' ରାମ ପିତ୍ରାଜ୍ଞା ପାଳନ ପୂର୍ବକ ବନବାସ ନିମିତ୍ତ ଜଙ୍ଗଲକୁ ଗଲେ । ଏମିତି ଖଳବୁଦ୍ଧି ଯେହେତୁ ରାଜା, ରାଣୀ ପରି ମହତ ଲୋକଙ୍କୁ ଜୁଟେନାହିଁ, କବି ମନ୍ଥରା ନାମକ ଜଣେ ଦାସୀକୁ କାଠଗଡ଼ାରେ ହାଜର କରାନ୍ତି । ଏମିତି ବି ମହତ ଲୋକଙ୍କ ମୁଣ୍ଡରେ କେବଳ ସୁବୁଦ୍ଧି ଏବଂ ଦାସ, ଦାସୀ ଆଦି ଇତର ଲୋକଙ୍କ ମୁଣ୍ଡରେ କେବଳ ଖଳବୁଦ୍ଧି ଓ ଗୋବର ଭର୍ତ୍ତିଥିବା କଥା ସମସ୍ତଙ୍କୁ ଜଣା । କବିଙ୍କ କୃତିରେ କିଛି ନୂଆ ନାହିଁ ।

ଆଜି ଅଯୋଧ୍ୟା ଅଛି, ଖଳବୁଦ୍ଧି ଦାସ, ଦାସୀ ଅଛନ୍ତି; ଖୋଜିଲେ ଦଶରଥ ପରି ପୁତ୍ରଘାତୀ ପିତା ମଧ୍ୟ ମିଳି ପାରନ୍ତି; ନାହିଁ ବୋଇଲେ ଏକା ପିତ୍ରାଜ୍ଞା ପାଳନ କରି ବନବାସ ଯିବାକୁ ସଦା ପ୍ରସ୍ତୁତ ରାମ ଏବ ବନବାସ ନିମିତ୍ତ ଉଦ୍ଦିଷ୍ଟ ଜଙ୍ଗଲ । କାଳର କରାଳ ଗତିରେ ଧୂଳିସାତ୍ ଉଭୟେ । ତଥାପି କିନ୍ତୁ ରାମର ସ୍ମୃତି ରହିଯାଇଛି ମଣିଷର ମାନସ ପଟରେ; ଜଙ୍ଗଲର ଚିତ୍ର ରହିଯାଇଛି ସିନେମା ପରଦାରେ, ଚିତ୍ର ପ୍ରଦର୍ଶନୀରେ ଏବଂ ଉଦ୍ଭିଦ ବିଜ୍ଞାନବିଦ୍‌ଙ୍କ ବାଡ଼ି ପଟରେ ।

ଆଜି ତ୍ରେତେୟା ଓ କଳିଯୁଗ ମଧ୍ୟରେ ଯୋଜନ ଯୋଜନ ବର୍ଷ ବିତିଯାଇଛି । ସେ କାଳର 'ରାମ କଥା' ଓ ବର୍ତ୍ତମାନର 'ରାମ ସ୍ମୃତି' ଭିତରେ ସାମାନ୍ୟ କିଛି ସାମଞ୍ଜସ୍ୟ ଥାଇପାରେ, ମାତ୍ର ତା ତୁଳନାରେ ପାର୍ଥକ୍ୟ ଅନେକ । ପରିବର୍ତ୍ତିତ ପରିସ୍ଥିତିରେ 'ରାମ' କେବଳ ଦଶରଥ ପୁତ୍ର ବା ପ୍ରତିଜ୍ଞା ରକ୍ଷକ ନୁହନ୍ତି । ବରଂ ସେ ଅନେକ କିଛି । ଗତିମାନ ସମୟ ସାଙ୍ଗରେ ତାଳ ମିଳାଇ ତାଙ୍କ ନାମ ଓ ଗୁଣର ବ୍ୟାପକତା ବହୁତ ବେଶି । ବିଭିନ୍ନ

ରୂପରେ ଭିନ୍ନ ଭିନ୍ନ ତଥା ବିପରତୋନ୍ମୁଖୀ ପରିସ୍ଥିତି ସହିତ ଖାପ ଖୁଆଇ ଚଳୁଥିବା ଅଭିଜ୍ଞ ପୁରୁଷଟିଏ ସେ । ଜଙ୍ଗଲକୁ ବନ ବିଭାଗ ସଂରକ୍ଷକଙ୍କ ଚା ପାନ ପାଇଁ ଛାଡି ଦେଇ 'ରାମ'ର ବ୍ୟାପକ ଅର୍ଥ ଓ ବହୁମୁଖୀ ପ୍ରତିଭା ସଂକ୍ରାନ୍ତରେ ସାମାନ୍ୟ ଆଭାଷ ପ୍ରଦାନ କରିବା ହେଲା ଏହି ନିବନ୍ଧର ମୁଖ୍ୟ ଉଦ୍ଦେଶ୍ୟ ।

ସକାଳୁ ସକାଳୁ ମୋଟା ମୋଟା ମାରୱାଡି ଦୁଇଜଣ କଚ୍ଛା ଟେକି, ଲୋଟା ଧରି 'ପ୍ରକୃତି ଡାକ' ଶୁଣି ପ୍ରତ୍ୟୁତ୍ତର ଦେବା ନିମିତ୍ତ ବିଲକୁ ଗଲାବେଳେ ପରସ୍ପର ଉଦ୍ଦେଶ୍ୟରେ 'ରାମ ରାମ' ସଂବୋଧନ କରିବା କଥା ମାରୱାଡ଼ି ଅଧ୍ୟୁଷିତ ଅଞ୍ଚଳର ପ୍ରାୟ ପ୍ରତ୍ୟେକ ବାସିନ୍ଦାଙ୍କୁ ଜଣା । କେତେକ ଗବେଷକଙ୍କ ମତରେ ଏଠାରେ 'ରାମ ରାମ' ଅର୍ଥ ଜଣେ ଅନ୍ୟକୁ ପଚାରୁଛନ୍ତି, 'ଭଲ ଫାଏଦା ହେଉଛି?' ଉତ୍ତରରେ ଅନ୍ୟ ଜଣକ କହିଲେ, 'ଭଲ ଫାଏଦା ହେଉଛି ।' ପ୍ରଥମ ବ୍ୟକ୍ତି ଶବ୍ଦଟିକୁ ପ୍ରଶ୍ନବାଚକ ଅର୍ଥରେ ବ୍ୟବହାର କଲାବେଳେ ଦ୍ୱିତୀୟ ମୋଟା ମାରୱାଡ଼ି ତାକୁ ଆସ୍ତିସୂଚକ ଭାବରେ ଗ୍ରହଣ କରୁଛନ୍ତି । ଅନୁମାନ କରିବା ଲୋକ 'ଭଲ ଫାଏଦା' ଦୋକାନରୁ କି ସ୍ତ୍ରୀ ସୁଖରୁ କି କୋଷ୍ଠକାଠିନ୍ୟ ଔଷଧ ସେବନରୁ - ତାହା ଅନୁମାନ କରିନିଏ । ଉକ୍ତ ମତକୁ ଅସ୍ୱୀକାର କରି ଅନ୍ୟ କେତେକ ଗବେଷକ କହନ୍ତି, 'ରାମ ରାମ' ହେଲା ଏଠି ସ୍ୱାଗତର ପ୍ରତୀକ - ଅର୍ଥ ଲାଭର ସ୍ୱାଗତ, ସମୃଦ୍ଧିର ସ୍ୱାଗତ, ଭେଜାଲର ସ୍ୱାଗତ, କଳାବଜାରର ସ୍ୱାଗତ, 'ପ୍ରକୃତି ଡାକ'ର ସ୍ୱାଗତ, ମାରୱାଡ଼ି ବ୍ୟତୀତ ବାକୀ ଲୋକଙ୍କଠାରେ ଗରିବିର ସ୍ୱାଗତ ।

ଏକ ପକ୍ଷରେ 'ରାମ ରାମ' ଆସ୍ତିସୂଚକ ସ୍ୱାଗତର ପ୍ରତୀକ ହୋଇ ରହିଥିବା ବେଳେ, ଅନ୍ୟ ପକ୍ଷରେ ଏହା ନାସ୍ତିସୂଚକ 'ମୃତ୍ୟୁ' 'ବିଦାୟ' ଏବଂ 'ନା ନା'ର ପ୍ରତିଶବ୍ଦ ରୂପେ ମଧ୍ୟ ବ୍ୟବହୃତ ହେବାର ଲକ୍ଷ୍ୟ କରାଯାଏ । ଏହାର ଏକ ଜ୍ୱଳନ୍ତ ଉଦାହରଣ ହେଲା ଶବବାହକ ମୁହଁରେ 'ରାମ ନାମ ସତ୍ୟ ହୈ'ର ଦୁଃଖଦାୟୀ ଉଚ୍ଚାରଣ । ପୋଖତ ଭାଷାଜ୍ଞାନୀ କହନ୍ତି, ଉକ୍ତ ପରିସ୍ଥିତିରେ ବାକ୍ୟଟିର ସମ୍ପୂର୍ଣ୍ଣ ଅର୍ଥ ହେଲା 'ମୃତ୍ୟୁ ହିଁ ସତ୍ୟ' । ଫଳତଃ 'ରାମ' ମାନେ 'ମୃତ୍ୟୁ' । କାରଣ ଦୁଇ ଚାରି ମିନିଟ ପୂର୍ବରୁ ମରିଥିବା ସ୍ୱଜନକୁ ଦେଖି ଶୋକାକୁଳ ଶବବାହକଗଣ ମୃତ୍ୟୁ ବ୍ୟତୀତ ଅନ୍ୟ କୈଣସି ପ୍ରସଙ୍ଗକୁ କ'ଣ ଚର୍ଚ୍ଚାର ପରିସର ଭିତରକୁ ଆଣି ପାରିବେ? ଅବଶ୍ୟ ପ୍ରଥମ ଦୁଇ ଚାରି ଥର 'ମୃତ୍ୟୁ ହିଁ ସତ୍ୟ' ବୋଲି ଘୋଷଣା କରିବା ପରେ ରାସ୍ତାସାରା ଶବ ପୋଡ଼ା ସରିବା ପର୍ଯ୍ୟନ୍ତ ସେମାନେ ଯେଉଁ ବାରମ୍ବାର କୀର୍ତ୍ତନିଆ ତାଳରେ 'ରାମ ନାମ ସତ୍ୟ ହୈ' କହିଥାନ୍ତି, ତାର ମତଲବ ଅଲଗା । ଏଥର ବାକ୍ୟଟିର ମାନେ ହୁଏ 'ବିଦାୟ ବନ୍ଧୁ, ଚିର ବିଦାୟ ।' ଅର୍ଥାତ୍ ଏଠି ପ୍ରଥମେ 'ରାମ'ର ଅର୍ଥ 'ମୃତ୍ୟୁ'

ଏବଂ ପରେ 'ରାମ' ହେଲା 'ବିଦାୟ' ।

'ମୃତ୍ୟୁ' ଓ 'ବିଦାୟ'କୁ ବାଦ ଦେଲେ ଅନ୍ତ ମାରାତ୍ମକ ନାସ୍ତିସୂଚକ 'ନା ନା' ଅର୍ଥରେ ମଧ୍ୟ ସାଧାରଣତଃ 'ରାମ'ର ବ୍ୟବହାର ହୋଇଥାଏ । ଏହାର ଉଦାହରଣ ନିମିତ୍ତ ପାଠକଙ୍କୁ 'ଗ୍ରୀଷ୍ମ ଋତୁରେ ଗ୍ରାମର ଦୃଶ୍ୟ' ଦେଖିବାକୁ ପଡ଼ିବ । ଖରାଦିନେ ଦୁଇପହରେ ଗାଁକୁ ଗାଁ ଆଇସକ୍ରିମ ବାଲା ସାଇକେଲ ପଛପଟେ ଆଇସକ୍ରିମ ପେଟି ଧରି ପଁ ପଁ କରୁଥିବାର କିଏ ନଜାଣେ? ପଁ ପଁ ଶବ୍ଦ ଶୁଣି ଛୋଟ ଛୁଆ ବାପା-ମା ପାଖରେ ହାତ ଗୋଡ଼ ବାଡ଼େଇ ଅର୍ଦ୍ଦଳି କରେ, 'ଆଇସକ୍ରିମ ଖାଇବି ।' ବେମାର ହେବା ଆଶଙ୍କାରୁ ହେଉ କି ପଇସା ଲୋଭରେ ହେଉ ଛୁଆକୁ ସେଥିରୁ ନିବୃତ୍ତ ରଖିବାପାଇଁ ବାପା-ମା ତତ୍ପର ହୋଇ ପଡ଼ନ୍ତି, 'ରାମ - ରାମ । ବଡ଼ ବଡ଼ ପୋକ ସେଥିରେ ।' ବୁଝିବା ଛୁଆ 'ରାମ ରାମ'ରୁ ବୁଝିଯାଏ, ବାପା-ମା ଦୃଢ଼ ଭାବରେ 'ନା ନା' କରୁଛନ୍ତି । 'ବଡ଼ ବଡ଼ ପୋକ ସେଥିରେ' ଶୁଣିବା ପାଇଁ ସେ ଅପେକ୍ଷା କରେନା । ତେଣିକି ଛୁଆ ଅର୍ଦ୍ଦଳିର ମାତ୍ରା ବୃଦ୍ଧି କରିବ ନା ବାପା-ମା ଦୁଇପହରେ ଶୋଇଗଲେ ଚାଉଳ ଚୋରୀ କରି ଆଇସକ୍ରିମ ଖାଇବ - ସ୍ଥିର କରିବାକୁ ତତ୍ପର ହୋଇପଡ଼େ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଏକ ପକ୍ଷରେ 'ରାମ' ଆସ୍ତିସୂଚକ ସ୍ୱାଗତର ପ୍ରତୀକ; ଅନ୍ୟ ପକ୍ଷରେ ନାସ୍ତିସୂଚକ ପରିସ୍ଥିତି ଏବଂ ଅର୍ଥରେ ତାର ବ୍ୟବହାର ହେଲେ ବି କୌଣସି ଆପତ୍ତି ନାହିଁ । ତେଣୁ ବୁଦ୍ଧିଜୀବି ଯେମିତି ବାଡ଼ି ବାଇଗଣ ଓ ପୋଥି ବାଇଗଣ ଭଳି ଦୁଇଟି ପରସ୍ପର ବିରୋଧି ବାଇଗଣର ଧାରକ ଭାବରେ ଖ୍ୟାତ, ରାମ ମଧ୍ୟ ସେମିତି ବିପରୀତୋନ୍ମୁଖୀ ଆସ୍ତି ଓ ନାସ୍ତିସୂଚକ ଗୁଣରେ ଗୁଣୀ । ଏଥିରୁ ପ୍ରମାଣିତ ଯେ (ବି·ଦ୍ର-ଗବେଷଣା ନିବନ୍ଧରେ ତତ୍ତ୍ୱଗୁଡ଼ିକ ବାରମ୍ବାର ପ୍ରମାଣିତ କିମ୍ବା ଖଣ୍ଡିତ ହେଉଥିବାରୁ 'ଏଥିରୁ ପ୍ରାମାଣିତ' 'ମାନେ' 'ଅର୍ଥାତ' 'କାରଣ' 'ତେଣୁ' ଇତ୍ୟାଦି କେତେଗୋଟି ଧରାବନ୍ଧା ଶବ୍ଦର ବାରମ୍ବାର ବ୍ୟବହାରକୁ ବରଦାସ୍ତ କରାଯାଏ ।) 'ରାମ' ମାନେ କେବେ କେବେ ଦୋ ମୁହାଁ ବୁଦ୍ଧିଜୀବି ।

ଆବହମାନ କାଳରୁ 'ରାମ' ଶବ୍ଦ ମୋକ୍ଷଲିପ୍ସୁମାନଙ୍କ ଦ୍ୱାରା ପାସପୋର୍ଟ ରୂପେ ମଧ୍ୟ ବ୍ୟବହୃତ ହେଉଥିବାର ଜଣାଯାଏ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମୃତକ କାନରେ ଯଦି 'ରାମ' ଶବ୍ଦ ପଡ଼େ, ମୃତକର ସ୍ୱର୍ଗ ଗମନ ନିମିତ୍ତ କୁଆଡ଼େ କୌଣସି ଅସୁବିଧା ହୁଏ ନାହିଁ । କଳି କାଳରେ ସାଧାରଣତଃ ବୁଢ଼ା ଲୋକ 'ସ୍ୱାଭାବିକ' ମୃତ୍ୟୁବରଣ କରିବା ପୂର୍ବରୁ (ପୁଅ ବୋହୂର ଦୁର୍ବ୍ୟବହାର·ଜନିତ ବୁଢ଼ା ବାପର ମୃତ୍ୟୁକୁ 'ସ୍ୱାଭାବିକ' ମୃତ୍ୟୁ ବୋଲି ସମ୍ବିଧାନ ସ୍ୱୀକୃତି ଦେଇସାରିଛି ।) ନିଜର ଛୋଟ ନାତି ନାତୁଣୀ ମୁହଁରୁ 'ରାମ' ଶବ୍ଦ ଶୁଣିବାର ସୁଯୋଗ ଲାଭ କରନ୍ତି । ଯଦିଓ ବଜାରରେ 'କୃଷ୍ଣ', 'ବିଷ୍ଣୁ', 'ଈଶ୍ୱର', ଇତ୍ୟାଦି

ପାସପୋର୍ଟ ମଧ୍ୟ ସୁଲଭ ମୂଲ୍ୟରେ ଉପଲବ୍ଧ. ଛୋଟ ନାତି ନାତୁଣୀଙ୍କ ମୁହଁରେ ଏଭଳି କଷ୍ଟ ଶବ୍ଦ ପଇଟୁ ନ ଥିବାରୁ ଉଚ୍ଚାରଣରେ ସହଜ 'ରାମ' ନାମର ବହୁଳ ପ୍ରଚାର । ସେ ଯାହା ହେଉ, ଜୀବନକାଳ ମଧ୍ୟରେ ଯେତେ ମାତ୍ରାରେ ପାପ ଅର୍ଜନ କଲେ ସୁଦ୍ଧା ନାତି ନାତୁଣୀଙ୍କ ଦୟାରୁ ବୁଢ଼ା ଲୋକେ ସ୍ୱର୍ଗର ବାଟ ମୁହଁରେ ହାମୁଡ଼େଇ ହୋଇ ପଡନ୍ତି । ଏହି କାରଣରୁ ଜଗତର ସମସ୍ତ ବୁଢ଼ା ଲୋକ ଚାହାନ୍ତି, ମରିବା ଆଗରୁ ନାତି ନାତୁଣୀ ମୁହଁ ଦେଖିବେ । ସରକାର ଓ ଦୂରଦର୍ଶନବାଲା ବାହା ହେଉ ନ ହେଉଣୁ ଛୁଆ ଜନ୍ମ କରିବା ଅପରାଧ ବୋଲି ଯେତେ ପ୍ରଚାର କଲେ ବି କି ଲାଭ? ଯେତେଦିନ ପର୍ଯ୍ୟନ୍ତ ମୋକ୍ଷଲିପ୍ସୁ ମୃତ ପ୍ରାୟ ବୁଢ଼ା ବୁଢ଼ୀଙ୍କ କାନରେ ବିନା ପାଉଣାରେ 'ରାମ' ନାମ ଶୁଣେଇବାର ଦାୟିତ୍ୱ ପରିବାର କଲ୍ୟାଣ ବିଭାଗ ନ ନେଇଛନ୍ତି, ଛୁଆ ତେରିରେ ହେବା ନୋହିବ ! ବୁଢ଼ା ବୁଢ଼ୀ ମିଶି ଜନ୍ମ ନିୟନ୍ତ୍ରଣ ବିଷୟକ ସମସ୍ତ ବିଜ୍ଞାପନର ହୁତ୍ ଖୋଲିଦେବେ ।

ଦୁଃଖର କଥା ବିଜ୍ଞାନର କ୍ରମୋନ୍ନତି ଯୋଗୁଁ ବୃଦ୍ଧାବସ୍ଥା ଓ ପୁଅବୋହୂର ଦୁର୍ବ୍ୟବହାର ଆବଶ୍ୟକୀୟ ସଂଖ୍ୟାର ମୃତ୍ୟୁ ପାଇଁ ଆଜି କାଲି ଆଉ ଯଥେଷ୍ଟ ହେଉ ନାହିଁ । ବିଷାକ୍ତ ମଦ୍ୟପାନ ଓ ଗ୍ୟାସ କ୍ଷରଣ, ସାମ୍ପ୍ରଦାୟିକ ଦଙ୍ଗା, ଅନାହାର ଏବଂ ଟ୍ରେନ୍ ବସ୍ ଦୁର୍ଘଟଣା ମଧ୍ୟ ଏଥିପାଇଁ ଅତି ଆବଶ୍ୟକ ହୋଇ ପଡ଼ିଲାଣି । ନିକଟରେ ଆୟୋଜିତ ଏକ ଗବେଷଣାରୁ ପ୍ରକାଶ ଯେ, ଦୁର୍ଘଟଣାରେ ଏବଂ ଯୁବ ବୟସରେ ପ୍ରାଣ ହରାଉଥିବାରୁ ମୃତକଙ୍କ କାନରେ 'ରାମ' ଶବ୍ଦ ପଡି ପାରେନାହିଁ । ଦୁଃଖରେ ମ୍ରିୟମାଣ ନିକଟ ସମ୍ପର୍କୀୟ ତ ଡାକ୍ତର ଡାକିବାରେ ବ୍ୟସ୍ତ, ସେ ମୃତପ୍ରାୟ ବ୍ୟକ୍ତିଙ୍କ କାନରେ 'ରାମ' ବାଣୀ ଦେବ କିଏ? ଦୁର୍ଭାଗ୍ୟକୁ ନାତି ନାତୁଣୀଙ୍କର ପ୍ରଶ୍ନ ଉଠୁନି । ଆଉ ଦୁର୍ଘଟଣାଗ୍ରସ୍ତ ମୃତକର କଥା ନ କହିଲେ ଭଲ । ତା ହାତରୁ ଘଡି, ବେକରୁ ସୁନାଚେନ, ଆଙ୍ଗୁଠିରୁ ମୁଦି ଓ ପକେଟରୁ 'ପର୍ସ' କାଢ଼ିବାରେ ପାଖ ଲୋକଙ୍କୁ ଫୁରସତ୍ ନାହିଁ, 'ରାମ' ନାମ ନେବେ କେତେବେଳେ ? ଏ ଦୃଷ୍ଟିରୁ ଅବଶ୍ୟ ସାମ୍ପ୍ରଦାୟିକ ଦଙ୍ଗାଗ୍ରସ୍ତ ମୃତକର ଭାଗ୍ୟ ଭଲ । ହୁଏତ ସେ 'ଜୟ ଶ୍ରୀରାମ' କହୁଥିବା ଅବସ୍ଥାରେ, ନୋହିଲେ 'ଜୟ ଶ୍ରୀରାମ' ସ୍ଲୋଗାନ ଛାଡୁଥିବା ପଡ଼ୋଶୀ ହସ୍ତରେ ପ୍ରାଣବଳୀ ଦିଏ; ଫଳରେ ତା' ସ୍ୱର୍ଗଗମନ ନିର୍ବାଚନ ପୂର୍ବର ସାମ୍ପ୍ରଦାୟିକ ଦଙ୍ଗା ପରି ଏକ ରକମ ନିଶ୍ଚିତ ହୋଇପଡ଼େ ।

ଅଜାମିଳ ପରି ପାପୀ ଚାଲାକ ଲୋକ ଅଛନ୍ତି ଯେଉଁମାନେ ଜୀବନ ଯାକ ପାପ ଅର୍ଜିଲା ପରେ ନିଜେ ନାତି ନାତୁଣୀ ମୁହଁରୁ 'ରାମ' ଶବ୍ଦ ଶୁଣି ଜବାବରେ ନିଜେ ବି ଫଟ୍ କରି 'ରାମ' ଡାକି ଦେବେ ଏବଂ ଭବଜାଳରୁ ମୁକ୍ତି ଲଭିବେ । ମାତ୍ର ସବୁ ପାପୀ କ'ଣ

ଅଜାମିଳ ଭଳି ଚାଲାକ? ବିଚାରେ ଏତେ ବୁଦ୍ଧିହୀନ ଯେ ମରିବା ପର୍ଯ୍ୟନ୍ତ ଓକିଲ ଡକେଇ ପୁଅ-ଝିଅ ନାଁରେ ଉଇଲନାମା ଲେଖାଉଥିବେ, ନୋହିଲେ 'ବୃଦ୍ଧ ଉମାଶଙ୍କର'ର ପଦାଙ୍କ ଅନୁସରଣ କରି ଚାରିପୁଅ ହାତରେ 'ଗୁପ୍ତଧନ' ବାଣ୍ଟୁଥିବେ, ଭିଡ଼ କାମ ଯୋଗୁଁ 'ରାମ ରାମ' ନେବାକୁ ତାଙ୍କର ସମୟ ନଥିବ । ସ୍ୱର୍ଗଗମନ ନିମିତ୍ତ ଏମିତି ଲୋକଙ୍କ ହାତରେ ପାସପୋର୍ଟ କ'ଣ, ସାଙ୍ଗରେ ବସ୍‌ପାସଟିଏ ବି ଜବରଦସ୍ତ ପକେଟରେ ଗୁଞ୍ଜିଦେଲେ ଯେ ସେମାନେ ତାକୁ କାଗଜ ଡଙ୍ଗା ତିଆରି ବର୍ଷାଜଳରେ ଭସେଇ ନ ଦେବେ, ତାର କିଛି ଭରସା ନାହିଁ ।

'ରାମ' ପାସପୋର୍ଟ ବହନରେ ବିଫଳତା ପାଇଁ ଯେ କେବଳ 'ବୃଦ୍ଧ ଉମାଶଙ୍କର' ପରି ଗୁପ୍ତଧନୀଙ୍କୁ ଦୋଷ ଦିଆଯିବ, ତା ନୁହେଁ, ମହାପୁରୁଷମାନେ ମଧ୍ୟ ଏହି ଭୁଲର ଶୀକାର ହୋଇଥାନ୍ତି । ଆମେ ଜାଣୁ, ଜଣେ କେହି ମହାପୁରୁଷତ୍ୱ ଲାଭ କଲା ମାତ୍ରକେ ତାଙ୍କ ମୋକ୍ଷପ୍ରାପ୍ତି ଏବଂ ସ୍ୱର୍ଗଗମନର ସମ୍ଭାବନା ବିଶ୍ୱବିଦ୍ୟାଳୟ ପ୍ରଫେସରଙ୍କ ବିଦେଶ ଗମନର ଆଶା ପରି ଉଜ୍ଜ୍ୱଳ ହୋଇପଡ଼େ । ମୋକ୍ଷ ଯେହେତୁ ମହାପୁରୁଷ ଓ ଅଧମ ପୁରୁଷ ଉଭୟଙ୍କର କାମ୍ୟ, ଅଧମ ପୁରୁଷ ଭାବନ୍ତି, ମହାପୁରୁଷଙ୍କୁ ନିର୍ବାଣ ରାସ୍ତାରୁ କଳେ ବଳେ ନିବୃତ୍ତ କରି ପାରିଲେ ହିଁ, ତାଙ୍କ ନିଜର ନିର୍ବାଣ ସମ୍ଭବ । ଏମିତି ବି ପଞ୍ଚାଏ ମହାପୁରୁଷ ଜନ୍ମିଗଲେ ନିର୍ବାଣ ମହଙ୍ଗା ହୋଇ ପଡ଼େନି କି ? କୁହନ୍ତୁ ଭଲା, ବଡ଼ନେତା ବିଦ୍ୟମାନ ଥିଲେ କୁଜିନେତାଙ୍କୁ ମନ୍ତ୍ରୀତ୍ୱ ମିଳିବା କ'ଣ କମ ମୁସ୍କିଲ ? ତେଣୁ ସେମାନେ ମହାପୁରୁଷଙ୍କୁ ମୋକ୍ଷପ୍ରାପ୍ତିରୁ ନିବୃତ୍ତ ରଖିବା ପାଇଁ ଜାଲ ଖେଳି ବସନ୍ତି । ପରିମାଣ ସ୍ୱରୂପ ମହାପୁରୁଷ କୃଷ୍ଣ ଜାରା ଶବର ବାଣରେ ଜୀବନ ଦିଅନ୍ତି, ଯୀଶୁ କୃଶ ବିଦ୍ଧ ହୁଅନ୍ତି ଏବଂ ଲିଙ୍କନ, କେନେଡ଼ି ଆତାତାୟୀର ଗୁଳିରେ ପ୍ରାଣ ବଳି ଦିଅନ୍ତି । ଗୁଳିବିଦ୍ଧ ମହାପୁରୁଷଗଣ ସାମୟିକ ଯନ୍ତ୍ରଣା ଏବଂ ଉତ୍ତେଜନାର ବଶବର୍ତ୍ତୀ ହୋଇ କ୍ଷଣିକ ପାଇଁ ସ୍ୱ ସ୍ୱ ମହାନତା ଭୁଲିଯାନ୍ତି; କ୍ରୋଧରେ ପ୍ରାଣହନ୍ତାକୁ 'ହାରାମି' ସମ୍ବୋଧନ କରି ଗାଳି ଦିଅନ୍ତି । ଗାନ୍ଧିଭକ୍ତ ପରି ଓସ୍ତାଦ ଶିଷ୍ୟଗଣ ଗୁରୁଙ୍କ ମୁଖନିସୃତ ଶେଷ ଶବ୍ଦଟିକୁ ଦୁଇଭାଗ କରି 'ହା ରାମ' ବୋଲି ଇହଲୋକରେ ପ୍ରଚାର କଲେ କ'ଣ ହେବ, 'ରାମ' ନାମ ଉଚ୍ଚାରଣ କରି ନ ପାରି ପରଲୋକରେ ମହାପୁରୁଷ ମହାଶୟ ଯେ ପାସପୋର୍ଟ ବିହୀନ ସ୍ୱର୍ଗଯାତ୍ରା କରୁଛନ୍ତି । ଅଧମ ପୁରୁଷଗଣ ଖୁସିରେ ଟେବୁଲ ବାଡ଼େଇ ତାଳି ମାରନ୍ତି ।

ମୋକ୍ଷପ୍ରାପ୍ତି ନିମନ୍ତେ 'ରାମ'ର ଉପଯୋଗକୁ ଧ୍ୟାନରେ ରଖି ପାପୀଜନ ନିଜ ପୁଅ ପୁତୁରାର ନାମକରଣ ସମୟରେ 'ରାମ' ର ଖୁବ ବ୍ୟବହାର କରନ୍ତି । ଭାରତ ପରି ଏକ ଧାର୍ମିକ ସମାଜରେ 'ରାମ' ବିହୁନେ ଆଜି କେତେ ପୁଅ ପୁତୁରା ଯେ ବେନାମୀ ହୋଇ ବୁଲୁଥାନ୍ତେ, ତାର ଇୟତ୍ତା ନାହିଁ । ଉଚ୍ଚାରଣରେ ସରଳତା ସାଙ୍ଗକୁ ଏହାର ଅନ୍ୟ ଏକ

ମୁଖ୍ୟ କାରଣ ହେଲା, 'ରାମ' ର ଶ୍ରେଣୀହୀନ, ଜାତିହୀନ ଭାବ । ପାଣ ବାପୁଡ଼ା ହାତରେ ମନ୍ଦିର ପ୍ରବେଶ ନିମନ୍ତେ ପାସପୋର୍ଟ ନ ଥାଉ ପଛେ, ନିଜ ପୁଅ ନାଁ 'ରାମ' ରଖିବାରେ ତାକୁ କ'ଣ କିଏ ମନା କରି ପାରିବ ? ବ୍ରାହ୍ମଣ ଗୋସାଇଁ ଏବଂ ବାକୀ ସମାଜ ପୁଅ ନାଁକୁ ଅପଭ୍ରଂଶ କରି 'ରାମିଆ' କି 'ରାମୁ' ଡ଼ାକିଲେ କି ହେଲା, ତା ପାଇଁ ତ ସେ 'ରାମ' । ପାଣ ଖୁସି ହୁଏ । ଠିକ୍ ସେହିଭଳି ଗରିବ କି ଅଶିକ୍ଷିତ ପାପୀ ଜଣେ ନିଜ ପୁଅ ପୁତୁରାର ନାଁ 'ହିରଣ୍ମୟ ପ୍ରମଥେଶ' ଅବା ଝିଅ ଝିଆରୀର ନାଁ 'ପ୍ରଜ୍ଞା ପାରମିତା' ରଖିବାର କ'ଣ ସାହସ କରିବ, ବୁଦ୍ଧି ପାଇବ ? ଏ ନାଁ ଗୁଡ଼ା ଯେ ବଡ଼ ଲୋକଙ୍କର । 'ରାମ' 'ରାମି' କି ଅତି ବେଶୀହେଲେ ମଧୁ, ସୀତା ଭଳି ନାଁ ନ ଦେଲେ, ତା ବଂଶଜ ଅନାମ ହୋଇ ରହିଯିବେ, ଏଥିରେ ତିଳେ ସନ୍ଦେହ ନାହିଁ ।

ଛୋଟ ଲୋକଙ୍କର ସିନା ବଡ଼ ଲୋକର କୌଣସି ଜିନିଷରେ, ଏମିତି କି ନାଁରେ ବି, ଅଧିକାର ନାହିଁ, ଛୋଟ ଲୋକର କିନ୍ତୁ ଗୋରୁ ଗାଈ ଠାରୁ ଆରମ୍ଭ କରି ସନ୍ତାନ, ସ୍ତ୍ରୀ ଉପରେ ସୁଦ୍ଧା ବଡ଼ ଲୋକର ସାର୍ବଭୌମ ଅଧିକାର । ନାଁ ଏଥିରୁ ବା ବାଦଯିବ କେତେକେ? ଦୟା ପରବଶ ହୋଇ ଯଦି ବଡ଼ ନିଜ ଅଧିକାର ଜାହିର ନ କଲା ସେ ଭିନେ କଥା । ସେ ଯାହା ହେଉ 'ରାମ' ନାଁ ଛୋଟ ବଡ଼ ସମସ୍ତଙ୍କର । କିନ୍ତୁ ଭୋଜିରେ ସାଧାଭାତ ପରି ସଂପ୍ରତି ନାଁରେ କେବଳ 'ରାମ' ସୁନ୍ଦର ଲାଗୁନି । 'ରାମ'ର ଆଗ-ପଛରେ ଭିନ୍ନ କିଛି ଶବ୍ଦ ରହିଲେ ନାଁରୁ ଆଧୁନିକତା ଓ ଧର୍ମଭାବ ଉଭୟ ପ୍ରକାଶ ପାଏ । 'ରାମ' ଆଗରେ ରହିଲେ ରାମମୂର୍ତ୍ତି, ରାମସୁନ୍ଦର, ରାମପ୍ରକାଶ, ରାମରତନ, ରାମକୃଷ୍ଣ, ଆଦି ହଜାର କିସମର ନାମ ସୃଷ୍ଟି କରେ । ଠିକ୍ ସେମିତି 'ରାମ' ପଛରେ ରହିଲେ ଶ୍ରୀରାମ, ଜୟରାମ, ବୋଧରାମ, ଏନ୍.ରାମ ତଥା ବିଶ୍ରାମ ଆଦି ନାମ ସୃଷ୍ଟି ହୁଏ ।

ପୁଅ ନାମର ଆଗ ପଛରେ କେଉଁଠି 'ରାମ' ରହିଲେ ଉଭୟ ଇହ ଓ ପରଲୋକରେ ଫାଏଦା । ମରିବା ପୂର୍ବରୁ ପୁଅକୁ ଡାକିଲେ ମହାଶାନ୍ତିରେ ଗୁପ୍ତଧନ ବାଣ୍ଟିହୁଏ । ପୁଣି ପରଲୋକରେ ସ୍ୱର୍ଗ ଗମନ ପାଇଁ ପାସପୋର୍ଟ ବି ମିଳେ । ବୁଦ୍ଧିଜୀବିର ଖ୍ୟାତି ପ୍ରାପ୍ତି ଲୋଭରେ ନିଜକୁ ନାସ୍ତିକ ଘୋଷଣା କରୁଥିବା ଧର୍ମଭିରୁଗଣଙ୍କର ତ ଏଥିରେ ବିଶେଷ ଲାଭ । ନିଜ ପୁଅର ନାଁ ଧରି ଡ଼ାକିଲେ କୌଣସି ନାସ୍ତିକ ବୁଦ୍ଧିଜୀବି ତାଙ୍କୁ ଆକ୍ଷେପ କରି ପାରିବେ ନାହିଁ, 'ତୁମେ ଆସ୍ତିକ ଅଟ ଅର୍ଥାତ ଧର୍ମ ନିରପେକ୍ଷ ନୁହଁ ।' ଫଳରେ ଦୋମୁହାଁ ବୁଦ୍ଧିଜୀବି ମହାଶୟଙ୍କୁ ଇହଲୋକରେ ଧର୍ମ ନିରପେକ୍ଷର ସମ୍ମାନ ପ୍ରାପ୍ତି ଏବଂ ପରଲୋକରେ ସ୍ୱର୍ଗପ୍ରାପ୍ତି ହେବା ନିଶ୍ଚିତ ।

ଅଦାଲତରେ ଦାମି ଓକିଲ ଯେମିତି ପଇସା ବଳରେ ହତ୍ୟାକାରୀକୁ ନିର୍ଦ୍ଦୋଷ ପ୍ରମାଣିତ କରେ, ପରଲୋକରେ 'ରାମ' ଅଜାମିଳ ପାପୀ ଆଦିଙ୍କୁ ସେମିତି ନିଷ୍ପାପ ଘୋଷଣା କରୁଥିବାର ନଜିର ଆମେ କିଛି ବେଳ ଆଗରୁ ପାଇଲେ । ଏବେ ଦେଖାଯାଉ ଇହଲୋକରେ କେମିତି 'ରାମ' ଛୋଟକାଟର ପାପ କ୍ଷୟ ନିମିତ୍ତ କାର୍ଯ୍ୟରେ ଆସୁଛି । ଏଥିପାଇଁ 'ରାମ'କୁ ଧର୍ମ ଏବଂ ଆଧ୍ୟାତ୍ମିକତା ମଧ୍ୟରେ ଆବଦ୍ଧ ନ ରହି, ଅବଶ୍ୟ ଗଣିତରେ କହୁଣି ପଶେଇବାକୁ ପଡ଼ିଛି । ହଜାରେ ପ୍ରକାର ରାଷ୍ଟ୍ରାୟତ୍ତ ବେଙ୍କକୁ କାନ୍ଧେଇ ଦେଶ ଏକବିଂଶ ଶତାବ୍ଦୀର କବାଟ ଠକ୍ ଠକ୍ କରୁଥିବା କଥା ସତ । ମାତ୍ର ଏହା ବି ସତ ଯେ ରାଷ୍ଟ୍ରାୟତ୍ତ ବେଙ୍କ ଏବଂ ବିଶ୍ୱବେଙ୍କ ସାଙ୍ଗରେ ତାଳ ମିଳାଇ ସୁଧଖୋର  ମହାଜନ ମଧ୍ୟ ବଂଶ ବିସ୍ତାର କରି ଚାଲିଛି । ଅନେକ ଦେଖିଥିବେ ମାସରେ ଟଙ୍କାକୁ ଅଣେ ସୁଧରେ ଋଣ ଦେଲାବେଳେ ଗାଁ ମହାଜନ 'ରାମ' ରୁ ଗଣିବା ଆରମ୍ଭ କରେ । ତେଣିକି ଦୁଇ ତିନି - କରି ଆଗକୁ ବଢ଼େ । ଖାତକର ବୁଝିବା ପାଇଁ ଏଠି 'ରାମ' ମାନେ ହେଲା 'ଏକ' । ମହାଜନ ନିମନ୍ତେ କିନ୍ତୁ 'ରାମ'ର ବିଶେଷ ଅର୍ଥ ରହିଛି । 'ରାମ' ତା ହାତରେ ଏକ ପ୍ରକ୍ଷେପାସ୍ତ୍ର, ଯାହାକି ପ୍ରତିଟି ସୁଧାର୍ଜିତ ପାପର ମୂଳକୁ ମୂଷା ପରି ଟିକ୍ ଟିକ୍ କରି କାଟିପକାଏ । ସୁଫଳ ସ୍ୱରୂପ ଇହଲୋକରେ ଅର୍ଥ ଚୋରୀ, ବନ୍ଧ୍ୟା ଦୋଷ, ପେଟ ବ୍ୟଥା, ଖୁଜୁଲି ଆଦି ଛୋଟକାଟର ଶାସ୍ତି ସବୁ ତାକୁ ଅଧା ରାସ୍ତାରୁ ବାଟ ଛାଡ଼ନ୍ତି ।

ଶୃଙ୍ଗାର ରସରେ ମଧ୍ୟ 'ରାମ'ର ବ୍ୟବହାର ସଂକ୍ରାନ୍ତୀୟ ଏକ ଚମକପ୍ରଦ ତଥ୍ୟ ନିକଟରେ ଆବିଷ୍କୃତ ହୋଇଛି । ଗବେଷକ ଏଥିପାଇଁ ନୂଆ ନୂଆ ପ୍ରେମ କରୁଥିବା ପ୍ରେମୀଯୁଗଳଙ୍କୁ ଅନୁଧ୍ୟାନ କରିବା ପାଇଁ ପରାମର୍ଶ ଦେଇଛନ୍ତି । ପ୍ରେମିକ ନିଜ ବାହାଦୁରୀର ପୁନରାବୃତ୍ତି କଲାବେଳେ, ପ୍ରେମିକା କୁଆଡ଼େ ଆଶ୍ଚର୍ଯ୍ୟ ସୂଚକ ଅଭିବ୍ୟକ୍ତି ରୂପରେ 'ହେ ରାମ' ଶବ୍ଦ ଉଚ୍ଚାରଣ କରେ । ଏଥିରୁ ତାର ଦଶରଥ ପୁତ୍ର ପୁରୁଷୋତ୍ତମ ରାମ ପ୍ରତି ଭକ୍ତିଭାବ ଜାଗ୍ରତ ହେବା ପରିବର୍ତ୍ତେ, ବାହାଦୁରିଆ ପ୍ରେମିକର ବେମତଲବ କାହାଣୀ ଶୁଣିବାର ପ୍ରବଳ ଇଚ୍ଛା ଥିବା କଥା ସ୍ପଷ୍ଟ ହୁଏ । ଅର୍ଥାତ 'ହେ ରାମ' ପ୍ରେମୀ ଯୁଗଳ ମଧ୍ୟରେ ଫୁଲି ଉଠୁଥିବା ପ୍ରେମର ବୀଜକୁ ଅଙ୍କୁରିତ ହେବାରେ ସହାୟକ ସିଦ୍ଧ ହୁଏ ।

'ରାମ'ର ବହୁମୁଖୀ ପ୍ରତିଭାକୁ ଦୃଷ୍ଟିରେ ରଖି ଏବେ କେତେ ବର୍ଷ ହେଲା ଅତି ଆଶାବାଦୀ ଜଣାକେତେ ରାମ ପ୍ରେମୀ ଗବେଷକ ଦେଶର ଅନ୍ଧକାରମୟ କ୍ରୀଡ଼ା କ୍ଷେତ୍ରରେ ମଧ୍ୟ ଏହାର ସଦୁପଯୋଗ କଥା ଚିନ୍ତା କରୁଛନ୍ତି । ଏଥିରେ ସେମାନଙ୍କର ପ୍ରେରଣାଦାତା ହେଲେ ବୀର ହନୁମାନ । ସଙ୍ଗୀତଜ୍ଞ ଅନୁପ ଜ୍ୱଲୋଟା ପରିବେଷିତ 'ରାମ୍ ସେ ବଡ଼ା ରାମ୍‌କା ନାମ'

କେସେଟରୁ ସର୍ବବିଦିତ ଯେ 'ରାମ ରାମ' ଉଚ୍ଚାରଣ କରି ହନୁମାନ ଅକ୍ଲେଶରେ ସାତ ସମୁଦ୍ର ଡେ଼ଇଁ ପାରିଥିଲେ । ହାୟ ! ହନୁମାନ ଆଜି କେଉଁଠି ରାମାୟଣ ପାରାୟଣ ଶୁଣିବାରେ ନିମଗ୍ନ, ନୋହିଲେ ଲମ୍ବାଡିଆଁ ଉଚ୍ଚାଡିଆଁ ଖେଳରେ କିଛି ନହେଲେ କୋଚ୍ ଭାବରେ ଦ୍ରୋଣାଚାର୍ଯ୍ୟ ପୁରସ୍କାର ନେଇଥାନ୍ତେ । ମାତ୍ର କ୍ରୀଡ଼ାପ୍ରେମୀଙ୍କୁ ହନୁମାନ ସେବା ଉପଲବ୍‌ଧ ନହେଲେ କ'ଣ ହେଲା, ସମୁଦ୍ର ଡିଆଁରେ ତାଙ୍କୁ ସାହାଯ୍ୟ କରିଥିବା 'ରାମ' ନାମ ତ ଅଛି । ଉପରୋକ୍ତ ଶ୍ରେଣୀର ଗବେଷକଙ୍କ ପରାମର୍ଶ (ସମୟ ଆସିଲେ 'ଆଦେଶ' ବି ହୋଇପାରେ) । କେବଳ ଉଚ୍ଚା ଓ ଲମ୍ବାଡିଆଁ କାହିଁକି ସମସ୍ତ ଖେଳର ପ୍ରାରମ୍ଭରେ ହନୁମାନ ପଥ ଅନୁସରଣ କରି ଆମ ଖେଳାଳିଗଣ ପାଟିରେ 'ରାମ' ନାମ ନିଅନ୍ତୁ, ଦେଖିବେ ନିଶ୍ଚୟ ବିଶ୍ୱ ବେଙ୍କ ଋଣ ପରି କେତେ ବର୍ଷରେ ଆମ ପାଖରେ କୁଢ଼ କୁଢ଼ ଅଲିମ୍ପିକ ସ୍ୱର୍ଣ୍ଣପଦକ ଜମା ହୋଇଯିବ ।

ରାମ ପ୍ରେମୀ ଗବେଷକ ପ୍ରସୂତ ଉପରୋକ୍ତ ଯୋଜନା ଯଦି ଫଳପ୍ରଦ ହୁଏ, ବହୁ ପରିମାଣରେ 'ରାମ' ବିଦେଶକୁ ମଧ୍ୟ ରପ୍ତାନୀ ହେବାର ଉଜ୍ଜ୍ୱଳ ସମ୍ଭାବନା ରହିଛି । ତେଣିକି ଅଲିମ୍ପିକ ପଦକ ଲୋଭୀ ବିଦେଶୀ ଖେଳାଳୀମାନଙ୍କୁ ବିଷାକ୍ତ 'ଡ୍ରଗ୍‌ସ' ଭକ୍ଷଣର ଆବଶ୍ୟକତା ରହିବ ନାହିଁ । ଚାରିଥର ପାଟିରେ 'ରାମ' ନାମ ନେଲେ, ସେମାନେ ଖେଳର ରେକର୍ଡ଼ ଭାଙ୍ଗି ପାରିବେ; ଡାକ୍ତର ଦ୍ୱାରା ଧରା ମଧ୍ୟ ପଡ଼ିବେ ନାହିଁ । ଫଳରେ କ୍ରୀଡ଼ା ଜଗତ ସାଙ୍ଗରେ ଦେଶର ଅର୍ଥ ବ୍ୟବସ୍ଥାକୁ ବି ସୁଦୃଢ଼ କରିବାରେ 'ରାମ' ରପ୍ତାନୀର କ୍ରମବର୍ଦ୍ଧିଷ୍ଣୁ ପରିମାଣ ଗନ୍ଧମାର୍ଦ୍ଦନସ୍ଥ ବିଶଲ୍ୟକରଣୀ ତୁଲ୍ୟ ସହାୟକ ହେବ ।

ଦେଶର ଏକତା ଓ ଅଖଣ୍ଡତା ରକ୍ଷା ତଥା ଜାତୀୟ ସଂହତି ସୃଷ୍ଟି ନିମନ୍ତେ ଆଜି ଦେଶୀ ରାଷ୍ଟ୍ରପିତାଠାରୁ ଆରମ୍ଭ କରି ବିଦେଶୀ ରାଷ୍ଟ୍ରପତି ପର୍ଯ୍ୟନ୍ତ ସମସ୍ତେ ଚିନ୍ତିତ । ଗବେଷଣା ଲବ୍‌ଧ କୌଣସି ଆବିଷ୍କାର ଓ ଉଦ୍ଭାବନ ଯଦି 'ଏକତା, ଅଖଣ୍ଡତା' ପାଇଁ ପ୍ରଯୁଜ୍ୟ ନୁହେଁ, ତାର ସ୍ଥାନ କୁଡ଼ାଦାନ ବୋଲି ଲୋକେ ସ୍ୱୀକାର କଲେଣି । ଏହି ପରିପ୍ରେକ୍ଷୀରେ ଆଜି ପ୍ରଶ୍ନ ଉଠେ, 'ରାମ'ର କି ଉପଯୋଗ? ସୁଖର କଥା, ପୂର୍ବୋକ୍ତ ରାମପ୍ରେମୀ ଗବେଷକଯୁଥ ବହୁ ଅଧ୍ୟୟନ ପରେ ଆମକୁ ଏକ ଆସ୍ତିବାଚକ ଉତ୍ତର ଦେବାରେ ସମର୍ଥ ହୋଇଛନ୍ତି । ଏଠି ମଧ୍ୟ ହନୁମାନ ହେଲେ ସେମାନଙ୍କ ଉତ୍‌ପ୍ରେରକ । ନିକଟ ଅତୀତରେ 'ଦୂରଦର୍ଶନ'ରୁ ରାମାୟଣ ଦେଖିଥିବା ଲୋକଙ୍କର ମନେଥିବ, ସୀତାନ୍ୱେଷୀ ରାମର ଦୂତ, ବୀର ହନୁମାନ ଲଙ୍କାସ୍ଥ ଅଶୋକ ବନରେ ପହଞ୍ଚିଥିଲେ ଏବଂ ସୀତାହର୍ତ୍ତା ରାବଣର ଅନିଷ୍ଟ ସାଧିବାକୁ ଯାଇ ବନରେ ନିଆଁ ଲଗେଇଦେଲେ । (ବି·ଦ୍ର· ଗବେଷଣା ନିବନ୍ଧରେ ଜ୍ଞାନର ଏକମାତ୍ର ସ୍ରୋତ ରୂପେ ଖ୍ୟାତିପ୍ରାପ୍ତ 'ଦୂରଦର୍ଶନ'ର ବାରମ୍ବାର ଉଲ୍ଲେଖ ଅତି ଆବଶ୍ୟକ) । ପ୍ରଥମେ ଅଶୋକ

ବନର କଷା ଆମ୍ବ, ପଣସ ଗଛସବୁରେ କିଆଁ ଧରୁ ନଥିଲା । ମାତ୍ର ହନୁମାନ 'ରାମ-ରାମ' କହନ୍ତେ ଯୌତୁକ ଆଣିବାରେ ଅର୍ଦ୍ଧ-ସଫଳ ନବବିବାହିତା ବୋହୂ ପୋଡ଼ିଲା ପରି, ଗଛ ସବୁ ଦୂର୍‌ଦାର୍ ପୋଡ଼ିଗଲେ । ପୋଷ୍ଟମଟମ ପାଇଁ ଆବଶ୍ୟକ ତାଙ୍କର ଟାକୁଆ ହାଡ଼ ଟିକେ ବି ରହିଲା ନାହିଁ । ଗବେଷକଙ୍କର ଦୃଢ଼ ବିଶ୍ୱାସ, 'ରାମ'ର ଉପରୋକ୍ତ ଗୁଣ ଆଧାରରେ ରାଜନେତା ଓ ପୋଲିସଗଣ ସ୍ୱ ସ୍ୱ ଗୁପ୍ତଚର ସଙ୍ଘକୁ ତାଲିମ ଦେଲେ ସଫଳତାର ସହ ଗୁପ୍ତଚରଗଣ ପଡ଼ୋଶୀ ଦେଶରେ ବିଖଣ୍ଡତା ଓ ବିଶୃଙ୍ଖଳା ସୃଷ୍ଟି କରି ପାରିବେ । କାରଣ ନିଜ ଅଖଣ୍ଡତା ଓ ଶୃଙ୍ଖଳା ରକ୍ଷା ନିମିତ୍ତ ପଡ଼ୋଶୀ ରାଜ୍ୟରେ ବିଖଣ୍ଡତା ଓ ବିଶୃଙ୍ଖଳା ସୃଷ୍ଟି ନିହାତି ଆବଶ୍ୟକ । ଏହି ସୂତ୍ରରେ ପଡ଼ୋଶୀ ଆମ ଦେଶକୁ ମାରିଚ, ସୂର୍ପଣଖା ଆଦିଙ୍କୁ ପଠାଉ ନାହିଁକି? (ବି·ଦ୍ର·: ଏହି ଦୃଢ଼ୋକ୍ତି ପାଇଁ ଲେଖକ ଦୂରଦର୍ଶନ ସମାବାର ପ୍ରତି ନିଜର ଆଭାର ପ୍ରକଟ କରେ ।) ତେଣୁ କରି ଲଙ୍କାଗଡ଼ ପୋଡ଼ି ଛାରଖାର ହେଲାପରେ ଯାଇ ରାମଙ୍କର ବାନରସେନା ମନରେ ଏକତା, ଅଖଣ୍ଡତା, ଦେଶଭକ୍ତି ଓ ଜାତୀୟ ସଂହତିଭାବ ଛ' ମାସକୁ ଥରେ ରେଲଭଡ଼ା ପରି ବୃଦ୍ଧି ପାଇଥିଲା ।

ପରଲୋକରେ ଆତ୍ମାର ସଦ୍‌ଗତି ହୁଏ ମୋକ୍ଷରେ । ଏଥିନିମିତ୍ତ 'ରାମ' ସହାୟକ ହେଉଥିବା କଥା ଆମେ ପୂର୍ବରୁ ଆଲୋଚନା କରିଛେ । ଏବେ ପ୍ରଶ୍ନଉଠେ ମୋକ୍ଷଦାତା 'ରାମ'ର ଇହଲୋକରେ ମୋକ୍ଷପ୍ରାପ୍ତି ହେବ କେମିତି? ଧର୍ମ, ଆଧ୍ୟାତ୍ମିକତା, ଗଣିତ, ଅର୍ଥଶାସ୍ତ୍ର ତଥା କ୍ରୀଡ଼ା ଜଗତରେ 'ରାମ'ର ପ୍ରବେଶ ଏବଂ ତଦନ୍ତରେ ଉପଯୋଗ ମୋକ୍ଷ ଦିଗରେ ତାକୁ ପାଦଟିଏ ଆଗେଇ ନେବ ସିନା, ମୋକ୍ଷ ଦେଇପାରିବ ନାହିଁ । ତେଣୁ ମୋକ୍ଷ ପାଇଁ ବାଧ୍ୟ ହୋଇ 'ରାମ' ରାଜନୀତିର ଆଶ୍ରୟରେ, କାରଣ ସମସ୍ତ ପ୍ରାଣୀର ଇହଲୋକିଆ ମୋକ୍ଷ ପାଇଁ ରାଜନୀତି ହିଁ ଏକମାତ୍ର ବିକଳ୍ପ । ଏପରିକି ବିଜ୍ଞାନ, ଗଣିତ, ଅର୍ଥନୀତି ଆଦି ବିଷୟ ପ୍ରସଙ୍ଗଗୁଡ଼ିକର ମଧ୍ୟ ରାଜନୀତିକ ଅନ୍ତକରଣ ନ ହେବାଯାଏଁ ଗତି ନାହିଁ । ଏ ହେଲା ସମୟର ଆହ୍ୱାନ, ଯୁଗର ଡାକରା ! ଅବଶ୍ୟ ଆହ୍ୱାନକୁ ସାଦରେ ଗ୍ରହଣ କରି 'ରାମ' ଆଜି ରାଜନୀତିର ଅଭିନ୍ନ ଅଙ୍ଗ ପାଲଟି ଗଲେଣି । ଏମିତି ବି ତ୍ରେତୟା ଯୁଗରେ ରାମ ରାଜପରିବାରରେ ଜାତ; ରାଜନୀତିକୁ ତାଙ୍କର କି ଡର?

ରାଜନେତା ହିସାବରେ କଳିଯୁଗରେ 'ରାମ' ଦଳ ଗଠନ କଲେଣି । ଯେଉଁମାନେ ତାଙ୍କର ଦଳର ସଭ୍ୟ, କେବଳ ସେମାନେ ହିଁ ସମାଜରେ ସଭ୍ୟ; ବାକୀ ମାନେ ଅସଭ୍ୟ । ଯେଉଁମାନେ ରାମ ଧର୍ମୀ, କେବଳ ସେମାନେ ହିଁ ଧର୍ମୀ, ବାକୀମାନେ ବିଧର୍ମୀ । 'ରାମ' ରାଜନୀତିର ଏ ହେଲା ମୂଳ ନୀତି । ଧର୍ମ ସଂସ୍ଥାପନ, ସନ୍ଥ ପରିପାଳନ, ଅସଭ୍ୟ ଓ

ଅସଭ୍ୟତାର ମୂଳୋତ୍ପାଟନ ତ ରାମଙ୍କର ଯୁଗେ ଯୁଗେ କର୍ତ୍ତବ୍ୟ ହୋଇ ରହି ଆସିଛି; ବିଂଶ ଶତାବ୍ଦୀରେ ବା ସେ କର୍ତ୍ତବ୍ୟଚ୍ୟୁତ ହେବେ କେମିତି? ତେଣୁ ତାଙ୍କ ଦଳ ସଭ୍ୟର ଲଢ଼େଇ ଅସଭ୍ୟ ବିରୁଦ୍ଧରେ; ରାମଭକ୍ତର ଧାରୁଆ ତ୍ରିଶୂଳ ରାମ-ବିଭକ୍ତ ଓ ଆରାମ ଭକ୍ତ ଉଦ୍ଦେଶ୍ୟରେ; ରାମଧର୍ମୀର ଘୃଣା ବିଧର୍ମୀ ଆଡ଼େ । ଦଳର ଆହ୍ୱାନରେ ଆଜି ପାଦରୁ ମୁଣ୍ଡଯାଏ ରାମ ଲେଖି ବୁଲୁଥିବା କିମ୍ବା କୋଠ ମଠରେ ରହି ଭୋଗ ଖାଉଥିବା ପ୍ରତ୍ୟେକ 'ରାମ' ଭକ୍ତ ଖଞ୍ଜଣୀ ଛାଡ଼ି ହାତୁଡ଼ି ଓ ଲୁହାରଡ଼ ମୁଣ୍ଡାଇବାକୁ ବାଧ୍ୟ, ଶହ ଶହ ବର୍ଷର ପୁରୁଣା ଲଙ୍କାଗଡ଼ ଭାଙ୍ଗି ଧୂଳିସାତ୍ କରିବାକୁ କୃତସଂକଳ୍ପ ।

ଏ ଯୁଦ୍ଧ ଧର୍ମର ଯୁଦ୍ଧ, ସଭ୍ୟର ଯୁଦ୍ଧ, (ରାଜ)ନୀତିର ଯୁଦ୍ଧ । ଯେଉଁ ବିଧର୍ମୀ, ଅନୀତିବାନ ଅସଭ୍ୟଗଣ ଏ ଯୁଦ୍ଧ ବିରୁଦ୍ଧରେ ସ୍ୱର ଏବଂ ବେଳ ପାଇଲେ ହାତ ଓ ଲାତ ଉତ୍ତୋଳନ ପାଇଁ ମନ୍ତ୍ରଣା କରୁଛନ୍ତି, ସେମାନଙ୍କର ବୁଝିବା ଉଚିତ ଯେ ଏହା ଯୁଗର ଆହ୍ୱାନ, ସମୟର ଡାକରା । କାଳ ସହିତ ତାଳ ମିଳାଇ ସେମାନେ ଯଦି ବିଭୀଷଣ ପରି 'ରାମ' ଦଳରେ ଯୋଗ ଦେଇ ନ ପାରିବେ, ଅତିକମ୍‌ରେ ମନ୍ଦୋଦରୀ ପରି ଚୁପ୍ ରହନ୍ତୁ, ଅଥବା କୁମ୍ଭକର୍ଣ୍ଣ ଭଳି ଛ ମାସ ଶୋଇ ପଡ଼ନ୍ତୁ । ସେଥିରେ ହିଁ ସେମାନଙ୍କର ମଙ୍ଗଳ, ଜଗତର ମଙ୍ଗଳ । ଅନାୟାସରେ ପାଟି କରି ହତ ବା ଆହତ ହେଲେ, ଆଗାମୀ ଯୁଗର କବି ସେମାନଙ୍କୁ ଅସଭ୍ୟତାର ପ୍ରତୀକ ଦଶମୁଣ୍ଡିଆ ରାକ୍ଷସ ରାବଣ ସଙ୍ଗେ ତୁଳନା କରି ବ୍ୟଙ୍ଗ କବିତା ଲେଖିବେ ସିନା, ମୋକ୍ଷ ଦେବେ ନାହିଁ ।



# ଅବେଳିଆ ସକାଳ ଓ ସଦାବେଳିଆ ଦେବଗଣ

ଶୀଘ୍ର ହେଉ ମାତ୍ର ଚା' ନ ଛଲକୁ ଢଙ୍ଗରେ ଲକ୍ଷ୍ମୀ କପକୁ ପଲଙ୍ଗ ବାହିରେ ରଖିଲେ, ଝରକା ପରଦାଗୁଡ଼ିକୁ ଖର୍‌ର ଖର୍‌ର କରି ଏପାଖ ସେପାଖ ଟାଣିଲେ, ଦୁଇଥର ଟେବୁଲ କ୍ଲଥକୁ ବି ଝାଡ଼ିଲେ, ତଥାପି ଭଗବାନ ଉଁ କି ଚୁଁ ନ କରିବାରୁ ସାମନ୍ୟ ବଡ଼ ପାଟିରେ ଚାକର ଟୋକାଠାରୁ ଶୋଇବା ଘର ଦୁଇଦିନ ହେଲା କାହିଁକି ଝାଡୁ ମରା ହୋଇ ନାହିଁ ତାର ଜବାବ ଚାହିଁଲେ । ହେଲେ ଭଗବାନ ପାଛୁଡ଼ା ଘୋଡ଼ି ହୋଇ ଶୋଇଛନ୍ତି ଯେ ଶୋଇଛନ୍ତି । କିଛି ସୋର୍ ଶବ୍ଦ ନାହିଁ । ହେଲା କ'ଣ? କାଲି ତ କେଉଁ ବାତ୍ୟା ବିଧ୍ୱସ୍ତ ଅଞ୍ଚଳ ପରିଦର୍ଶନରେ ଯାଇ ଡେରିରେ ଫେରି ନାହାନ୍ତି; ଦେବ ସଭାରେ ବଜେଟ ପେସ କରିବା ଚିନ୍ତାରେ ଅଧ ରାତିଯାଏ ଉନିଦ୍ରା ରହି ନାହାନ୍ତି; ନିକଟରେ ଅଭିଶାପ ପାଇ ମର୍ତ୍ତ୍ୟକୁ ଯାଇଥିବା ଗନ୍ଧର୍ବ ଜଣକ ବି ତାଙ୍କ କୁକର୍ମ ବଖାଣିବାର ଧମକ ଦେଇ ନାହିଁ । ତେବେ ଏତେବେଳ ଯାଏଁ ଭଗବାନଙ୍କ ନିଦ ଭାଙ୍ଗୁ ନାହିଁ କାହିଁକି? ନା'ମ ସୁଖନିଦ୍ରା ଯାଇଥିବେ । ଲକ୍ଷ୍ମୀ ନିଜକୁ ନିଜେ ସାନ୍ତ୍ୱନା ଦେଲେ । ମାତ୍ର ପର ମୁହୂର୍ତ୍ତରେ ମନ ପୁଣି ନ ମାନିବାରୁ ପାଛୁଡ଼ାଟିକୁ ଭଗବାନଙ୍କ ମୁଣ୍ଡରୁ କାଢ଼ି ଦେଇ କହିଲେ, 'ଏ ଶୁଣୁଛ ! ଚା ଥଣ୍ଡା ହେବ ଯେ !'

- ହଁ ପିଉଛି । ଭଗବାନଙ୍କ ସଂକ୍ଷିପ୍ତ ଉତ୍ତର, ନିଦ୍ରା ଯାଇ ନଥିଲେ ତାହେଲେ ସେ । ତାଙ୍କ ଓଜନିଆ କଣ୍ଠ, ପାଚିଲା ଲଙ୍କା ପରି ଆଖି ଆଉ ଫୁଲିଲା ମୁହଁ ଦେଖି ମନେହେଲା ସେ ରାତିସାରା ଶୋଇ ପାରି ନାହାନ୍ତି, ଘୋର ଦୁଶ୍ଚିନ୍ତା ଭିତରେ ଗତି କରୁଛନ୍ତି ଏବଂ ଟିକି ଟିକି କଥାରେ ଚିଡ଼ି ଯାଇ ପାରନ୍ତି ।

ଲକ୍ଷ୍ମୀ ମନ ଦୁଃଖ କଲେ । କେଡ଼େ ସୁନ୍ଦର ସକାଳ । ବର୍ଷା ଛାଡ଼ି ଯାଇଛି । ବାଦଲ, ଫୁଟବଲ ଖେଳର ଗୋଲକିପର ପରି, ସୂର୍ଯ୍ୟର ବାଟ ଓଗାଳିବା ପାଇଁ ଦୃଢ଼ସଂକଳ୍ପ । ରାତି ସାରା ସ୍ୱଇଚ୍ଛାରେ ପାଳିଗୁଲିଆ କରି ଡ୍ୟୁଟିରେ ଥିବା ଝିଂକାରୀ ଦୁଇଟି ବି ନିଜ ବସାକୁ

ଆରାମ କରି ଗଲେଣି । ଏପଟେ ଗଂଜା କୁକୁଡ଼ାଟି 'ଏଇଥରକ ଡାକିବି, ଉଠିବ ତ ଉଠ, ନୋହିଲେ ପରେ ମୋର ଆଉ ଦୋଷ ଦେବ ନାହିଁ', କହି ଶେଷଥର ପାଇଁ 'କକରେ କ...' କରି ଗଲାଣି । ଏଭଳି ମନୋରମ ପାଗରେ ଭଗବାନ ଲକ୍ଷ୍ମୀଙ୍କୁ ଭିଡ଼ିଧରି ସ୍ୱହସ୍ତରେ ମୁଣ୍ଡରୁ ଉକୁଣୀ ବାଛିବା କଥା ଅଥବା ଲକ୍ଷ୍ମୀଙ୍କ ଶ୍ରୀହସ୍ତରେ ନିଜ ମୁଣ୍ଡର ଧଳା ବାଳ ଉପୁଡ଼େଇବା କଥା । ହେଲା କ'ଣ ?

ଲକ୍ଷ୍ମୀ ବି ଚୁପ କରି ବସିଲେ । ଏବେ ଆଗଙ୍କରି ଯଦି ମୁହଁ ଖୋଲିବେ ଭଗବାନଙ୍କ ଭାଉ ବଢ଼ିଯିବ । ହୁଏତ ଭାଉ ବଢ଼େଇବା ପାଇଁ ଭଗବାନଙ୍କ ଏ ଅବେଳିଆ ମୌନ ଅବତାର ।

ଭଗବାନ କିନ୍ତୁ ପୂର୍ବଭଳି ଗୁମସୁମ । କେତେବେଳେ ବାଁ ହାତରେ ଗାଲକୁ ରଖୁଛନ୍ତି ତ କେତେବେଳେ ଡାହାଣ ହାତରେ ମୁଣ୍ଡ ଆଉଁସୁଛନ୍ତି । ଦୁଷ୍ଚିନ୍ତାର ଭାର ଅନେକ ବେଶି ବୋଧେ! ସହିବା ଭଳି ହୋଇଥିଲେ ନିଜେ କହି ବସନ୍ତେଣି ସବୁ କଥା ।

ଲକ୍ଷ୍ମୀ ଆଉ ଧୈର୍ଯ୍ୟ ସମ୍ଭାଳି ପାରିଲେ ନି । ପଚାରିଲେ, 'ହେଲା କଣ ?' 'ନା କିଛି ନୁହେଁ । ଭଗବାନ ଯଦି 'କିଛି ହୋଇଛି' ବୋଲି କହିଥାନ୍ତେ, ଲକ୍ଷ୍ମୀ ଭାବିଥାନ୍ତେ କିଛି ହୋଇନି । କିଛି ହୋଇନି ଶୁଣି ଭାବିଲେ ନିଶ୍ଚୟ କିଛି ହୋଇଛି । ଅଦିନିଆ ଟମାଟୋର ଦାମ ଭଳି ଘଡ଼ିକୁ ଘଡ଼ି ଲକ୍ଷ୍ମୀଙ୍କ ଦୁଷ୍ଚିନ୍ତା ବଢ଼ିବାରେ ଲାଗିଲା ।

ଚୁପ ରହିଲେ କ'ଣ ସବୁ ଠିକ ହୋଇଯିବ ? କୁହ କ'ଣ ହୋଇଛି । ମତେ ନ କହିବ ଯଦି ଆଉ କାହାକୁ କହିବ ? ଜାଣିଲେ ସିନା ସମାଧାନ ପାଇଁ ଉପାୟ ପାଞ୍ଚିବା ।' ରୋଗୀକୁ ଡ଼ାକ୍ତର ସହଯୋଗ ମାଗିବା ସ୍ୱରରେ ଲକ୍ଷ୍ମୀ ଆଶ୍ୱାସନା ଦେଲେ ।

କାଲି ଶୁଣିଲି, ଲୋକଙ୍କ ବିଶ୍ୱାସ କୁଆଡ଼େ ତୁଟି ଯାଉଛି ମୋ ଉପରୁ । କାହାରି ଇଚ୍ଛା ନୁହେଁ ମୁଁ ଆଉ ଭଗବାନ ହୋଇ ରହେଁ ।' ସସପେନ୍‌ସର କଳା ପରଦାକୁ ଭଗବାନ ଏକାଥରକେ ଫରର୍ କରି ଚିରି ଦେଇ ପୁଣି ଗୁମସୁମ ହୋଇ ରହିଲେ ।

ମହାଲକ୍ଷ୍ମୀଙ୍କ ମୁଣ୍ଡ ଘାବରେଇ ଗଲା । ବାସ୍ତବିକ ଘୋର ଚିନ୍ତାର ବିଷୟ । ପିଲାଙ୍କ ପଢ଼ା ସରିନି । ଅମରାବତୀର କୋଠା ଘରଟା ତିଆରି ହେବାକୁ ଆଉ ବର୍ଷେ ଡେରି । ପୁଣି, ଭଗବାନ ପଦରୁ ଓହରିଲେ ବର୍ଷା ଦିନିଆ ବେଙ୍ଗ ଭଳି ଯାହିଁ ତାହିଁ ଶତ୍ରୁ । ହେଲେ ଏ ଘୋର ବିପତ୍ତି ବେଳେ ଧୈର୍ଯ୍ୟ ହିଁ ସବୁ କିଛି । ପତିଙ୍କ ଦୁଷ୍ଚିନ୍ତାରୁ କାଣେ ପସେ ଊଣା କରିବାକୁ ହେଲେ ଖବର ଦେବା ଲୋକ ଯିଏ ହେଉ ନା କାହିଁକି ତାକୁ ଏଇ ବେଳାବେଳି ଗାଳି ଦେବା ଜରୁରୀ ସ୍ଥିର କରି ପଚାରିଲେ, ଏ ଖବର ଶୁଣାଇଲା କିଏ ତୁମକୁ ?'

ଅନ୍ତର୍ଯ୍ୟାମୀ ଭଗବାନଙ୍କୁ ଅବା କେଉଁ କଥା ଅଜଣା ? ଏମିତି ଖବର ତ ଅନେକ

ସୂତ୍ରରୁ ମିଳିଥିଲା । ମାତ୍ର ସେଥିରେ କେବଳ ବ୍ରହ୍ମାଙ୍କ ନାମ ହିଁ ଲକ୍ଷ୍ମୀଙ୍କ ଚୂପ କରାଇ ପାରିବ । ଦେଢ଼ଶୁର ବୋଲି ଲକ୍ଷ୍ମୀ ନାଁ ବି ଉଚ୍ଚାରଣ କରି ପାରିବେ ନାହିଁ । ପତ୍ନୀଙ୍କ ମନୋଭାବକୁ ସେ ଠିକ ଠିକ ପଢ଼ି ନେଇ ଉତ୍ତର ଦେଲେ, 'ବ୍ରହ୍ମା' ।

ଆଜି କିନ୍ତୁ ଲକ୍ଷ୍ମୀଙ୍କ ପତି ପ୍ରେମ ଦେଢ଼ଶୁରଙ୍କୁ ଖାତର କଲା ନାହିଁ । ତାକୁ ଭାଷାରେ ରୂପ ଦେଇ କହିଲେ, 'କେତେଥର କହିଛି ବୁଢ଼ାଙ୍କ ଉପରେ ବିଶ୍ୱାସ କରିବା ଛାଡ଼ । ନିଦ ହେବନି । ଦୁଃସ୍ୱପ୍ନ ଦେଖିବେ । ଆଉ ସକାଳେ ଆସି କହିବେ ଅର୍ନ୍ତଦୃଷ୍ଟି ବଳରେ ଜାଣିଲେ ଲୋକଙ୍କ ଅବିଶ୍ୱାସ ବଢ଼ିଛି ।'

- କେତେଥର କହିଛି, ବ୍ରହ୍ମାଙ୍କୁ ବୁଢ଼ା କହିବ ନାହିଁ । ଚାକର ଟୋକାଟି ବରାବର ତାଙ୍କ ଘରକୁ ଯାଉଛି । କହିଦେଲା ଯଦି ? ଭଗବାନ ରାଗିଗଲେ ।

- ତୁମର ମୋ ଉପରେ ବିଶ୍ୱାସ ନାହିଁ । ଚାକର ଟୋକା ଉପରେ ଅବା ବିଶ୍ୱାସ ହେବ କେମିତି !

- ଆଉ ତୁମର? ଚାକର ଟୋକାଟିକୁ ଛାଡ଼ି ଆଉ କାହା ଉପରେ ବିଶ୍ୱାସ ଅଛି ବି ଏ ଦୁନିଆଁରେ ?

- ମୋର ସତୀତ୍ୱ ଉପରେ ଜମା ଆକ୍ଷେପ କରନି କହୁଛି । କଥା ଭଲ ହେବ ନାହିଁ । ଲକ୍ଷ୍ମୀ ରାଗରେ ତମ ତମ ।

ଆରେ ସତ କଥା ତ ! ଲକ୍ଷ୍ମୀଙ୍କ ସତୀତ୍ୱ ଉପରେ ତାଙ୍କ ଜମା ଆକ୍ଷେପ କରିବାର ନଥିଲା । ଚଢ଼ାଣି ପାର ହେଲା ମାଲ ବୋଝେଇ ଟ୍ରକ ଗିଅର ଚେଞ୍ଜ କଲାପରି ଭଗବାନ ନିଜକୁ ଯଥାସାଧ୍ୟ ଆୟତ୍ତରେ ଆଣିଲେ । 'ବ୍ରହ୍ମାଙ୍କୁ ଅବିଶ୍ୱାସ କଲେ ମତେ କ'ଣ ଦଇବ ସହିବ ? ମୋର ଗାଦି ପାଇଁ କେତେ ତ୍ୟାଗ ସେ ନ କରୁଛନ୍ତି! ଆବଶ୍ୟକ ହେଲେ ପରା ନିଜ ପତ୍ନୀଙ୍କ ବାହନଟିର ତଣ୍ଟି ଚିପି ଦେବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।'

ଲକ୍ଷ୍ମୀ ମଧ୍ୟ ପଶ୍ଚାତାପ କଲେ । ବ୍ରହ୍ମାଙ୍କୁ ଶୋଧା ଦେଇ ସେ ଭଲ କରି ନାହାନ୍ତି । ଏଥିରେ ନାଁ ଭଗବାନଙ୍କ ଦୁଷ୍ଚିନ୍ତା ଉଣା ହେଲା ନା ଦୁଷ୍ଚିନ୍ତାର କାରଣ ଜଣା ପଡ଼ିଲା । ଓଲଟି ଭାଇ ପ୍ରେମରେ ପଡ଼ି ଭଗବାନ ଯଦି ସବୁ ବ୍ରହ୍ମାଙ୍କ ଆଗରେ ବଖାଣି ବସିବେ କୁଳବୋହୂର ଆଉ କି ମର୍ଯ୍ୟାଦା ମିଳିବ ତାକୁ ? କଥାର ଖିଅକୁ ମଝି ଧରସାକୁ ଟାଣି କହିଲେ, 'ରୋଜ ତ ବୁଆ ଦେବଗଣ କହୁଛନ୍ତି, କୁଆଡ଼େ ତୁମର ପ୍ରଶଂସା, ପ୍ରଶସ୍ତି, ଭଜନ କୀର୍ତ୍ତନରେ ମର୍ତ୍ତ୍ୟଟା ସାରା ଦୁଲୁକୁଛି । ଭଜନର ଭାର ଉଛୁଳି ପଡୁଛି ବୋଲି କୁଆଡ଼େ ସେମାନଙ୍କୁ ବି ମିଳି ଯାଉଛି ବେଳେ ବେଳେ । ଭଜନ ଶୁଣି ଶୁଣି ତ ମୋର ବି କାନ ଅତଡ଼ା

ପଡ଼ିଗଲାଣି । ଆଉ ଏଆଡ଼େ କହୁଛ କ'ଣ ନା ଲୋକଙ୍କ ଆସ୍ଥା ନାହିଁ ।'

- ଛାଡ଼ ଛାଡ଼ । ସେ ଦେବଗଣ ଯେମିତି କି ସେ ଭଜନବାଲା ବି ସେମିତି । ଭଜନ ବାଲା ଭଜନ ସାରି ମତେ ଗାଳି ଦେବା କଥା ଗାଳି ଦେଉଛନ୍ତି ଆଉ ଦେବଗଣଙ୍କ ମତେ ସୁହାଇଲା ଭଳି ଖବର ଦେବା କଥା, ସେମାନେ ଖବର ଦେଉଛନ୍ତି ।

ଭଗବାନଙ୍କ କଥାକୁ ଦାଂପତ୍ୟ ପ୍ରେମଠାରୁ ବି ଅଧିକ ନିଜସ୍ୱ ମନେ କରି ଲକ୍ଷ୍ମୀ କହିଲେ, 'ଟିକିଏ ଧୀର ପାଟିରେ କୁହ । ଆଉ କେହି ଶୁଣିବେ ।'

ରନ୍ଧାଘରେ ବାସନ ମାଜୁଥିବା ଚାକର ପିଲାଟି ପ୍ରତି ଭଗବାନ ନଜର ଦେଇ ତୁରନ୍ତ ପାଟି ଧୀର କଲେ, 'କହିବାକୁ ପରା ଲାଜ, ଗଞ୍ଜେଇ ଭାଙ୍ଗର ଆୟାତ ନ ବଢ଼ିଲେ ଭଜନ ବାଲା କୁଆଡ଼େ ଭଜନ ବନ୍ଦ କରି ଦେବାକୁ ଧମକି ଦେଲେଣି । ଏ ପଟେ ଦେବଗଣ କହିଲେଣି, ଭଗବାନଙ୍କୁ ଛାଡ଼ି ଆମର ନାମ କୀର୍ତ୍ତନ କର ।'

ଭଗବାନଙ୍କ ପାଟି ଉଣା ନ ହେଉଣୁ ଲକ୍ଷ୍ମୀ ବଡ଼ ପାଟିରେ କହିଲେ, 'କେତେଥର କହିଛି ଦେବତାଙ୍କ ଉପରେ ଭରସା ନାହିଁ । କିଏ ତାଙ୍କୁ ଦେବରୁ ମହାଦେବ କରିଦିଏ ଯଦି ସେମାନେ ପରା... (ବିଶେଷ ଶ୍ରୁତିକଟୁ ଶବ୍ଦ ସ୍ଥାନରେ ସାମାନ୍ୟ ଶ୍ରୁତିକଟୁ ଶବ୍ଦଟିଏ ରଖିବାରେ ଲକ୍ଷ୍ମୀ ବିଫଳ ହେବାରୁ ବାକ୍ୟଟିକୁ ତଟ୍ ତଟ୍‌ରେ ସମାପ୍ତ କରିବାକୁ ବାଧ୍ୟ ହେଲେ) । ବାକୀ କଥା ତ ଛାଡ଼ । ସମସ୍ତେ ଲାଗିଛନ୍ତି ନିଜ ନିଜର ସ୍ୱାର୍ଥ ପାଇଁ ଆଉ ଯେ' ଲାଗିଛନ୍ତି ସମସ୍ତଙ୍କ ସ୍ୱାର୍ଥ ପାଇଁ । ମୁଁ ହେଲେ କୁଆଡ଼କୁ ହେବି?' ଯେମିତି କେଉଁ ତୃତୀୟ ପୁରୁଷ ବିରୋଧରେ ସେ ଭଗବାନଙ୍କ ଆଗରେ ଫେରାଦ ହେଉଥାନ୍ତି ।

ଭଗବାନ କହିଲେ, 'ଏ ବିପତ୍ତି ବେଳେ ମୋର ଖାଲି ସମାଲୋଚନା କରିବ ନା ଉପାୟ କଥା ବି ଚିନ୍ତା କରିବ?'

ଚା'ଟା ପାଟିରେ ଦେବାକୁ କେତେବେଳୁ ଲକ୍ଷ୍ମୀଙ୍କ ମନ ଡାକିଲାଣି । କିନ୍ତୁ ଭଗବାନଙ୍କ ଆଗରୁ ହେଲେ କେମିତି ପିଇବେ? ଏବେ ଉଭୟ ପତିଭକ୍ତି ଏବଂ ପିଇବାର ଇଚ୍ଛାକୁ ପକ୍ଷପାତ ନ କରି ପରାମର୍ଶ ଦେଲେ, 'ଆଗ ଚା'ଟା ପିଇସାର । ଥଣ୍ଡା ହେଲାଣି ବସି । ପରେ ଉପାୟ କଥା ଚିନ୍ତା କରିବା ।' ଏତକ କହି ଲକ୍ଷ୍ମୀ ଆଗ ଚା'ଢୋକଟାଏ ନେଲେ । ଛି ଛି, ଚା'ରେ ଚିନି ଦେବା ଭୁଲି ଯାଇଛନ୍ତି । ଭଗବାନ ଭୀଷଣ ରାଗିବେ ଏବେ । ଭୟରେ ତାଙ୍କ ହାତ ଥରିବାକୁ ଲାଗିଲା । ଚାକର ପିଲାଟିର ଦୋଷ ଦେଇ ଦେବେ କି? ଉଁ ହୁଁ । ଘରେ ଚିନି ନ ଥିଲା ବୋଲି କହିଲେ ବି ତ ଚଳିବ ? ହେଲେ, ଦୁଶ୍ଚିନ୍ତାର ଭାରରେ ହେଉ କି ପତ୍ନୀଙ୍କଠାରୁ ଉପାୟ ପାଇବା ଲୋଭରେ ହେଉ ଭଗବାନ ଚା'ତକ ଢକ୍ ଢକ୍ କରି ପିଇଗଲେ । ଚିନି କଥା

ଉଲ୍ଲେଖ ସୁଦ୍ଧା କଲେ ନାହିଁ । ଲକ୍ଷ୍ମୀଙ୍କ ମୁଣ୍ଡରୁ ବୋଝ ଗଲା । ରୋଜ ଟିକିଏ ଲେଖା ଦୁଷ୍ଚିନ୍ତା ହେଲେ ପତିଙ୍କଠାରୁ ଛୋଟ ଛୋଟ କଥାରେ ଗାଳି ଖାଇବାକୁ ପଡ଼ନ୍ତା ନାହିଁ । ପୁଣି ଉପାୟ ଦେବା ଆଳରେ ପରିବାରରେ ତାଙ୍କର ଓଜନ ବି ବଢ଼ନ୍ତା କିଛି କିଛି ।

- ଗୋଟାଏ ମହିଷାସୁର, ଗୋଟାଏ ହିରଣ୍ୟକଶିପୁ ମୋର ସ୍ଥିତିରେ ଅନାସ୍ଥା ପ୍ରକାଶ କଲେ ବୋଲି ମୋର ଅବସ୍ଥା ଖରାପ । ଏବେ ମର୍ତ୍ତ୍ୟ ସାରା ମହିଷାସୁର ବାହାରିଲେଣି । ମୁଁ କୁଆଡ଼କୁ ହେବି? ସେତେବେଳେ ଦେବଗଣ ବି ଯୁଦ୍ଧ ପାଇଁ କିଏ ବଜ୍ର ଦେଉଥିଲା, ତ କିଏ ପାଶୁପତ । କିଏ କିଛି ନ ହେଲେ ନିଜ କମଣ୍ଡଳୁ ଦେଇ କହୁଥିଲା, "ରଖ । ଯୁଦ୍ଧ କ୍ଷେତ୍ରରେ ହାଲିଆ ଲାଗିଲେ ପାଣି ପିଇବ ।" ଏବେ ତ ସମସ୍ତେ ଖାଲି ଆଗରେ ବାଃ ବାଃ ଆଉ ପଛରେ ହାଃ ହାଃ ହେଉଛନ୍ତି । କ'ଣ ହେବ ମୋର? ମଲି ଏଥର ମୁଁ ।' ଭଗବାନ ନିଜ ଲୁଙ୍ଗି କାନିରେ ଆଖି ପୋଛିଲେ ।

ପତିଙ୍କ ମନୋବଳ ବଢ଼ାଇବା ପାଇଁ ଲକ୍ଷ୍ମୀ କହିଲେ, 'ଛୁଆଙ୍କ ଭଳି କାନ୍ଦୁଛ କ'ଣ? ଦମ୍ଭ ଧର ।'

କେତେ ଅଲାଜୁକ ସ୍ତ୍ରୀଟାଏରେ ଏଟା । ବିପଦ ବେଳେ ସହାନୁଭୂତି କଥା କିଏ ପଚାରେ, କହୁଛି କାନ୍ଦୁଛ କ'ଣ? ଭଗବାନ ବି ନିଜ ସ୍ଥିତି ସମ୍ଭାଳିଲେ, । କାନ୍ଦିବେ ଯଦି ସମଗ୍ର ପୁରୁଷ ଜାତିର ସମ୍ମାନ ସେ ଲୁହରେ କାଗଜ ଡଙ୍ଗା ଭଳି ଭାସି ଯିବ । ସାମାନ୍ୟ ରୁକ୍ଷ ସ୍ୱରରେ ପଚାରିଲେ, 'କିଏ କାନ୍ଦୁଛି?'

- ଲୁଙ୍ଗି କାନିରେ ଆଖି ପୋଛୁଛ କାହିଁକି ସିନା?

— କୁଟା ପଶିଗଲା ।

ସତ୍ୟତା ଜାଣିବା ପାଇଁ ଲକ୍ଷ୍ମୀ ଭଗବାନଙ୍କ ପାଖକୁ ମାଡ଼ି ଆସିଲେ ଏବଂ କୁଟା ଦେଖାଇବା ପାଇଁ ବାଧ୍ୟ ହୋଇ ଭଗବାନ ହନୁମାନ ନିଜ ଛାତିକୁ ଚିରିଲା ପରି ବାଁ ଆଖି ପତାକୁ ଦୁଇ ହାତରେ ଫାଡ଼ି ଧଇଲେ ।

ଠିକ ଏତେ ବେଳକୁ ଚାକର ଟୋକା ଆସି ଖବର ଦେଲା, 'ବାବୁ, ଦେବଗଣ ଆପଣଙ୍କ ଦର୍ଶନ ପାଇଁ ବାଟ ଘରେ ଅପେକ୍ଷା କରିଛନ୍ତି । ପରେ ଆସିବାକୁ କହିଲେ ମାନୁ ନାହାନ୍ତି । କହୁଛନ୍ତି ଦର୍ଶନ କରିବା ଜରୁରୀ ଆଜି' ।

ଦୁଆର ମୁହଁରେ ଚାକର ଟୋକାକୁ ଦେଖି ତଥା ବାଟ ଘରେ ଦେବଗଣଙ୍କ ବସିବା ସଂବାଦ ଶୁଣି ଭଗବାନ ତରସର ଲୁଙ୍ଗି ସଂଭାଳି ଶୋଇବା ଘରୁ ବାହାରିଲେ । ତାଙ୍କ ପଛେ ପଛେ ଲକ୍ଷ୍ମୀ-। ସେମାନଙ୍କ ନ ଯାଉଣୁ ଚାକର ଟୋକା ଝାଡୁ ଧରି ହାଜର, ଯେମିତି ଆଉ

କେଉଁଥି ପାଇଁ ନୁହେଁ, ଝାଡୁ ମାରିବା ପାଇଁ ଭଗବାନଙ୍କୁ ଶୋଇବା ଘରୁ ବାହାର କରିଥିଲା ସେ ।

ବାଟ ଘରେ ପ୍ରାୟ କୋଡ଼ିଏ ପଚିଶି ଜଣ ଦେବତା ରେଫ୍ୟୁଜି କ୍ୟାମ୍ପର ଅନ୍ତେବାସୀ ପରି ହାଏ ମାଏ କରି ବସିଥାନ୍ତି । ସେମାନଙ୍କୁ ଦେଖିଲେ କେହି ଭାବିବ ନାହିଁ ଯେ, ଏମାନେ କାହାର ବିରୋଧ ବି କରି ପାରନ୍ତି । ଶହେ ପ୍ରତିଶତ ଗୋମାତା ସମସ୍ତେ । ଦେଖିଲେ ଦୟା ଆସିବ । ଶ୍ରେଣୀ ଶିକ୍ଷକଙ୍କୁ ଦେଖି ପଞ୍ଚମ ଶ୍ରେଣୀ ପିଲେ 'ଜୟହିନ୍ଦ' କଲା ତାନରେ ଭଗବାନଙ୍କୁ ଏବଂ ତାଙ୍କ ପଛରେ ଲକ୍ଷ୍ମୀଙ୍କୁ ଦେଖି ଏକା ସ୍ୱରରେ ସମସ୍ତେ ତିନିଥର 'ଜୟ ଲକ୍ଷ୍ମୀ ପତି ଭଗବାନଙ୍କ ଜୟ' କଲେ ଏବଂ ସେ ତା ମୁହଁକୁ ଚାହାଁଚାହିଁ ହୋଇ ଚୁପ କରି ବସିଲେ ।

- ହେଲା କ'ଣ? ସକାଳୁ ସକାଳୁ?' ଭଗବାନ ପଚାରିଲେ ।

ଜଣେ ଦେବତାଙ୍କୁ ତାଙ୍କ ବାଁ ଓ ଡାହାଣ କଡ଼ରେ ବସିଥିବା ଦୁଇଜଣ ଦେବତା ବାରମ୍ବାର କହୁଣୀ ମାରିବାରୁ ଦେବତା ଜଣକ ସାବୁନରେ ଦୁଇ ହାତ ସଫାକଲା ପରି ହୋଇ ଉତ୍ତର ଦେଲେ, 'ଶୁଣିଲୁ, ମର୍ତ୍ତ୍ୟରେ ଆପଣଙ୍କ ଷ୍ଟିକ୍ ଲୋକେ ସ୍ୱୀକାର କରୁ ନାହାନ୍ତି । ଆପଣଙ୍କ ଲୋକପ୍ରିୟତା କ୍ରମଶଃ ହ୍ରାସ ପାଉଛି' ।

- ମୁଁ ବି ଶୁଣିଛି । ତୁହେଁ ମିଶି ସମସ୍ୟାର ସମାଧାନ ଖୋଜୁଥିଲୁ' । ଭଗବାନ ଲକ୍ଷ୍ମୀଙ୍କୁ ଦେଖାଇ କହିଲେ ।

- କିଛି ସମାଧାନ ମିଳିଲା ପ୍ରଭୁ?' ଜଣେ ଦେବତା ଡ଼ରି ଡ଼ରି ପଚାରିଲେ । ଆଉ ଜଣେ ଦେବତା ପଚାରିଥିବା ଦେବତାଙ୍କୁ କଟ ମଟ କରି ଚାହିଁଲେ ଯାହାର ଅର୍ଥ ତୁମେ କିଏ ପଚାରିବାକୁ ଏକଥା?

ଲକ୍ଷ୍ମୀ ଶେଷଥର ପାଇଁ ଖବରରେ ଅବିଶ୍ୱାସ ପ୍ରକଟ କରି କହିଲେ, 'ଖବର ମିଛ ବି'ତ ହୋଇଥାଇପାରେ ।'

ସବୁ ଦେବଗଣ ଏକାସାଙ୍ଗରେ ପାଟି କଲେ, 'ପ୍ରଭୁ, ମିଛ ନିଶ୍ଚୟ । କାହାର ଏ ଦୁଃସାହସ ହେବ ପ୍ରଭୁ ଆପଣଙ୍କ ଖଳ ପାଞ୍ଚିବାକୁ?'

- ନା ମିଛ ନୁହେଁ ।' ଭଗବାନଙ୍କ ଦୃଢ଼ ଜବାବ ।

ମୂର୍ତ୍ତି ବିସର୍ଜନ ପରେ ପୂଜା ପେଣ୍ଡାଲ ପରି କିଛି ବେଳ ସବୁ ଚୁପଚାପ ।

ନୀରବତା ଭଙ୍ଗ କରି ଭଗବାନ ପୁଣି କହିଲେ, 'ମୂଢ଼ ଜନତାକୁ ଶିକ୍ଷା ଦେବା ପାଇଁ ଭାବୁଛି କିଛି ଦିନ ସନ୍ୟାସ ନେବି । ସମସ୍ତେ ଜାଣନ୍ତୁ, ମୁଁ ଗାଦି ଛାଡ଼ିଲେ ଏ ଜୀବ ଜଗତର କେତେ ବିନାଶ ହେବ ।'

ଦେବଗଣ—ସତ କଥା ପ୍ରଭୁ! କିଛି ଦିନ ପରେ ଜନତା ପୁଣି ବାଧ୍ୟ ହେବ ଆପଣଙ୍କୁ ଡାକିବାକୁ ।

ଲକ୍ଷ୍ମୀ—କିନ୍ତୁ ଗୋଟାଏ କଥା ମନେରଖ । ଥରେ ଗଲେ ଗାଦି ଆଉ ଫେରି ଆସେନି ।

ଦେବଗଣ—ସତ କଥା ପ୍ରଭୁ । କାହାରି ପାଖରେ ଗାଦି ରହେ ନାହିଁ । ତାକୁ ଜାବୁଡ଼ି ରଖିବାକୁ ପଡେ । ମୋଟେ ହାତଛଡ଼ା କରନ୍ତୁ ନାହିଁ ତାକୁ ।

ଘଣ୍ଟାଏ ଧରି ବିଚାର ବିମର୍ଶ ଚାଲିଲା । ଭଗବାନ କିଛି କହିଲେ ଲକ୍ଷ୍ମୀ ନାକଚ କରୁଥାଆନ୍ତି, ଲକ୍ଷ୍ମୀ କିଛି କହିଲେ, ଭଗବାନ । ଆଉ ଦେବଗଣ ସବୁ କଥାରେ 'ସତ କଥା ପ୍ରଭୁ' । ତୁଳସୀ ରାମାୟଣରେ ରାମ ଜୟରାମ, ଜୟରାମ ସିୟାରାମ ପରି । ଭଗବାନ ଭାବିଲେ, ୟା ଠାରୁ ତ ଭଲ ଗାଈ ବଳଦଙ୍କୁ ଦେବସଭାରେ ରଖିବା । ଛାଡ଼, ଏବେ ଦୋଷ ଦେଇ ଲାଭ କ'ଣ? ମୋର ସୃଷ୍ଟି ତ ! ପର ମୁହୂର୍ତ୍ତରେ ସୃଷ୍ଟିକର୍ତ୍ତା ପୁଣି ନିଜକୁ ସଂଶୋଧନ କଲେ ।

ଏତେ ବେଳକୁ ଲକ୍ଷ୍ମୀ ଗମ୍ଭୀର ହୋଇ ମତ ଦେଲେ, 'ପୂର୍ବ ସ୍ଥିତି ଫେରାଇ ଆଣିବା ପାଇଁ ଜନତାକୁ ମହଙ୍ଗା ବରଟାଏ ଦେଲେ କେମିତି ହୁଅନ୍ତା? ବର ପାଇ ଜନତା ଭଗବତ ବିଶ୍ୱାସୀ ହୋଇ ପଡନ୍ତା ଏବଂ ତୁମର ଗାଦି ମଧ୍ୟ ସୁରକ୍ଷିତ ରହନ୍ତା ।'

ଭଗବାନ ଏ ପ୍ରସ୍ତାବରେ ରାଜି ନହେଲେ ବି ରାଗିବେ ନାହିଁ ବିଚାର କରି ଦ୍ୱିଗୁଣ ଉତ୍ସାହରେ ଦେବଗଣ କହିଲେ, 'ସତକଥା ପ୍ରଭୁ । ମହଙ୍ଗା ବରଟାଏ ଦିଅନ୍ତୁ । ଜନତାର ବିଶ୍ୱାସ ହେଉ ଯେ ଆପଣ ଏବେ ବି ଜଗତର ମଙ୍ଗଳ କାମନା କରନ୍ତି ।'

ସବୁ ଦମ୍ ଏକଜୁଟ କରି ଜଣେ ଦେବତା କହିଲେ, 'ଗଜ ଉଦ୍ଧାରଣ, ଦ୍ରୌପଦୀକୁ ବସ୍ତ୍ର ଦାନ ତଥା ଘୋର ବନେ ମୃଗୁଣୀକୁ ସୁରକ୍ଷା ପ୍ରଦାନ କଥା ବହୁତ ପୁରୁଣା ହୋଇ ଗଲାଣି ପ୍ରଭୁ । ଭକ୍ତକବିମାନେ ସେଇ କଥାକୁ ଲେଖି ଲେଖି ବିରକ୍ତ ହେଲେଣି । ନୂଆଁ ବରଟେ ଦେବେ ଯଦି ସେମାନଙ୍କୁ ବି ମଶାଲା ମିଳିବ । ତିନି ଲୋକରେ ଆପଣଙ୍କ ସୁନାମ ରଟିବ ।' ଆଜି ଭଳି ଗମ୍ଭୀର ବାତାବରଣରେ ହାସ୍ୟ ସୃଷ୍ଟି କରି ପାରଥିବା ଏହି ଦେବତା ଜଣକ କୃତଜ୍ଞତା ଆଶାରେ ଭୀକ୍ଷା ଥାଳି ଭଳି ସବୁଆଡ଼େ ନଜର ବୁଲାଇଲେ । କିନ୍ତୁ, ଈର୍ଷାରେ ହେଉ ପଛେ କୌଣସି ଦେବତା ତାଙ୍କୁ କୃତଜ୍ଞତା ଦେବା ସପକ୍ଷରେ ନ ଥିଲେ । ନିରାଶାରେ ଦେବତା ଜଣକ କଳା କାଠ ପଡ଼ିଗଲେ ।

ଭଗବାନ ଚୁପଥିବାର ଦେଖି ଲକ୍ଷ୍ମୀ କହିଲେ, 'ଦେଇ ଦେଉନ । ଏତେ କୃପଣ ହେଲେ କ'ଣ ଚଳିବ? ଲୋକଙ୍କ ମନ ନେଇ ନ ଚଳିଲେ କ'ଣ ରହିବ ଏ ସବୁ ?'

ଅନେକ ବେଳ ଧରି ଭଗବାନ ଗମ୍ଭୀର ଭାବେ ଚିନ୍ତା କରିବା ପରେ ନିଜର ସମ୍ମତି ଜଣାଇ କହିଲେ, 'ଠିକ ଅଛି । ମହିମଣ୍ଡଳରେ ଖବର ଦିଅ । ଗୋଟାଏ ବର ଦେବା, ମହଙ୍ଗା ବର, ଜନତାର ମଙ୍ଗଳ ପାଇଁ ।

ଭଗବାନଙ୍କ ଏହି ଆଶ୍ୱସ୍ତିସୂଚକ ଘୋଷଣା ପରେ ସଭା ଭଙ୍ଗ ହେଲା । ସମସ୍ତଙ୍କ ମନରେ ଆଜି ଦିନଟା ଗଲା ବୋଲି ଯେଉଁ ଆଶଙ୍କା ସକାଳଟାରେ ଜନ୍ମିଥିଲା, ତାର ଏବେ ଆଉ ଇୟତ୍ତା ନଥିଲା । ଭଗବାନଙ୍କ ମୁଡ୍ ଫେରି ଆସିଥିବାରୁ ଦେବଗଣ ଖୁସିରେ କେବଳ ଇଦ ମୁବାରକ ଭଳି ହେଉଥାନ୍ତି ।



# ପ୍ରେମ

ଦୁଇ ବର୍ଷ ଧରି କଲେଜ ପଢ଼ିଲି । ଗାଁ ଛାଡ଼ି ସହରରେ ରହିଲି । ହେଲେ କାହାରି ସହ ମୋର ପ୍ରେମଟିକିଏ ହୋଇ ପାରିଲା ନାହିଁ । ଗାଁରେ ଯେଉଁଦିନ ଏହି ଦାରୁଣ ସତ୍ୟଟି ଉଦ୍‌ଘାଟିତ ହେଲା ଓଜନ ଟିକକ ମୋର ଦେବାଲିଆ କମ୍ପାନୀର ସେଆର ପରି ଠପ କରି ତଳେ ପଡ଼ିଗଲା । ଏତେ ବଡ଼ ଗାଁରୁ ଜଣେ ମୁଁ କଲେଜର ମୁହଁ ଦେଖିଥିଲି । ତେଣୁ ଗାଁ ମୋ ଠାରୁ ଅନେକ କିଛି ଆଶା କରୁଥିଲା । ଅନେକ କିଛି ଭିତରେ ବାପା-ମା ଆଶା କରୁଥିଲେ ଚାକିରୀ ଖଣ୍ଡିଏ; ବୁଢ଼ାବୁଢ଼ୀ ଗାଁର ଭାବିଥିଲେ ଗାଁର ଇଜ୍ଜତ ରଖିବି; ପୁଣି ସାଙ୍ଗ ଟୋକାଏ ଚାହୁଁଥିଲେ, ଜଣେ ସହରି ଝିଅକୁ ଫସେଇ ଆଣେ, ତେଣିକି ଦିଲଖୋଲି ଦେଖନ୍ତୁ ସମସ୍ତେ ତାକୁ । ମୋ କଲେଜ ପାଠର ସବୁତକ ମତଲବ ତାଙ୍କ ପାଇଁ ବେଶ ଏତିକି । ମାତ୍ର ଏତେ ଦିନ ଧରି ସହରରେ ରହିବା ପରେ ସୁଦ୍ଧା ମୁଁ ସେମାନଙ୍କ ଆଶାକୁ ସାକାର କରି ପାରି ନାହିଁ । ମୋ ପାଇଁ ନ ହେଲା ନାହିଁ, ଅତି କମରେ ସେମାନଙ୍କ ଖାତିରରେ ତ ପ୍ରେମ କରି ପାରିଥାନ୍ତି! ଧିକ ମତେ । ଶତ ଧିକ ମୋର କଲେଜ ପାଠକୁ ! ଗାଁର ଯୁବ ଶକ୍ତି ଆସ୍ଥା ହରାଇଛି ମୋଠାରୁ । ସାଙ୍ଗମାନଙ୍କ ତିରସ୍କାରର ପରିଣାମ ସ୍ୱରୂପ ସେଦିନ ନିଷ୍ଚୟ କଲି ଯାହା ହେଉ ପଛେ ଜଣେ କଲେଜ ଝିଅକୁ ଫସେଇବି! ଏହା ଗାଁରେ ମୋର ଏବଂ ବାହାରେ ଗାଁର ଇଜ୍ଜତ ରଖିବ!

ଦୁଇ ଦିନ ପରେ ହଷ୍ଟେଲକୁ ଫେରି ଅନ୍ତରଙ୍ଗ ବନ୍ଧୁମାନଙ୍କୁ ମୋର ନୂଆ ଯୋଜନା ସମ୍ପର୍କରେ ସୂଚନା ଦେଲି । ଉଦ୍ଦେଶ୍ୟ ଥିଲା ସେମାନେ ନିଜ ନିଜ ଅଭିଜ୍ଞତା ବଖାଣିବେ, ତାକୁ ପାଥେୟ କରି ଆଗକୁ ବଢ଼ିବି । ମାତ୍ର ଅବଶୋଷର ବିଷୟ ଯେ ସହରରେ ପଢ଼ିଲେ କ'ଣ ହେବ, ମୋର ସବୁ ସାଙ୍ଗ ଥିଲେ ମୋ ପରି ନିପଟ ମଫସଲିଆ; ନିଜ ନିଜ ଗାଁର ପ୍ରଥମ ଏବଂ ହୁଏତ ଶେଷ କଲେଜ ପାଠୁଆ । ଏତେ ସବୁ ଜଗତୀକରଣ ସତ୍ତ୍ୱେ ଆମ ଗାଁରୁ ବନ୍ଧାକୋବି ବିକିବା ପାଇଁ କେହି ଯେମିତି ବର୍ଲିନ ବଜାରକୁ ଯାଇ ନଥିଲେ, ଠିକ ସେମିତି ସହର ସାରା ସହରିଆ ଭର୍ତ୍ତି ହେବା ସତ୍ତ୍ୱେ ମୋର ଜଣେ ସୁଦ୍ଧା ସହରି ସାଙ୍ଗ ନଥିଲେ ।

ରାଗିଲେ ବି ମୋ ଭଳି ସେମାନେ ହିନ୍ଦୀ  କହି ପାରୁ ନ ଥିଲେ, କି ଚାହିଁଲେ ବି ସାର୍ଟକୁ 'ଇନ୍' କରି ପାରୁ ନଥିଲେ । ପ୍ରେମ ମାମଲାରେ ମଧ୍ୟ ସମସ୍ତେ ଥିଲେ ମୋ ପରି ସଂପୂର୍ଣ୍ଣ ଅନଭିଜ୍ଞ । କିନ୍ତୁ କଥା ପଡ଼ିବାରୁ ଜଣାକେତେ ନିଜ ଦୁସ୍ଥିତିର ଆଭାସ ନ ଦେଇ ଗୁରୁ ଗମ୍ଭୀର ସ୍ୱରରେ କହିଲେ, ତାଙ୍କ ଦ୍ୱାରା ପ୍ରେମ ଫ୍ରେମ ହୋଇ ପାରିବ ନାହିଁ । ତାଙ୍କ ଦୃଢ଼ୋକ୍ତିରୁ ମନେ ହେଲା, ଜାଣି ପ୍ରେମ ସହ  ସେମାନଙ୍କ ଅହିନକୁଳ ସଂପର୍କ । ତେଣୁ ଆଷାଢ଼ର ମେଘ ପୁଞ୍ଜ ପରି ପ୍ରେମ ସବୁ ତାଙ୍କୁ ଗୋଡ଼ାଉଛନ୍ତି, କବାଟ ଠକ ଠକ କରୁଛନ୍ତି, ହେଲେ ପୂଜା ଚାନ୍ଦା ଅସୁଲକାରୀଙ୍କ ଆଗମନରେ ଗୃହକର୍ତ୍ତା ପରି ସେମାନେ କେବଳ ଟାଳ ବଟାଳ କରୁଛନ୍ତି, ଚିଆ ଦେଉଛନ୍ତି ।

ଏହାର ସଂପୂର୍ଣ୍ଣ ବିପରୀତ ଦୃଷ୍ଟିଭଙ୍ଗୀ ନେଇଥିଲେ ଅନ୍ୟ କେତେଜଣ ସାଙ୍ଗ । ନିଜ ଦୁଃସ୍ଥିତିକୁ ଆବଶ୍ୟକତାଠାରୁ ଅଧିକ ମାତ୍ରାରେ ଖୋଲି ଦେଇ କହିଲେ, ସେମାନଙ୍କୁ କିଏ କାହିଁକି ପସନ୍ଦ କରିବ? ହୋଲି ଦିନ କେତେ ଲୋକ ଦରଜା କବାଟ ବାଡ଼େଇଲେ ସୁଦ୍ଧା ବାହାରନ୍ତି ନାହିଁ । ଦରଜା ଭାଙ୍ଗେ, ଶେଷକୁ ବାହରିବାକୁ ମଧ୍ୟ ପଡ଼େ । ଆଉ କେତେ ଲୋକ ବିନା ପ୍ରତିରୋଧରେ ବାହାରି ପଡ଼ି ଭୀଡ଼କୁ କହନ୍ତି, ଯେତେ ରଙ୍ଗ ଢାଳିବ ଢାଳ । ପରେ ଧରା ପଡ଼ିବାଠାରୁ ସ୍ୱଇଚ୍ଛାରେ ଧରା ଦେବା ଭଲ ବୋଲି ବିଚାରନ୍ତି ସେମାନେ । ଦ୍ୱିତୀୟ ଗୋଷ୍ଠୀ ସାଙ୍ଗମାନଙ୍କର ଶୈଳୀ  କିଛି କିଛି ଏ ଭଳିଆ ଥିଲା । ପ୍ରେମ ମାମଲାରେ ଲଢ଼େଇ ଆରମ୍ଭ ହେବା ଆଗରୁ ପରାଜୟ ବରି ନେଇଛନ୍ତି ବିଚାରେ ! ଆହା !

ଆଉ କେତେଜଣ ସାଙ୍ଗ ଖାଲି ଚାପଲୁସି କଲେ । କହିଲେ, ମୁଁ ଚାହିଁଲେ କୁଆଡ଼େ ଜଣେ କାହିଁକି ଦୁଇ ଚାରୋଟି ଝିଅ ଫସିଯିବେ ! କାରଣ ମୁଁ ଦେଖିବାକୁ ସ୍ମାର୍ଟ, ପଢ଼ାରେ ବି କମ ନୁହେଁ । ପ୍ରତିଦାନର କୌଣସି ଆଶା ନ ରଖି ପ୍ରଶଂସା କରିବାରେ ଅଭିଜ୍ଞ ସେମାନେ । ମୋର ଧାରଣା ଥିଲା, ଜୀବନକାଳ ଭିତରେ ଅବସର ଗ୍ରହଣ ଦିନ ଓ ମଲାପରେ ଶୋକ ସଭା ଦିନ କେବଳ ବ୍ୟକ୍ତି କାମନାରହିତ, ଅମୂର୍ତ୍ତ ପ୍ରଶଂସା ଶୁଣେ । ନିଃସ୍ୱାର୍ଥପର ଭାବରେ ବନ୍ଧୁ ପରିଜନ ପ୍ରଶଂସା କରନ୍ତି । ମାତ୍ର ତୃତୀୟ ଗୋଷ୍ଠୀର ବନ୍ଧୁଙ୍କ କଥାରୁ ଲାଗିଲା, ପ୍ରଶଂସା ବ୍ୟତୀତ ଅଲଗା କିଛି ସେମାନଙ୍କ ମୁହଁରେ ପଇଟେ ନାହିଁ । ସେ ଯାହାହେଉ, ଉପସ୍ଥିତ ସ୍ଥିତିରେ ପ୍ରଶଂସାକୁ ସତ ମଣିଲି । ଧାରଣା ଜନ୍ମିଲା ସହରି ଝିଅ ସହ ପ୍ରେମ କରିବା ମୋ ଦ୍ୱାରା ସମ୍ଭବ । ବାକୀମାନଙ୍କର ଦୁରବସ୍ଥା ଦେଖି ଏହାକୁ ବରଂ ଏକ ସାମାଜିକ  ଦାୟିତ୍ୱ ରୂପେ ଗ୍ରହଣ କଲି । ସାଙ୍ଗମାନଙ୍କୁ ପ୍ରେରଣା ଦେବାକୁ ହେଲେ ମତେ କିଛି କରିବାକୁ ପଡ଼ିବ । ଅନ୍ୟଥା ସମସ୍ତ ମଫସଲିଆ ଛାତ୍ରଙ୍କର ସମ୍ମାନ ତଳେ ପଡ଼ିଯିବ । କିଛି କିଛି ଗାଁ

ବନାମ ସହରର ପୁଟ ଦେଇ ସେମାନଙ୍କଠାରୁ ମୁଁ ସହଯୋଗ କାମନା କଲି । ମନ୍ତ୍ରୀତ୍ୱ ନିମନ୍ତେ ଝଗଡ଼ିଲା ବେଳେ ରାଜନେତାଙ୍କ ମନରେ ଯେମିତି ଦେଶ ଓ ଜାତିର ବିକାଶର ଲକ୍ଷ୍ୟ ଥାଏ, ସେମିତି ଗାଁର ଆଶାକୁ ସାକାର କରିବା ପାଇଁ ତଥା ହଷ୍ଟେଲର ସାଙ୍ଗମାନଙ୍କ ସମ୍ମାନ ରଖିବା ପାଇଁ ସେଦିନ ମୁଁ ପ୍ରେମ କରିବାକୁ ସଂକଳ୍ପବଦ୍ଧ ହେଲି । ସଂକଳ୍ପ ପଛରେ ମୋର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ନ ଥିଲା !

ହିନ୍ଦୀ ସିନେମାରୁ ଆମେ ଜାଣୁ, ନାୟକ ଆରମ୍ଭରୁ ସତ୍ୟ, ନ୍ୟାୟ ଓ ଶାନ୍ତି ପ୍ରତିଷ୍ଠା କର୍ନ୍ତେ ସଂକଳ୍ପବଦ୍ଧ ଥାନ୍ତି । ମାତ୍ର ଦୁର୍ଭାଗ୍ୟକୁ ଘାତ ପ୍ରତିଘାତ ସବୁ ତାଙ୍କୁ ଧରି ରଖିଥାନ୍ତି । ଜାଣି, ପରୀକ୍ଷା ଦେବା ପାଇଁ ଦୁଇଟଙ୍କା ଚାରଣା ଫିସ, ଜ୍ୱରମୁକ୍ତ ହେବା ପାଇଁ ପାଖରେ ସାରିଡନ ବଟିକା ଚାରି ଛ'ଟି ଥିଲେ, କିମ୍ବା ସ୍ଥଳ ବିଶେଷରେ ସାବତ ମା' ଓ କର୍ଣ୍ଣା କର୍ଣ୍ଣା ନିଶଧାରୀ ଲଣ୍ଡାମୁଣ୍ଡିଆ ଖଳ ନାୟକ ନ ଥିଲେ ହାଫଟାଇମ ପୂର୍ବରୁ ସେ ଜଗତକୁ ଠିକଠାକ୍ କରି ଦେଇଥାନ୍ତେ । ଠିକ ସେହିଭଳି ପ୍ରେମରେ ଆଗଭର ହେବା ବେଳେ ମୋ ଆଗରେ କେତୋଟି ପ୍ରତିଘାତ ଥିଲେ ଯାହାକୁ ବିନା ପାର ହୋଇ ପ୍ରେମ ଓ ପ୍ରେମିକାର ସ୍ୱପ୍ନ ଦେଖିବା ମୋ ପାଇଁ କାଠିକର ଥିଲା ।

କେବଳ ସିନେମାରେ କାହିଁକି କଲେଜରେ ମଧ୍ୟ ସଂଭାବ୍ୟ ପ୍ରେମିକମାନେ ହେଲେ ସାଧାରଣତଃ ପାଠୁଆ ଗୋଷ୍ଠୀର, ଏବଂ ମୋର ପାଠୁଆ ପଦବାଚ୍ୟ ନ ହେବା ହେଉଛି ପ୍ରଥମ ପ୍ରତିଘାତ । ସମାଜର ସମ୍ମାନ ପ୍ରାପ୍ତି ନିମିତ୍ତ ଯେମତି ଟଙ୍କା ଲୋଡ଼ା, ଝିଅ ଫସେଇବା ପାଇଁ ସେମିତି ପାଠୁଆ ହେବା, ଶ୍ରେଣୀରେ ଅଧ୍ୟାପକଙ୍କୁ ପ୍ରଶ୍ନ ପଚାରିବା ଖୁବ୍ ଜରୁରୀ । ଦୁର୍ଭାଗ୍ୟକୁ ମୋଠାରେ ଏ ଗୁଣର ଘୋର ଅଭାବ ।

ଦ୍ୱିତୀୟ ଅସୁବିଧା ଥିଲା—ଟଙ୍କା । ତିନି ତିନିଟା ସିନେମା ହଲ ଥିବା ସତ୍ତ୍ୱେ ଅବଶ୍ୟ ସହରକୁ ପୁଅ-ଝିଅ ମିଶି ସିନେମା ଯିବା, ରେଷ୍ଟୁରାଣ୍ଟରେ ମିଠା ଖାଇବା ତଥା ମୋଟର ସାଇକେଲରେ ବୁଲିବାର ପରମ୍ପରା ପଶି ନଥିଲା । ତଥାପି ପ୍ରେମ ପାଇଁ ଯେ ଟଙ୍କାର ଆବଶ୍ୟକତା ନ ଥିଲା ତା ନୁହେଁ । ଦାମୀ ସିଗାରେଟ୍, ଫେସନବୁଲ୍ ପେଣ୍ଟ ସାର୍ଟ ଓ ମହଙ୍ଗା ଯୋତା ବଳରେ ଟୋକାଏ ଝିଅଙ୍କୁ ଆକୃଷ୍ଟ କରିବାର ଇତିହାସ ଥିଲା କଲେଜରେ । ସବୁ ପ୍ରେମାଳୁ ଛାତ୍ର ତାକୁ ଆବଶ୍ୟକୀୟ ଯୋଗ୍ୟତା ମନେ କରି ଅନୁକରଣ କରୁଥିଲେ । ଠିକ ସେମିତି, ପ୍ରେମରେ ମୋଟର ସାଇକେଲର ମଧ୍ୟ ବ୍ୟବହାର ଥିଲା, ସେ ନିଜର ହେଉ ବା ସାଙ୍ଗର । ଝିଅମାନେ ମୋଟର ସାଇକେଲ ପଛରେ ବସିବାର ସ୍ୱପ୍ନ ତ ଦେଖୁ ନ ଥିଲେ କାରଣ ସେଭଳି ସ୍ୱପ୍ନର ପ୍ରଚଳନ ନ ଥିଲା । ମାତ୍ର ପ୍ରେମିକ ନିର୍ବାଚନ ବେଳେ

କୁଆଡ଼େ ଦେଖୁଥିଲେ, ଟୋକା ମୋଟର ସାଇକେଲ ଶିଖିଛି ନା ନାହିଁ । ଏତେ ସବୁ ଆବଶ୍ୟକତା କି ବିନା ପଇସାରେ ପୂରଣ ହେବ? ମୋଟ କଥା ହେଲା, ଜୀବନର ଅନ୍ୟ ସମସ୍ତ ମୂର୍ତ୍ତ-ଅମୂର୍ତ୍ତ ଉପଲବ୍‌ଧି ନିମନ୍ତେ ଅର୍ଥର ଯେତିକି ଦରକାର ପ୍ରେମ ନିମିତ୍ତ ମଧ୍ୟ ତାର ସେତିକି ଦରକାର-ସେ ସହର ହେଉ ବା ନଗର । କମ ବୋଲି ଭାବିଲେ ପ୍ରେମର ଅବମାନନା, ବେଶି ବୋଲି ଅତିରଞ୍ଜିତ କଲେ ଟଙ୍କାର ବେଇଜ୍ଜତି । କିନ୍ତୁ ପରିତାପର ବିଷୟ ଏହି ଯେ ପ୍ରାୟ କଥା ଓ କାବ୍ୟର ନାୟକ ପରି ସେତେବେଳେ ମୋ ପାଖରେ ଟଙ୍କାର ଘୋର ଅଭାବ ଥିଲା ।

ପ୍ରେମିକର ଅନ୍ୟ ଏକ ବିଶେଷ ଗୁଣ ହେଲା କଲେଜରେ ଯଦ୍ ସାମାନ୍ୟ ଦାଦାଗିରି । ସିନେମା ଲବ୍‌ଧ ଜ୍ଞାନରୁ ଜଣା ଥିଲା ପ୍ରେମ ଓ ଦାଦାଗିରି ମଧ୍ୟରେ ଅହିନକୁଳ ସମ୍ପର୍କ । ଖଳନାୟକ ଦାଦା ଓ କର୍ଣ୍ଣା କର୍ଣ୍ଣା ନିଶ ବିଶିଷ୍ଟ ହୋଇଥିବାରୁ ନାୟିକା ତାକୁ ଲାଇନ ଦିଏ ନାହିଁ । ନୋହିଲେ ଉଭୟ ନାୟକ ଓ ଖଳନାୟକ ନାୟିକା ପଛରେ ସମାନ ଭାବରେ ପଡ଼ି, ତାକୁ ଏକା ଧରଣର ହଇରାଣ କରୁଥିବା ସତ୍ତ୍ୱେ ସେ ଜଣକୁ ଲାତ ମାରି ଅନ୍ୟ ଜଣକୁ ହାତ ଦେଖାନ୍ତା ନାହିଁ । ଦୁଇ ଚାରୋଟି ରିଲ ପରେ କୌଣସି କାରଣରୁ ନାୟିକାକୁ ନେଇ ଉଭୟଙ୍କ ମଧ୍ୟରେ ମାଡ଼ ଲଢ଼ିବା ଯାଏଁ କଥା ଯାଏ ଯେଉଁଥିରେ କି ଠେଲାରେ ଥିବା ପନି ପରିବା ନଷ୍ଟ ହୁଏ ଓ ଷ୍ଟୋରରେ ଥାକ ଥାକ ହୋଇ ସଜା ହୋଇଥିବା ତେଲ ଟିଣ ସବୁ ଦୁର୍‌ଦାର୍ ହୋଇ ତଳେ ପଡ଼େ । ଏହା ନାୟିକାକୁ ନାୟକ ଆଡ଼କୁ, ଖଳନାୟକକୁ ସ୍ମଗଲିଂ ଆଡ଼କୁ ଏବଂ ଦର୍ଶକକୁ ସିନେମାର କାହାଣୀ ଆଡ଼କୁ ଆକୃଷ୍ଟ କରେ । ମାତ୍ର କଲେଜର ବାସ୍ତବିକତା ହେଲା ଏହାର ଠିକ ଓଲଟା । ପ୍ରେମିକ ନିମନ୍ତେ ଏଠି ଦାଦାଗିରି ହେଉଛି ଏକ ବିଶେଷ ଯୋଗ୍ୟତା । ଶ୍ରେଣୀ ଭିତରେ କିମ୍ବା କଲେଜ ବାରଣ୍ଡାରେ ମନ ପସନ୍ଦ ଝିଅ ସହ କଥାବାର୍ତ୍ତା କରିବା, କଲେଜ ପରିସରରେ କଳା ଚଷମା ପିନ୍ଧି ବୁଲିବା ଅଥବା ସାଇଲେନ୍‌ସରହୀନ ମୋଟର ସାଇକେଲ ଚଢ଼ିବାର ସାହସ ଦାଦା ଭିନ୍ନ ଆଉ କା'ର ହେବ?

ଆଇମା କାହାଣୀରୁ ଶୁଣିଥିଲି, ଲକ୍ଷ୍ମୀ ଓ ସରସ୍ୱତୀ ସଉତୁଣୀ । ମାତ୍ର କଲେଜ ଆସି ଦେଖିଲି, ପାଠୁଆ ପିଲା ଗରିବ ନୁହନ୍ତି କି ଧନୀ ପିଲା ଅପାଠୁଆ ନୁହନ୍ତି । ବରଂ ପଇସାବାଲା ଛାତ୍ର ହିଁ ପାଠୁଆ । ପୁଣି ହଷ୍ଟେଲବାସୀ ଗାଉଁଲିଆ ଟୋକାଙ୍କ ଆଗରେ ସେମାନେ ଦାଦା । ମୋଟ କଥା ହେଲା ପାଠ, ପଇସା ଓ ଦାଦାଗିରି ମଧ୍ୟରେ କୌଣସି ଅର୍ନ୍ତବିରୋଧ ନାହିଁ; ଗୋଟାଏ ଅପରର ପରିପୂରକ ଏବଂ ସମସ୍ତେ ମିଶି ପ୍ରେମର ସହାୟକ । ଦାଦା ହୋଇ ଯେଉଁମାନେ ଗାଁ ପିଲାଙ୍କୁ ଡରାନ୍ତି, ଶ୍ରେଣୀରେ କୁକୁର, ବିଲୁଆ ପରି ବୋବାନ୍ତି, ପାଠୁଆ

ହୋଇ ସେମାନେ ଅଧ୍ୟାପକଙ୍କ ଭୁଲ୍ ବାରନ୍ତି, ଅଖାଡୁଆ ପ୍ରଶ୍ନ ପଚାରନ୍ତି, ପୁଣି ପଇସାବାଲା ରୂପରେ ମୋଟର ସାଇକେଲ ଚଢ଼ନ୍ତି, ଫେସନବୁଲ ଢିଲା କିମ୍ବା ଚିପା ଜାମା ପିନ୍ଧନ୍ତି ।

ସେତେବେଳେ ଆମ କଲେଜର (ତେଣୁ ସହରର) ସବୁ ଯାକ ପ୍ରେମାଳୁ ଥିଲେ ଏହି ତିନି ଗୁଣର ଧାରକ । ସେମାନଙ୍କ କାର୍ଯ୍ୟ ସବୁ, ଆଶ୍ଚର୍ଯ୍ୟର କଥା, ଥିଲା ଗୋଷ୍ଠୀଗତ । ଗୋଟାଏ ଦଳ ଭାବରେ ସେମାନେ କାର୍ଯ୍ୟରତ ଥିଲେ । ଅର୍ଥାତ୍, ଗୋଟାଏ ମୋଟର ସାଇକେଲକୁ ପାଳିଗୁଲିଆ କରି ଚଢ଼ିବା, ଦୁଇଚାରିଜଣ ନିର୍ଦ୍ଦିଷ୍ଟ ଅଣ-ସ୍ଥାନୀୟ ଅଧ୍ୟାପକଙ୍କୁ ଶ୍ରେଣୀରେ ହଇରାଣ କରିବା ଏବଂ ଦୁଇ ଚାରିଜଣ ସୁନ୍ଦରୀ ଝିଅଙ୍କୁ ସମସ୍ତେ ମିଶି ଲାଇନ ମାରିବା । ଫଳରେ ସମୟେ ସମୟେ ସେମାନଙ୍କ ମଧ୍ୟରେ ଲଢ଼ାଇ ଝଗଡ଼ା ଯେ ହେଉ ନଥିଲା, ତା ନୁହେଁ । ମାତ୍ର ପାର୍ଲ୍ୟାମେଣ୍ଟର ପକ୍ଷ-ବିପକ୍ଷର ବାକ୍‌ବିତଣ୍ଡା ପରି ତାହା ଥିଲା କ୍ଷଣିକ । ଦୁଇ ଚାରି ଦିନ ପରେ ସେମାନଙ୍କ ମଧ୍ୟରେ 'କମ୍ପ୍ରମାଇଜ' (ଦାଦାଗିରି ପରି କମ୍ପ୍ରମାଇଜ ଶବ୍ଦଟି ଏତେ ପୁରୁଣା ଓ ସରଳ ଯେ, ସ୍ଥାନୀୟ ଭାଷାରେ ତାର ତର୍ଜମା 'ସିଗାରେଟ' ସ୍ଥାନରେ 'ଶ୍ୱେତଧୂମ୍ରଦଣ୍ଡ' ଶବ୍ଦ ପରି ଅଧିକ ଜଟିଳ ହେବାର ଆଶଙ୍କା ରହିଛି ।) ହେଉଥିଲା; ସମସ୍ତଙ୍କ ଗୋଟାଏ ଗୋଷ୍ଠୀରେ ଅନ୍ତଃକରଣ ହେଉଥିଲା ଏବଂ ଗୋଷ୍ଠୀ ନିଜର ସାଧାରଣ ଶତ୍ରୁ ହୋଷ୍ଟେଲବାସୀଙ୍କୁ ସାବାଡ଼ କରିବା ପାଇଁ ଭାବାବେଶରେ ସଂକଳ୍ପ ନେଉଥିଲା ।

ଗାଁ ସରପଞ୍ଚକୁ ଦେଶର ରାଷ୍ଟ୍ରପତି ହେବା ନିମନ୍ତେ କୌଣସି ସାମ୍ବିଧାନିକ ବାରଣ ନ ଥିଲେ କି ହେବ ତାହା କେତେ କାଠିକର ଯେ, ବିଚରା ତା'ପାଇଁ ସ୍ୱପ୍ନ ସୁଦ୍ଧା ଦେଖି ପାରେନା । ସେହିଭଳି ମୁଁ ବି କଲେଜରେ ପଢୁଥିଲି, କିନ୍ତୁ ପ୍ରେମାଳୁ ଗୋଷ୍ଠୀରେ ସାମିଲ ହେବାର ସ୍ୱପ୍ନ ପୂର୍ବରୁ କେବେ ଦେଖି ନ ଥିଲି । ନା ପାଠୁଆ ହେବି, ନା ପଇସା ହେବ ପାଖରେ, ନା ଦାଦାଗିରି କରି ପାରିବି ମୁଁ ? ତେଣୁ ନୀତିଗତ ଭାବରେ ପ୍ରେମ କଥା ବି ମୋର ଚିନ୍ତା କରିବା ଅନୁଚିତ । ହେଲେ ଗାଁର ଆଶା, ବନ୍ଧୁମାନଙ୍କର କଟୂବାଣୀ ଏବଂ ହୋଷ୍ଟେଲରେ ସହର ବନାମ ଗାଁ ତତ୍ତ୍ୱର ଆତ୍ମଘୋଷିତ ପୃଷ୍ଠପୋଷକ ଭାବରେ ପ୍ରେମ ରାସ୍ତାରୁ ବିଚ୍ୟୁତ ହେବା ମଧ୍ୟ ମୋ ଦେଇ ସମ୍ଭବ ବା ସହଜ ନ ଥିଲା ।

ଦୁଇବର୍ଷ ପରେ ଇଣ୍ଟର ପାଶ୍ କଲି । ଛୁଟୀରେ ଗାଁର ବନ୍ଧୁଗଣ ପ୍ରେମରେ ମୋର ଅଗ୍ରଗତି ସମ୍ବନ୍ଧରେ ପ୍ରଶ୍ନ କରିବାକୁ ଚେଷ୍ଟା କଲେ । ପ୍ରଶ୍ନର ସିଧା ସଳଖ ଉତ୍ତର ଦେବା ପରିବର୍ତ୍ତେ, ମୁଁ କଲେଜର ଅନ୍ୟସବୁ ମହତ୍ତ୍ୱପୂର୍ଣ୍ଣ ପ୍ରସଙ୍ଗର ବ୍ୟାଖ୍ୟାନ ଦେଲି, ଯଥା-ପ୍ରତି ଶ୍ରେଣୀ ଗୃହରେ ଝୁଲୁଥିବା ଅପର୍ଯ୍ୟାପ୍ତ ପଙ୍ଖାର ସଂଖ୍ୟା, ଅଧ୍ୟକ୍ଷଙ୍କ ମାଳ ମାଳ ଡିଗ୍ରୀ, ଛାତ୍ର ସଂସଦ ନିର୍ବାଚନରେ ସଭାପତି ପ୍ରାର୍ଥୀଙ୍କ ଅନର୍ଗଳ ଇଂରାଜୀ ଭାଷଣ ଆଦି । ଏହା ସହରକୁ

ଗାଁ ଠାରୁ ଅଧିକ ମହାନ କରି ଗଢ଼ିବାରେ ସହଯୋଗ କଲା । କ୍ଷୁଦ୍ର ଗାଁର ଅତିକ୍ଷୁଦ୍ର ଜିଜ୍ଞାସୁଗଣ ଏଭଳି ମହତ୍ତ୍ୱପୂର୍ଣ୍ଣ ପ୍ରସଙ୍ଗର ଚର୍ଚ୍ଚା ବେଳେ ମୁହଁ ଖୋଲିବାକୁ ସାହସ କଲେ ନାହିଁ । ମତେ ଜଣା, ଗାମ୍ଭୀର୍ଯ୍ୟର ମାତ୍ରା ଟିକେ ଊଣା ନ ହେଉଣୁ ସେମାନେ ମାଡ଼ିଯିବେ । ତେଣୁ ଯେତେ ଶୀଘ୍ର ସମ୍ଭବ 'କିଛି' କରିବାକୁ ପଡ଼ିବ । ଉକ୍ତ ନିଷ୍ପତ୍ତି ପରୋକ୍ଷରେ ମତେ ବି.ଏ.ପଢ଼ିବା ନିମନ୍ତେ ପ୍ରେରଣା ଦେଲା ।

ବି.ଏ.ରେ ପଢ଼ିବି କ'ଣ? ଇତିହାସ । ପାଠୁଆ ପିଲାଙ୍କ ଭୀଡ଼ ନାହିଁ; ପୁଣି ଅନେକ ଝିଅଙ୍କ ସମାଗମ ସେଠି । ଝିଅଙ୍କ ପାଇଁ ଶସ୍ତାରେ ଡିଗ୍ରୀ ଓ ପୁଅଙ୍କ ପାଇଁ ପ୍ରେମିକା ପ୍ରାପ୍ତିର ନିର୍ଭରଯୋଗ୍ୟ ସ୍ରୋତ ଭାବରେ ଇତିହାସର ନାଁ ଥାଏ କଲେଜରେ । ମୁଁ ଇତିହାସ ପଢ଼ିବାକୁ ନିଷ୍ପତ୍ତି ନେଲି ।

କିଛିଦିନର ଅନୁଭୂତି ପରେ ସତକୁ ସତ ଶ୍ରେଣୀରେ ମୋର ମନୋବଳ ବୃଦ୍ଧି ପାଇଲା । ପ୍ରଥମ ଦିନ ଅଧ୍ୟାପକ ପଚାରିଲେ, ସମସ୍ତେ ଥାର୍ଡ ଡିଭିଜନ ନା ଜଣେ ଅଧେ ସେକେଣ୍ଡ ଡିଭିଜନ ଅଛନ୍ତି । (ଯଦିଓ ଘଟଣାଟି ତ୍ରେତା ଯୁଗର ନୁହେଁ, ପରୀକ୍ଷାରେ ଡିଭିଜନ ପାଇବା ପାଇଁ ସେତେବେଳେ ପଢ଼ିବାକୁ ପଡୁଥିଲା, 'ଅର୍ଥ' ଓ 'ଜାଣ ସହିଚାଣ' ବଦଳରେ ଡିଭିଜନ ମିଳିବାର ପରମ୍ପରା ସହରକୁ ଆସି ନଥିଲା) ଶ୍ରେଣୀରେ ଏକ ମାତ୍ର ସେକେଣ୍ଡ ଡିଭିଜନ ଧାରୀ ଭାବରେ ମୋର ସ୍ଥିତି ଦକ୍ଷିଣ ଏସିଆରେ ଭାରତର ସ୍ଥିତି ତୁଲ୍ୟ ବେଶ ସୁଦୃଢ଼ । ଅଧ୍ୟାପକଙ୍କ ପ୍ରଶ୍ନ ଏବଂ ଅନ୍ୟମାନଙ୍କର ଅନୁସନ୍ଧିତ୍ସୁ ଦୃଷ୍ଟି ମତେ ଏତେ ଆତ୍ମତୃପ୍ତି ଦେଲା ଯେ, ତେଣିକି ଇତିହାସ ପଢ଼ି ମୁଁ ସେମାନଙ୍କ ଉପରେ ଦୟା ପ୍ରଦର୍ଶନ କଲି ।

ତଦ୍‌ପରେ ବିଭାଗୀୟ ସଭାସମିତିରେ ଅଧ୍ୟାପକମାନେ ଆଶା କଲେ, ମୁଁ କିଛି କହିବି; ଶ୍ରେଣୀରେ କୌଣସି ପ୍ରଶ୍ନର ଉତ୍ତର ଦେବା ମୋ ଦ୍ୱାରା ସମ୍ଭବ ନ ହେଲେ, ବାକୀମାନେ ତା ପାଇଁ ଚେଷ୍ଟା କରିବା ମଧ୍ୟ ନିରର୍ଥକ ମନେ କଲେ; କ୍ଲାସ ବେଳେ ଅଧ୍ୟାପିକା ଜଣକ ଶୂନ୍ୟକୁ ନ ଦେଖି ମତେ ଦେଖିଲେ; ଏବଂ ବିଭାଗାଧ୍ୟକ୍ଷ୍ୟ ଶ୍ରେଣୀରେ ମୋର ସାମୟିକ ଅନୁପସ୍ଥିତିର ବ୍ୟକ୍ତିଗତ ଭାବରେ କାରଣ ପଚାରିଲେ । ପନ୍ଦର ଜଣ ଛାତ୍ର ବିଶିଷ୍ଟ ଇତିହାସ କକ୍ଷରେ (ଛଅ ଜଣ ତନ୍ମଧ୍ୟରୁ ଝିଅ) ମୋର ଓଜନ ବେଳକୁ ବେଳ ଖୁବ ବଢ଼ିଲା । ଉଚିତ ବିଷୟ ନିର୍ବାଚନ ଫଳରେ ଏତେସବୁ ଓଜନ ମତେ ସେଇ କଲେଜରେ ମିଳିଲା, ଯେଉଁଠି ମହା ମହା ହସ୍ତୀମାନେ ଅର୍ଥନୀତି ଭଳି ଓଜନିଆ କକ୍ଷରେ କକ୍ଷଚ୍ୟୁତ ହୋଇ ଘୁରି ବୁଲୁଥିଲେ । ଇତିହାସ ମୋ ପରି ମୂକକୁ ମୁଖର କଲାବେଳେ ଅର୍ଥନୀତି ସେମାନଙ୍କୁ ମୌକା-ହୀନ କରି ରଖିଥିଲା । ଏଥିରୁ ନିଶ୍ଚିତ ହେଲି, ଇତିହାସ ପଢ଼ି କୌଣସି ଐତିହାସିକ ତଥ୍ୟ ଆବିଷ୍କାର

ନ କରେଁ ପଛେ (ଯଥା-ମୋଗଲ ସମ୍ରାଟ ବାବରର ଅଜା ଓ ପଣ-ଅଜାର ନାମ ଆବିଷ୍କାର । ସେତେବେଳକୁ ଐତିହାସିକମାନେ ବାପର ନାମ ଆବିଷ୍କାର କରି ସମ୍ମାନ ପାଇ ସାରିଥିଲେ), ଝିଅ ମାମଲାରେ କୌଣସି ଭୁଲଚୁକ୍ ହେବ ନାହିଁ ।

ଛଅଟି ଝିଅଙ୍କ ମଧ୍ୟରେ ଦୁଇ ଜଣଙ୍କର କୌଣସି ସିନ୍ ନ ଥାଏ—ଜଣକର କପାଳରେ ବିବାହିତାର ସନ୍ତକ ସିନ୍ଦୁର ଥିବା ଯୋଗୁଁ ଏବଂ ଅନ୍ୟ ଜଣଙ୍କର ରଙ୍ଗ ସାବନା ଓ ସାମନା ଦାନ୍ତ ବଡ଼ ଥିବା ହେତୁ । ବାକୀମାନଙ୍କୁ ସୁନ୍ଦରୀ କହିଲେ ତ ଅସୁନ୍ଦର ହେବ, ଅସୁନ୍ଦରୀ ବି କହି ହେବ ନାହିଁ । ଅସଲରେ ଯତସାମାନ୍ୟ ସୁନ୍ଦରୀ ଥାଏ ବୋଇଲେ ଜଣେ ଏକା, ନାଁ ପ୍ରମୋଦିନୀ । ତେଣୁ ପଇସାବାଲା ଗ୍ରାହକ ହୃଷ୍ଟପୁଷ୍ଟ କୁକୁଡ଼ାଟିକୁ, କୁକୁଡ଼ାର ଇଚ୍ଛା ନଥାଉ ପଛେ, ଧରି ନେଲା ପରି, ଇତିହାସର ପାଠୁଆ ଛାତ୍ର ଭାବରେ ମୁଁ ପ୍ରମୋଦିନୀକୁ ମୋ ତରଫରୁ ନିଜର କରି ପକାଇଲି ।

ଭିନ୍ନ ଭିନ୍ନ ଶ୍ରେଣୀରେ ଥିବା ମଫସଲ ସାଙ୍ଗମାନେ ମଧ୍ୟ ପ୍ରମୋଦିନୀକୁ ଦେଖି ମୋ ପାଇଁ ସୁପାରିଶ କରିଥାନ୍ତି । ତେଣିକି ରୋଜ ମୁଁ କ୍ଲାସରୁ ଆସି ସେମାନଙ୍କୁ ପ୍ରମୋଦିନୀ ଓ ମୋ ଭିତରେ ଅଙ୍କୁରୀ ଉଠୁଥିବା ପ୍ରେମର ବିଷଦ ବିବରଣୀ ଦିଏଁ । ଜଣେ ତେଲୁଆ ସାଙ୍ଗ ସେଥିରୁ ମୋଟ ସଫଳତାର ଶତକଡ଼ା ହିସାବ କରେ ଯାହାକି ଦଶରୁ ଆରମ୍ଭ ହୋଇ ମାସ ଗୋଟାକରେ ପଞ୍ଚସ୍ତରୀରେ ପହଞ୍ଚି ସାରିଥାଏ । ଅନ୍ୟ କେତେଜଣ ସାଙ୍ଗ ଦୂରରୁ ପ୍ରମୋଦିନୀର ଗତିବିଧି ଲକ୍ଷ୍ୟ କରିବା ଦାୟିତ୍ୱ ମୁଣ୍ଡେଇଥାନ୍ତି । ଗତିବିଧିର ସାରାଂଶ ହେଲା—ମୋ ଅଲକ୍ଷ୍ୟରେ ସେ ମତେ ଲକ୍ଷ୍ୟ କରେ ଏବଂ ତା ଅଲକ୍ଷ୍ୟରେ କଲେଜର ଅନ୍ୟ ଛାତ୍ରମାନେ ତାକୁ ଲକ୍ଷ୍ୟ କରନ୍ତି । ଏହା ଛାତ୍ର ମହଲରେ ପ୍ରମୋଦିନୀର ଭାଉ ଏବଂ ପ୍ରେମିକ ଭାବରେ ମୋର ତାକତକୁ ପୁଷ୍ଟି କରେ । ମୋଟ ଉପରେ ପ୍ରମୋଦିନୀ ଆଲୋଚନାର ପରିସରକୁ ଆସିବା ପରେ ଆମ ନିରସ ହଷ୍ଟେଲ ଜୀବନ ସରସ ଏବଂ ସଂଧ୍ୟା ମନୋରମ ମନେ ହେଲା । ବ୍ୟକ୍ତିଗତ ଭାବରେ ମତେ ଏହା ମେସର ପାଣିଚିଆ ଡାଲି ଏବଂ ବଗଡ଼ାଭାତ ହଜମ କରିବା ପାଇଁ ତଥା ଜ୍ୟୋତ୍ସ୍ନା, ତନ୍ଦ୍ରା ଆଦି ଶୀର୍ଷକରେ କବିତା ଲେଖିବା ପାଇଁ ପ୍ରେରଣା ଦେଲା ।

ପ୍ରେମ ବୋଲି ଯାହାକୁ କହୁଥିଲି ସେଥିରେ ପ୍ରମୋଦିନୀ ସହ ମୋର କେତେ ପଦ କଥାଭାଷା ହିଁ ମୁଖ୍ୟ ଥିଲା । ଥରେ ମତେ ସେ କଲମ ଜାଚିଥିଲା, ଆଉ ଦିନେ ଡାଏରୀ ମାଗିଥିଲା । ତା ଛଡା ଅମୁକ ସାର ଭଲ, 'ନୂଆ' ମେଡେମ ଶ୍ରେଣୀରେ ନର୍ଭସ ହୋଇ ପଡ଼ନ୍ତି ଆଦି କେତେ ଗୋଟି ଅଣ-ବିବାଦୀୟ ପ୍ରସଙ୍ଗର ସାମୟିକ ଚର୍ଚ୍ଚାରେ ସେ ଭାଗ ନେଇଥିଲା । ସବୁ କଥାଭାଷା ଯଦିଓ ସର୍ବସମକ୍ଷରେ ସଂଘଟିତ ହୋଇଥିଲା, ହଷ୍ଟେଲରେ

ମୋର ସାୟଂକାଳୀନ ବିବରଣୀ ପ୍ରଦାନ ବେଳେ ତାର ଅଭାସ ନଥିଲା । ଫଳରେ ସାଙ୍ଗମାନେ ତାକୁ ପ୍ରେମ ବୋଲି ଧରି ନେଇଥିଲେ । କିଛିଦିନ ପରେ ମୁଁ ବି ଭୁଲିଗଲି ଯେ, କଥାଭାଷା ସର୍ବସମକ୍ଷ ମାର୍କା ଭୁକ୍ତ ।

ପ୍ରମୋଦିନୀ ସହ ପ୍ରେମକୁ ପଞ୍ଚସ୍ତରୀରୁ ଶହେ ପ୍ରତିଶତକୁ ଆଗକୁ ନେବା ପାଇଁ କମର କଷୁଥିବା ବେଳେ ଦିନେ ରୁମକୁ ଫେରି ଦେଖିଲି, ଜଣେ ହାଫ ପେଣ୍ଟ ପିନ୍ଧା ଛାତ୍ର ମତେ ଅପେକ୍ଷା କରିଛି । ପରିଚୟରୁ ଜଣା ପଡ଼ିଲା, ଅନ୍ୟ ଜଣେ ସହପାଠିନୀ ସୁସ୍ମିତାର ସେ ସାନ ଭାଇ । ନାନୀର ଆଦେଶରେ ସେ ଚୀନ ଇତିହାସ ସଂବନ୍ଧୀୟ ଏକ ବହି ନେବାକୁ ଆସିଛି । ହାତରେ ଏକ ଚିଠି । ବିନା କୌଣସି ଭୂମିକା ଅବା ସଂବୋଧନରେ ବହି ପାଇଁ ଏକ ଅନୁରୋଧ ସେଥିରେ ।

ମୋ ଜ୍ଞାନମଣ୍ଡଳରେ ବହିଟିର ସଂଜ୍ଞା ଥିଲା 'ମୋଟା ବହି' । ଫରେନ ଅଥର୍ ବହି ଭାବରେ ମୋଠାରେ ତାର ଓଜନ ଥିଲା । ତେଣୁ ଥରେ ଅଧେ ସାଙ୍ଗରେ ଯାଇଥିଲା ଶ୍ରେଣୀକୁ । ନ ହେଉ ପଛେ ଟୋକାଟି ପ୍ରମୋଦିନୀର ଭାଇ ତା ହାତରେ ବହି ନ ଦେବାର କୌଣସି କାରଣ ନ ଥିଲା । ବରଂ ଦେବା ପାଇଁ ଆଗ୍ରହ ଓ ବ୍ୟଗ୍ରତା ଥିଲା ମନରେ । ବହି ସାଙ୍ଗରେ ସୁସ୍ମିତା ଶୈଳୀରେ ମୁଁ ବି ଚିଠିଟିଏ ଲେଖି ପଠାଇଲି-ଭୂମିକା ଓ ସଂବୋଧନ ରହିତ ଚିଠି । ବହି ଦେବା ବେଳର ନା ଆତୁରତା ଥିଲା ସେଥିରେ ନା ଥିଲା କୁଣ୍ଠା; ଥିଲା କେବଳ ଏକ ପୋଖତ ଅନୁଭବି ପ୍ରେମିକର ଗାମ୍ଭୀର୍ଯ୍ୟ ।

ଆଶା ଥିଲା, ପରଦିନ ସୁସ୍ମିତା ବହି ପାଇଁ ଧନ୍ୟବାଦ ଦେବ । ମାତ୍ର ସ୍ମିତ ହସ ଛଡା ତା ମୁହଁରୁ କିଛି ବାହାରିଲା ନାହିଁ । ସଂଭାବିତ ପ୍ରେମିକ ଭଳି ମନେ ହେଲା, ସର୍ବସମକ୍ଷକରେ ସେ କିଛି କହିବାକୁ ଚାହେଁନା; ଚିଠି ଲେଖିବ; ଏକାନ୍ତରେ ପ୍ରେମ ନିବେଦନ କରିବ । କିନ୍ତୁ ବହିର ମାଲିକ ଭାବରେ ଆଶଙ୍କା ଜାତ ହେଲା, ଟୋକାଟି ବହିଟି ମାରିନେଲା । ପୂର୍ବରୁ ସୁସ୍ମିତାର ହସ୍ତାକ୍ଷର ଦେଖି ନଥିବା ଭଳି କାରଣଟି ଆଶଙ୍କାକୁ ଦୃଢ଼ୀଭୂତ କଲା ଯେମିତି, ସୁସ୍ମିତା ପରି ଟୋକା ମୁହଁର କାନ୍ତିହୀନତା ମତେ ଆଶାବାନ କଲା ସେମିତି ।

ସନ୍ଧ୍ୟାରେ ଟୋକାଟି ପୁଣି ହାଜର । ହାତରେ ବହିଟି, ଭିତରେ ଚିଠିଟିଏ । ପୂର୍ବ ତୁଳନାରେ ଲମ୍ବା ଚିଠି । ସମ୍ବୋଧନ ଅଛି ସେଥିରେ, ବହି ପାଇଁ ଧନ୍ୟବାଦ ମଧ୍ୟ । ବହିଟି କୁଆଡ଼େ ଭାରି ସାହାଯ୍ୟ କଲା । ତକିଆ ରୂପରେ ନା ପାଠ୍ୟ ପୁସ୍ତକ ଭାବରେ ସାହାଯ୍ୟ କଲା-ତାର ଉଲ୍ଲେଖ ନ ଥିଲା । ଗୋଟାଏ ଦିନରେ ବହିଟିର ପ୍ରତ୍ୟାବର୍ତ୍ତନ ଏବଂ ପୂର୍ବ ତୁଳନାରେ ଲମ୍ବା ଚିଠିରୁ ମୋର ହୃଦବୋଧ ହେଲା, ସୁସ୍ମିତା ମତେ ଭଲ ପାଇଲାଣି । ତେଣୁ

ପ୍ରତି ବଦଳରେ ମୋର ମଧ୍ୟ ଭଲ ପାଇବା ଉଚିତ । ପରିଣାମ ସ୍ୱରୂପ ମୁଁ ମଧ୍ୟ ଚିଠି ଲେଖିଲି, ଅଧିକ ଲମ୍ବା ଚିଠି । 'ଇତି ତୁମର' ଲେଖିକା ପରେ ଇଚ୍ଛା ହେଉଥିଲା ଚିଠିଟିକୁ 'ତଟ୍ ତଟ୍' କରି ଶେଷ କରିବି । ମାତ୍ର ପ୍ରେମିକ ମହଲରେ ଏ ଟେକନିକ ଏତେ ପୁରୁଣା ହୋଇ ସାରିଥିଲା ଯେ, ସହରକୁ ଆସୁଥିବା ନୂଆ ଫିଲ୍ମ ସବୁରେ କେବଳ ହାସ୍ୟ ଅଭିନେତାମାନେ ବ୍ୟବହାର କରୁଥିଲେ ତାକୁ ।

'ଆଜିକାଲି ମୁଁ ସୁସ୍ମିତାକୁ ଭଲ ପାଏଁ । ପ୍ରମୋଦିନୀ ଖରାପ ଝିଅ । ତୁମର କ'ଣ ଗଲା ମୁଁ ଯାହାକୁ ଭଲ ପାଇଲେ? ସେ ସୁନ୍ଦରୀ କି ଅସୁନ୍ଦରୀ-ସେ କଥା ମୁଁ ବୁଝିବି । ତୁମେ କିଏ ବୁଦ୍ଧି ଦେବାକୁ ମତେ?' ଦ୍ୱିତୀୟ ଚିଠି ପାଇବା ପରେ ସ୍ୱପ୍ନାବସ୍ଥାରେ ମୋ ଡାଇଲଗର ଏକ ଅଂଶ ବିଶେଷ ମାତ୍ର ଏହା । ଦୃଶ୍ୟରେ ଉପସ୍ଥିତ ଥିଲେ ମୋର ସାଙ୍ଗଗଣ । କେଉଁ କାରଣରୁ ପ୍ରମୋଦିନୀକୁ ବାଦ ଦେଇ ହଠାତ ସୁସ୍ମିତା ଆଡ଼କୁ ଢଳି ପଡୁଛି ତାର କାରଣ ଜାଣିବାକୁ ଚାହୁଁଥିଲେ ସେମାନେ ।

କାରଣ ଯେ ନଥିଲା- ତା ନୁହେଁ । ପ୍ରଥମ କାରଣ ନିଜ ତରଫରୁ ସୁସ୍ମିତା ପ୍ରେମ କରିବା ଆରମ୍ଭ କଲା ବେଳକୁ ପ୍ରମୋଦିନୀ ପେନ୍, ଡାଏରୀ ଯାଏଁ ସୀମିତ ରଖିଥିଲା ସମ୍ପର୍କକୁ । ସୁସ୍ମିତା ହାତଛଡ଼ା ହେଲେ ପ୍ରମୋଦିନୀ ପାଖକୁ ଆସିବ ବୋଲି କୌଣସି ଗ୍ୟାରେଣ୍ଟି ନ ଥିଲା । ଅନ୍ତଃମନର ଏ ସବୁ କାରଣ କି ମୁଁ ସାଂଗଗହଣରେ ବଖାଣି ପାରିବି? ସେମାନଙ୍କର କେବଳ ଗୋଟାଏ ଯୁକ୍ତି ହେବ- ପ୍ରମୋଦିନୀ ସହ ପ୍ରେମକୁ ନବେରୁ ଶହେ ପ୍ରତିଶତକୁ ନ ଟାଣି ସୁସ୍ମିତା ସାଙ୍ଗରେ ସଂପର୍କର ଶ୍ରୀଗଣେଶ କରିବା କି ଆବଶ୍ୟକ ? ଯା ଠାରୁ ବଡ଼ ସମସ୍ୟା- ମୁଁ ନିଜେ କେତେ ଥର କହି ସାରିଛି, ନ ହେଲା ନାହିଁ, ସୁସ୍ମିତା ପରି ଅସୁନ୍ଦରୀ ଝିଅ ସହ ତ ପ୍ରେମ କରି ହେବ ନାହିଁ । ଏବେ କେଉଁ ମୁହଁରେ କହିବି- ତାକୁ ଭଲ ପାଏଁ ? ସମସ୍ୟାଟି ମତେ ଯେଉଁ ମାତ୍ରାରେ ଉଦବେଳିତ କଲା ଏବଂ ତାକୁ ନେଇ ଯେମିତି ସ୍ୱପ୍ନ ସବୁ ଦେଖିଲି ସେଥିରୁ ମନେ ହେଲା, ପ୍ରେମିକମାନଙ୍କର କେହି ସାଙ୍ଗ ନ ରହିଲେ ଭଲ । ସ୍ୱଚକ୍ରବ୍ୟୁହରୁ ମୁକୁଳିବା ପାଇଁ ପ୍ରେମିକ ନିଜେ ଅଭିମନ୍ୟୁ ସାଜିଲେ ଭଲ । ଅନ୍ୟମାନେ ପଶି ଅଯଥା ଜଟିଳ କରନ୍ତି ଜଞ୍ଜାଳକୁ ।

ସୁସ୍ମିତା ପ୍ରସଙ୍ଗ ହୋଷ୍ଟେଲ ମହଲରେ ଖୋଲିବି କେମିତି ? ବିକଳ ହୋଇ ପ୍ରଶ୍ନଟିର ଉତ୍ତର ଖୋଜୁଥିବା ବେଳେ ଜଣେ ପିତୃସ୍ଥାନୀୟ ସଂପର୍କୀୟଙ୍କ ସହ ଦେଖାହେଲା । ରାଜଧାନୀର ଜଣେ ଟାଣୁଆ ନେତାଙ୍କୁ ସାକ୍ଷାତ କରି ଫେରୁଥିଲେ ସେ । ଉଦ୍ଦେଶ୍ୟ ଥିଲା ବେକାର ପୁଅ ପାଇଁ ଚାକିରୀ ଯୋଗାଡ଼ । ଯେହେତୁ ମୁଖ୍ୟମନ୍ତ୍ରୀ ଥିଲେ ନେତାଙ୍କ ପୁରୁଣା

ଶତ୍ରୁ, ଭଦ୍ରବ୍ୟକ୍ତି ତାଙ୍କ (ମୁଖ୍ୟମନ୍ତ୍ରୀଙ୍କ) ବଦନାମ କରି ହିଁ ଉଦ୍ଦେଶ୍ୟ ସାଧିବାର ଯୋଜନା କରିଥିଲେ । ଯା'ଛୁ। ତା ବଦନାମ କଲା ପରେ କିନ୍ତୁ ତାକୁ ଜଣାପଡ଼ିଲା ଯେ, ଏ ଭିତରେ ନେତା ମୁଖ୍ୟମନ୍ତ୍ରୀଙ୍କ ଭକ୍ତ ସାଜିଛନ୍ତି । ନିକଟରେ ମନ୍ତ୍ରୀମଣ୍ଡଳ ଫେରବଦଳ ବେଳେ ତାଙ୍କୁ କିଛି ମିଳିବାର ଆଶ୍ୱାସନା ମିଳିଛି । ଅଗତ୍ୟା ଭଦ୍ରବ୍ୟକ୍ତି ନିଜ କଥାର ଖଣ୍ଡନ କଲେ ଏବଂ ଗୁଜବ ଛାପୁଥିବା ସଂବାଦପତ୍ରମାନଙ୍କୁ ଗାଳି କଲେ । ଯଦିଓ ଯା ପରେ ସୁଦ୍ଧା ପୁଅକୁ ଚାକିରୀ ପରିବର୍ତ୍ତେ ନେତାଙ୍କୁ ମିଳିଲା ପରି ଆଶ୍ୱାସନାଟିଏ ମିଳିଲା, ତାଙ୍କ ଅନୁଭୂତି ଶୁଣି ମୁଁ ଦୃଢ଼ ହେଲି ଯେ ଧାରଣାର ମଧ୍ୟ ଗୋଟାଏ ନିର୍ଦ୍ଦିଷ୍ଟ ଜୀବନ କାଳ ଥାଏ । ତାହା ସ୍ଥାୟୀ କିମ୍ବା ଦୃଢ଼ ହେଲେ, କଳଙ୍କି ଲାଗିଯାଏ ସେଥିରେ । ତେଣୁ ଜଣକୁ ଜୀବନ ସାରା ଶତ୍ରୁ ମନେ କରିବାର କୌଣସି ଯଥାର୍ଥତା, ଅଥବା ଅସୁନ୍ଦରୀ ବୋଲି ମାସେ କାଳ ବଦନାମ କରି ହଠାତ ସୁନ୍ଦରୀର ମାନପତ୍ର ଦେବାରେ କୌଣସି ଅସ୍ୱାଭାବିକତା ନାହିଁ । ଏମିତି ବି ଦୁଇ ଦୁଇଟି ଚିଠି ପାଇବା ପରେ ସୁସ୍ମିତା ମତେ ଆଉ ଅସୁନ୍ଦରୀ ଦେଖାଯାଉ ନ ଥିଲା । ତାର ଭାଇ ତ ଲୋଟଣୀ ପାରା ସଦୃଶ  ଭାରି କମନୀୟ ମନେ ହେଉଥିଲା ।

ସପ୍ତାହେ ବହି ଏବଂ ବହିରେ ଚିଠି ଦିଆନିଆ ପରେ ଆମେ ଶ୍ରେଣୀରେ କଥାବାର୍ତ୍ତା କଲୁ । ଏଥିପାଇଁ ସମୟ ନିର୍ଦ୍ଧାରଣ କରି କ୍ଲାସ ପୂର୍ବରୁ ଏବଂ ବାକୀମାନଙ୍କ ଆସିବା ଆଗରୁ ଆସିବାକୁ ପଡ଼ିଲା । ଏପଟେ ଚିଠି ବି ଚାଲିଥାଏ । ପ୍ରେମ ସ୍ୱୀକୃତ ହେବାକୁ ମଧ୍ୟ ଡେରି ଲାଗିଲା ନାହିଁ । କଥାବାର୍ତ୍ତା ଆରମ୍ଭ ହେବା ଉତ୍ତାରୁ ଭାଇର ଆଉ ଆବଶ୍ୟକତା ନ ଥିଲା । ସୁସ୍ମିତା ନିଜେ ଶ୍ରେଣୀରେ ବହି ଫେରାଇଲା । 'ମୋଟା ବହି' ଭିତରେ କାଳେ କେଉଁଠି ପ୍ରେମପତ୍ରଟି ହଜିଯିବ, ମିଳିବ ନାହିଁ- ଏହି ଆଶଂକାରେ ମଲାଟ ଉପରେ ଅତି ସାନ ସାନ ଅକ୍ଷରରେ ପୃଷ୍ଠା ସଂଖ୍ୟା ଲେଖିଦେଲା । ମୁଁ ବି । କିଛି ଦିନ ଭିତରେ ଲାଲ ମଲାଟରେ ନୀଳ କଳା ଅକ୍ଷରରେ ଏତେ ସବୁ ସଂଖ୍ୟା ଲେଖି ହୋଇଗଲେ ଯେ ଡ଼ର ମାଡ଼ିଲା,'ଆଧୁନିକ ଚୀନ ଇତିହାସ' ବୋଲି ଲେଖାଥିବା ଅକ୍ଷର କେତୋଟି ଏଣିକି ଲିଭିଯିବେ । ଆଜି କୌଣସି ଚୀନ ବିରୋଧୀ, ତେଣୁ ଜାତୀୟତାବାଦୀ କିମ୍ବା ଅଣ-ସାମ୍ୟବାଦୀ ମନୋବୃତ୍ତି ନେଇ ଏକଥା ମୁଁ କହୁନାହିଁ, କିନ୍ତୁ ଆମ ପ୍ରେମୀ ଯୁଗଳଙ୍କ ପାଇଁ ଆଧୁନିକ ଚୀନ ଇତିହାସ ଥିଲା ସେଦିନ ଗୁଡ଼ିକରେ ଏକ ପତ୍ରପେଟିକା ମାତ୍ର; ନୀଳ—ହରିତ ରଂଗର ଚିଠି ନେବା ଆଣିବା ଥିଲା ତାର ଏକ ମାତ୍ର କାମ ।

ପରିବର୍ତ୍ତିତ ପରିସ୍ଥିତିରେ ବନ୍ଧୁଗଣଙ୍କୁ ପ୍ରମୋଦିନୀର ବଦନାମ ଓ ସୁସ୍ମିତାର ରୂପ ଗୁଣ ବର୍ଣ୍ଣନା କରିବାରେ କୌଣସି ଅସୁବିଧା ହେଲା ନାହିଁ । ପ୍ରମୋଦିନୀର ବଦନାମ ନିମନ୍ତେ

ବଡ଼ ଅଦ୍ଭୁତ ଥିଲା- ସେ ନିଜେ ସହରି ହେବା ସ୍ଥଳେ ତାର ଗାଉଁଲି ନାମ । ଏଥିରୁ ପ୍ରମାଣିତ ଯେ, ତା'ବାପା-ମା'ର ଅନେକ ସନ୍ତାନ; ଫଳରେ ଝିଅର ଏମିତି ଫାଲ୍‌ତୁ ନାଁ ଟିଏ ରଖି ଦେଇଛନ୍ତି । କିମ୍ବା ବାପା, ଓ ତେଣୁ ମା, ଅଶିକ୍ଷିତ, ଆଧୁନିକ ନାମାବଳିର ଆଭିଧାନ ସଂପର୍କରେ ସଂପୂର୍ଣ୍ଣ ଅଜ୍ଞ । ଅନ୍ୟ ପକ୍ଷରେ ସୁସ୍ମିତାର ନାଁରୁ ସୁସ୍ପଷ୍ଟ ଯେ ସେ ଶିକ୍ଷିତ ଘରର ସନ୍ତାନ; ତା ସହ ପ୍ରେମ ଏବଂ ତଦ୍‌ପରେ ବିବାହ ମୋର ଭାଗ୍ୟ ସୁଧାରି ଦେବ । ସେତେବେଳେ ଆଜି ଭଳି ଆଧୁନିକତା ନ ଥିଲା । ଲୈଲା-ମଜନୁ, କେଦାର-ଗୌରୀ ଆଦି ଫିଲ୍ମ ହାଉସ-ଫୁଲ ଯାଉଥିଲା । କଳ୍ପନାରେ ପ୍ରେମ କଲାବେଳେ ସୁଦ୍ଧା ପ୍ରେମିକ ଭାବୁଥିଲା ପ୍ରେମିକାକୁ ବାହାହେବ । ଏହି ସୂତ୍ର ଅନୁଯାୟୀ ମୋର ବି ଧାରଣା ଥିଲା, ଦଶ ବର୍ଷ ପରେ ହେଉ ନା କାହିଁକି, ସୁସ୍ମିତାକୁ ବାହା ହେବି ।

ପ୍ରେମ ସ୍ୱୀକାର ପରେ ଦିନେ ଅଧେ ସେ ରାସ୍ତାରେ ତାକୁ ହଇରାଣ କରିଥିବା ଗୁଣ୍ଡାମାନଙ୍କର ଚର୍ଚ୍ଚା କଲା । ତାର ଆଶା ଥିଲା, ଫିଲ୍ମ ଅନ୍ଦାଜରେ ଗୁଣ୍ଡାଦଳକୁ ମୁଁ ସାବାଡ଼ କରିବି ଯେଉଁଥିପାଇଁ କି ନା ମୋର ସାହସ ଥିଲା, ନା ବଳ । ଫିଲ୍ମ ଓ ବାସ୍ତବିକତା ମଧ୍ୟରେ ତାଳମେଳ ରଖିବା ନିମନ୍ତେ ମୁଁ କହିଲି, 'ଆଉ ଦିନେ ଯଦି ସେମାନେ କିଛି କରନ୍ତି, ମତେ କହିବ ।' ସେ ହଁ ଭରିଲା । ଥରେ ଅଧେ ପ୍ରମୋଦିନୀକୁ ସ୍ୱପ୍ନରେ ଦେଖିଲି- ସୁସ୍ମିତା ପରି ଅସୁନ୍ଦରୀ ଓ ଫାଲତୁ ଝିଅ କବଳରୁ ମତେ ରକ୍ଷା କରିବା ଉଦ୍ଦେଶ୍ୟରେ ସେ ଗୁଣି ଶିଖୁଥିଲା । ଗାଁର ଯୁବସମାଜ ଏକ ଭବ୍ୟ ସମାରୋହରେ ମୋତେ ମାଲ୍ୟାର୍ପଣ କରିବାର ଦୃଶ୍ୟ ଥିଲା ସ୍ୱପ୍ନରେ । ମୋର ଯାହା ମନେ ପଡ଼େ, ୟା ବାହାରେ ବିଶେଷ କିଛି ଘଟି ନାହିଁ ସେତେବେଳେ ।

ଏପଟେ ମୋର ଆଶଙ୍କା ଅନୁସାରେ, ଭିନ୍ନ ଏକ ସମସ୍ୟା ଆସି ଜୁଟିଲା । ହୋଷ୍ଟେଲର ସାଥୀଗଣ ସୁସ୍ମିତା ଓ ମୋର ପ୍ରେମକୁ ମନଗଢ଼ା ବୋଲି ଗୁଜବ ରଟିଲେ । ମୋ ଆଗରେ ବାଃ ବାଃ କରି ପଛରେ ସୁସ୍ମିତାକୁ ଅସୁନ୍ଦରୀ ବୋଲି ମଧ୍ୟ ବଦନାମ କଲେ । କୁଆଡ଼େ କେହି ନ ମିଳିବାରୁ ମୁଁ ତାକୁ ଧରିଛି । ତିଳକୁ ତାଳ କରି କଥାକୁ ଥୋଇଛି । ଉଲ୍‌ସେଇବା ପାଇଁ ସେମାନେ ମତେ ଶୁଣନ୍ତି । ପ୍ରେମ ପତ୍ର ସବୁ କୁଆଡେ ଫର୍ଜି ।

ଗୁଜବରେ ଦମ ନ ଥିଲା । ଗୁଜବରଟନାକାରୀକୁ ସାବାଡ଼ କରିବା ପାଇଁ ମୋ ପାଖରେ ଅକାଟ୍ୟ ଯୁକ୍ତି ସବୁ ଥିଲା । କିନ୍ତୁ ସାମନା ସାମନି ହେଲେ ସିନା । ସେ ତ ଗୁଜବ, ପଛରେ ରହିବ କେବଳ । ଯେହେତୁ ସୁସ୍ମିତାର ପ୍ରେମଠାରୁ ବନ୍ଧୁମାନଙ୍କ ମନରେ ବିଶ୍ୱାସ ସୃଷ୍ଟି କରିବା ପ୍ରଶ୍ନ ମୋ ପାଇଁ ଅଧିକ ମହତ୍ତ୍ୱପୂର୍ଣ୍ଣ, ଅନେକ ପରିଶ୍ରମ ପରେ ସୁଦ୍ଧା ମୁଁ ନିରାଶ ରହୁଥିଲି ।

ଗାଁ ପିଲାଙ୍କ ଇଜ୍ଜତ ରକ୍ଷା ନିମନ୍ତେ ମଣିଷ ଏତେ କଷ୍ଟ କରି ଯଦି, ବନ୍ଧୁମାନଙ୍କ ଈର୍ଷାର ଶୀକାର ହେଲା କ'ଣ ବା କରାଯିବ ? 'ସତ କି ଆଉ ଲୁଚି ରହେ ? ଦିନେ ନା ଦିନେ ସେମାନଙ୍କ ଆଖି ଖୋଲିବ ।' ଦୁଷ୍ଚିନ୍ତାର ସାମୟିକ ଉପସଂହାର ପାଇଁ ଶେଷ ପଦକ ବେଶ ସାହଯ୍ୟ କରୁଥିଲା ମତେ ।

ଏଭିତରେ ଥରେ ଗାଁକୁ ଯିବାର ହେଲା । ସୁସ୍ମିତା ସହ ପ୍ରେମ ପରେ ଏହା ମୋର ପ୍ରଥମ ଗ୍ରାମ୍ୟ-ଯାତ୍ରା । ହୋଷ୍ଟେଲର ତିକ୍ତ ଅନୁଭୂତିର ପରିଣାମ ସ୍ୱରପ ଗାଁ ଟୋକାଏ ସହରି ପ୍ରେମରେ ସଫଳତା ପାଇଁ ମୋର ଭବ୍ୟ ସମାରୋହରେ ମାଲ୍ୟାର୍ପଣ କରିବେ-ଏ ଆଶା ନ ଥିଲା ବରଂ ପ୍ରେମର ପ୍ରମାଣ ପେଶ କରିବାକୁ ସଜ୍ଞାନରେ ପ୍ରସ୍ତୁତି କରୁଥିଲି । ସେଠି କେହି ପ୍ରେମକୁ ଫର୍ଜି ନ କହୁ । ଚିଠି ସବୁ ନେଇଥିଲି; ହସ୍ତାକ୍ଷର ଜଣେ ଝିଅର - ତାହା ପ୍ରମାଣ କରିବା ପାଇଁ କେତୋଟି ଯୁକ୍ତି ବି ସାଉଁଟିଥିଲି ସାଙ୍ଗରେ । ୟା'ବାହାରେ ସୁସ୍ମିତା ଦତ୍ତ ଏକ ରଙ୍ଗୀନ ରୁମାଲ ଥିଲା ପାଖରେ; ଛୁଞ୍ଚିରେ ଫୋଡ଼ି ଫାଡ଼ି ହୋଇ ଆମ ଦୁହିଁଙ୍କ ନାଁର ପ୍ରଥମ ଅକ୍ଷର ଲେଖାଥିଲା ସେଥିରେ । ୟା'ପରେ ବି ଯଦି ସଂନ୍ଦେହର ଧୂଆଁରହେ, ଆକ୍ରମଣାତ୍ମକ ଭଙ୍ଗୀରେ ଗାଳି ଦେବାକୁ ସ୍ଥିର କରିଥିଲି । 'ତୁମର ଯଦି ବିଶ୍ୱାସ ହେଉ ନାହିଁ, ପଇସା ଜାଚି କି ମୁଁ ଆଉ ବିଶ୍ୱାସ ସୃଷ୍ଟି କରିବି ? ରୁହ ଚିରଦିନ ଅମା ଅନ୍ଧାରରେ, କା'ର କ'ଣ ଯିବ ?'

ଗାଁରେ କିନ୍ତୁ ଓଲଟା ସ୍ଥିତି । ଆବଶ୍ୟକତାଠାରୁ ଅଧିକ ସତ ମଣିଲେ ଟୋକାଏ ମୋ କଥାକୁ । ମାସେ ପୁରୁଣା ପ୍ରେମର ଅର୍ଥ କଲେ ମାସେ ପୁରୁଣା ଗର୍ଭ । ଆଶ୍ଚର୍ଯ୍ୟ ଲାଗିଲା ତାଙ୍କୁ, କେମିତି କହୁଛି ଏ ସବୁ ମୁଁ ବିଚ୍ ବଜାରରେ । ଏ ତ ଶେଜ ପାଛୁଡ଼ା ଦେଇ ଢାଙ୍କିବା ବେଳ । ଆରେ ମୂର୍ଖଗଣ କଲେଜିଆ ପ୍ରେମ ହେଲା କେବଳ କେତେଗୋଟି ପ୍ରେମ ପତ୍ର ଏବଂ ସେ ବି ବହି ଭିତରେ; ରୁମାଲ ଦିନିକିଆ; ପେନରେ କେଂଚାକେଂଚି ; ପାଦର ବୁଢ଼ାଆଙ୍ଗୁଳିକୁ ଦଳାଦଳି । ବେଶ ଏତିକି, ନା କମ ନା ବେଶୀ ।

କେବଳ ଯଦି ଯୁବ ସମାଜ ରହୁଥାନ୍ତା ଗାଁରେ, ପ୍ରେମର କଦର୍ଥ ହେବାରେ ମୋର ଆପତ୍ତି ନ ଥାନ୍ତା । ଗାଁରେ ବାପା'ମା ମଧ୍ୟ ଥିଲେ ଏବଂ ତାଙ୍କୁ ପ୍ରେମ ବିଷୟକ ସଂବାଦ ପ୍ରାପ୍ତି ପାଇଁ ଖବର କାଗଜ ଖରିଦ କରିବାକୁ ପଡ଼ିଲା ନାହିଁ । କାନ୍ଦି କାନ୍ଦି ମା ପଚାରିଲା,'ଝିଅ କେଉଁ ଜାତିର ? ଦୁଇ ଚାରି ଜଣଙ୍କୁ ଧରି ତୋ ବାପା ଲଗ୍ନ ସ୍ଥିର କରି ଆସନ୍ତୁ । ଯାହା ହେଲେ ମୋର ନାତି ତ । ତଣ୍ଟି ଚିପି ମାରିବାକୁ ତା'ମାକୁ ବାଧ୍ୟ କରି ମୁଁ ବା କି ପୁଣ୍ୟ ଅର୍ଜିବି ?' ବାପା ବାପାର ଗାମ୍ଭୀର୍ଯ୍ୟକୁ ବଜାୟ ରଖି କେଉଁ ଏକ ଦୂର ସଂପର୍କୀୟ ପାତ୍ରୀର

ପ୍ରସ୍ତାବ ବାଢ଼ିଲେ ଯେଉଁଥିରେ ଘରର ଉଭୟ ସାମାଜିକ ଓ ଆର୍ଥିକ ସ୍ଥିତି ସୁଧୁରିବାର ସମ୍ଭାବନା ଥିଲା । ମୋ ଜାଣିବାରେ ପାତ୍ରୀଟି ସୁସ୍ମିତା ପରି ଅସୁନ୍ଦରୀ ନ ଥିଲା; ହେଲେ କି ହେବ ସହରି ବି ନ ଥିଲା । ତେଣୁ ମୋ ପାଇଁ ପ୍ରସ୍ତାବଟି ଗ୍ରହଣଯୋଗ୍ୟ ହୋଇ ପାରିଲା ନାହିଁ ।

ପ୍ରେମ ତ ନୁହେଁ, ପଶିଗଲି ଆଣ୍ଠୁଏ କାଦୁଅରେ—ଦୁଇଦିନ ପରେ କାହାକୁ କିଛି ନ କହି ସହରକୁ ଫେରିଲାବେଳେ ଏହି ସିଦ୍ଧାନ୍ତରେ ପହଞ୍ଚି ସାରିଥାଏ । ପ୍ରଥମ ଗୋଷ୍ଠୀ ବନ୍ଧୁଙ୍କ ଠାଣିରେ, 'ଆମ ଦେଇ ପ୍ରେମ ଫ୍ରେମ ତ ହୋଇ ପାରିବ ନାହିଁ' କହି ଆରମ୍ଭରୁ ବାଟ କାଟିଥିଲେ, ଗାଁ ଟୋକା ମୋର କି ଉଜାଡ଼ି ଦେଇଥାନ୍ତେ ଭଲା ? 'ସହରକୁ ଗଲା, କିଛି କରି ପାରିଲା ନାହିଁ' କହି ସେମାନେ ମଜାକ ଉଡ଼ାଇଥିଲେ କି ମୁଁ ଉଡ଼ି ଯାଉଥିଲି ? ହୋଷ୍ଟେଲ ସାଙ୍ଗ ବି ଦୁଇ ବର୍ଷ କ'ଣ ସହରରେ ରହିଲେ, ପୁରା ସହରିଆ ପାଲଟି ଗଲେ । ଆତ୍ମୀୟତାର ନାଁ ଗନ୍ଧ ନାହିଁ କଥା ଭାଷାରେ । କାର୍ଟୁନ କଲେ କେବଳ! ଆନ୍ତରିକତା ନେଇ କେହି ଶୁଣିଥାନ୍ତେ ଯଦି, ପାଛିଆରେ ପାଛିଏ ପ୍ରେମର ସନ୍ତକ ସାଉଁଟି ଗାଁକୁ ଯିବାର କି ମତେ ଦରକାର ପଡ଼ିଥାନ୍ତା ? ଗାଁ ଟୋକା କ'ଣ ସତରେ ଏତେ ମଫ ? କେତେ ସିନେମା ଦେଖୁଛନ୍ତି, ତାପରେ ସୁଦ୍ଧା ଜାଣି ପାରିଲେନି ସହରି ପ୍ରେମ କ'ଣ ? ବିଠି ଦିଆନିଆ, 'ମତେ ଆପଣ ନ ଡାକି ନାଁ ଧରି ଡାକିଲେ ଖୁସି ହେବି' ଭଳିଆ କେତେଗୋଟି ଡାଇଲଗ ଏବଂ ଷ୍ଟୁଡିଓର ବକୁଳ ଗଛ ଚାରିକଡ଼େ ତେଲିଘଣାର ବଳଦ ଘୁରିଲା ପରି କେତେ ଭାଉର ଭୂଆଁ ବୁଲିବା । ବେଶ ଏତିକି ତ !

ହଷ୍ଟେଲକୁ ଫେରି ଶୋଇବାକୁ ଚେଷ୍ଟା କଲି । ମୁଣ୍ଡଟା ଭାରି ଭାରି ଲାଗୁଥାଏ । ମଳି ମୁଣ୍ଡିଆ ଦୁଇ ଚାରିଜଣଙ୍କୁ ଧରି ବାପା ହୋଷ୍ଟେଲରେ ଯଦି ହାଜର ହୁଅନ୍ତି ? ଅଡ଼ି ବସନ୍ତି, ପାତ୍ରୀ ଘରକୁ ଯାଇ ଲଗ୍ନ ଦେଇ ଆସିବେ ? ନିଦ ବଦଳରେ କେବଳ ଦୁଷ୍ଚିନ୍ତା ଆସୁଥାଏ ମୁଣ୍ଡକୁ । ସୁସ୍ମିତାକୁ ନେଇ ପରିବାରରେ ବଦନାମ ହେବାଠାରୁ ବାପା ଓ ତାଙ୍କ ଦଳକୁ ଆଣି ସୁସ୍ମିତା ଆଗରେ ଅପଦସ୍ତ ହେବାଟା ବଡ଼ ସମସ୍ୟା ଭଳି ଲାଗୁଥାଏ ।

ସୁସ୍ମିତା ଓ ମୋର ପ୍ରେମ କାହାଣୀରେ ଏବେ ନୂଆ ଜଣଙ୍କର ପ୍ରବେଶ ହେଲା; ନାଁ ତାର ଅନାଥ । ହିନ୍ଦୀ ସିନେମାର ପଟ୍ଟଭୂମିରେ ତାକୁ ଖଳନାୟକ କହିଲେ ବୁଝିବାକୁ ସହଜ ହେବ, ଅବଶ୍ୟ ହରଦମ ସେ ସିଗାରେଟର ଧୂଆଁକୁ କୁଣ୍ଡଳି ଆକାରରେ ଶୂନ୍ୟକୁ ଛାଡୁ ନଥିଲା କିମ୍ବା ମୋଟର ସାଇକେଲର ପଟୁଆରରେ ଆସି ନଥିଲା । ଅନାଥ ଥିଲା କଲେଜର ଜଣେ ଗୁଣ୍ଡା ଶ୍ରେଣୀର ଛାତ୍ର ବା ଅନ୍ୟ ଅର୍ଥରେ କହିଲେ ଛାତ୍ର ଶ୍ରେଣୀର ଗୁଣ୍ଡା । ସେଦିନ

ସେ ଆମ ରୁମ୍‌କୁ ଆସି ପଚାରିଲା, 'ହରୀଶ କିଏ?' ଦୂରଦର୍ଶନର ବାଚକକୁ ଚିହ୍ନିଲା ପରି ମୋର ରୁମମେଟ ମାନେ ତାକୁ ଜାଣନ୍ତି; ସେ ଆମକୁ ଜାଣେନା । ଏକ ଅନାଗତ ବିପଦର ବାଦଲକୁ ଏଡ଼ାଇଲା ପରି ବାକୀମାନେ ତାକୁ ମୋ ଆଡ଼କୁ ବଢେଇ ଦେଲେ ।

'ଆସ, ତୁମ ସାଙ୍ଗରେ କାମ ଅଛି ।' ବାହାରକୁ ଆସିବା ପାଇଁ ମୋ ଉପରେ ଆଦେଶ ଜାରି କଲା ସେ । କିଛି ବର୍ଷର ହଷ୍ଟେଲ ରହଣିରୁ ଆମ ସମସ୍ତଙ୍କୁ ଜଣା, ଟାଉନ ପିଲାଙ୍କ ହଷ୍ଟେଲ ବାସୀଙ୍କଠାରେ 'କାମ'ର ବିଷଦ ଅର୍ଥ ମାଡ଼ ବା ଧମକି । ମୁଁ କିନ୍ତୁ ତା ସାଙ୍ଗରେ ରୁମରୁ ବାହାରିଆସିଲା ବେଳେ ଆଖିର ଇସାରାରେ ସାଙ୍ଗମାନଙ୍କୁ କହୁଥାଏ, ଏହା ସତ ସତିକା କାମ । 'ପ୍ରେମ କଲା ପରେ ତୁମମାନଙ୍କର ପରି ମୁଁ କି ଆଉ 'ମଫ' ମାର୍କା ଅନ୍ତେବାସୀ ହୋଇ ରହିଛି କି? ଏବେ ତ ମୋର ସାହ୍ୟା ବଢ଼ିଗଲାଣି । ଟାଉନ ପିଲାଙ୍କ ସାଙ୍ଗରେ ଦୋସ୍ତି ହେବ, କାମ ପଡ଼ିବ; କେତେ ଯିବା ଆସିବା ଚାଲିବ । ସେଥିପାଇଁ ଅନାଥର ଏ ଅବେଳିଆ ନିମନ୍ତ୍ରଣ ।' ପୁଣି ଡର ବି ମାଡୁଥାଏ, ମଲି ଆଜି ।

'ରିଙ୍କୁ ସାଙ୍ଗେ ତୁମର କି ସଂପର୍କ?' ହଷ୍ଟେଲର ଛାତରେ ପହଞ୍ଚିଲା ପରେ ସେ ମତେ ପଚାରିଲା । ତା ପ୍ରଶ୍ନରେ ଉତ୍ତର ଜାଣି ସାରିଥିବାର ଭାବ ଥାଏ ଅଧା, ଜାଣିବା ପାଇଁ ଇଚ୍ଛା ବି ଥାଏ ଅଧା । ଜଣେ ଅପରିଚିତ ବନ୍ଧୁ ଏବଂ ପରିଚିତ ଗୁଣ୍ଡାର ସୀମା ଉପରେ ଠିଆ ହୋଇଥାଏ ସେ; ଗୁଣ୍ଡା ପରି 'ତୁ ତା' କରୁ ନ ଥାଏ କି ବନ୍ଧୁଭଳି ଆତ୍ମୀୟତା ରଖି ନ ଥାଏ ।

ସେତେଦିନ ଯାଏଁ ମତେ ଜଣା ନଥିଲା, ସୁସ୍ମିତାର ଡାକ ନାଁ ରିଙ୍କୁ । ଅନୁମାନ କରିନେଲି । ଯଦି ମୁଁ ଅନାଥ ସ୍ତରର ହୋଇଥାନ୍ତି କିମ୍ବା ଅନାଥ ମୋ ସ୍ତରରେ ଥା'ନ୍ତା ଅନୁମାନ କରିବାର ଆବଶ୍ୟକତା ନଥିଲା । ବରଂ ନିଶରେ ହାତ ମାରି ତେରେଛା ନଜରରେ ଓଲଟା ପଚାରିଥାନ୍ତି, 'କେଉଁ ରିଙ୍କୁ? ତୁମେ କିଏ ପଚାରିବାକୁ ଏ ସବୁ ବ୍ୟକ୍ତିଗତ ପ୍ରଶ୍ନ?' ଉପସ୍ଥିତ ସ୍ଥିତିରେ ମୋର ଭିନ୍ନ ରୂପ । ଅନାଥକୁ ସହଜ କରିବା ମତଲବରେ ପ୍ରଶ୍ନ ଛଳରେ ଜବାବ ଦେଲି, 'ଆଚ୍ଛା ସୁସ୍ମିତାର ଡାକ ନାଁ ରିଙ୍କୁ ତା ହେଲେ?' ମୋ ନିଜ ସୁରକ୍ଷା ଦୃଷ୍ଟିରୁ ଅନାଥକୁ ତା ପୂର୍ବୋକ୍ତ ସୀମାରେ ରହିବା ଭଲ?

ତା' ବକ୍ତବ୍ୟରୁ ସ୍ପଷ୍ଟ ହେଲା ଯେ, ପ୍ରାୟ ବର୍ଷେ ହେଲାଣି ସୁସ୍ମିତା ସହ ତାର ପ୍ରେମ ଚାଲିଛି । ଯା'ପର ଉକ୍ତିରେ ତାର ଧମକି ଦେବା କଥା, 'ତାକୁ ନେଇ ମୁଣ୍ଡ ଖେଳାଅନା । କଥା ଖରାପ ହେବ ।' କିନ୍ତୁ ସେ ଏସବୁ କହୁ ନଥିଲା । ଯେଉଁ କେତୋଟି ତଥ୍ୟକୁ ଭିତ୍ତିକରି ସେ ଏକଥା କହିଲା, ତାହା ଥିଲା ପ୍ରମୋଦିନୀ ସହ ମୋ ପ୍ରେମଠାରୁ ମଧ୍ୟ ଦୁର୍ବଳ । ଦିନେ ରିଙ୍କୁ ପାଇଁ ଦୋକାନରୁ ବହିଟିଏ ଆଣି ଦେଇଥିଲା ଏବଂ ଆଉ ଦିନେ ରିଙ୍କୁ ଖାତିରରେ

ଜଣେ ଛୋଟକାଟିଆ କମେଣ୍ଟ କରା ଦାଦାକୁ ଧମକେଇଥିଲା । ତା'ଛଡା ସୁସ୍ମିତାର ମା' ଗୋଟାଏ କଲୋନିରେ ରହୁଥିବା ଅନାଥକୁ 'ପୁଅ' ସଂବୋଧନ କରନ୍ତି ଯାହାର ଅର୍ଥ ଅନାଥ ଭାଷାରେ ଜୋଇଁ ବ୍ୟତୀତ ଭିନ୍ନ କିଛି ନୁହେଁ । 'ଏତେ ସବୁ ହେଲା ପରେ ସେ ଯଦି ଆଉ ଜଣକୁ ଭଲପାଏ, ତାକୁ କ'ଣ ଭଲ ଝିଅ କୁହାଯିବ?' ସେ ପୁଣି ପ୍ରଶ୍ନ କଲା । ଅସଲରେ ପ୍ରତ୍ୟେକ ଉକ୍ତିରେ ପ୍ରଶ୍ନ କରିବା ତା ଶୈଳୀର ଏକ ବିଶେଷତ୍ୱ । ସୁସ୍ମିତା ସହ ନିଜ ଆତ୍ମୀକ ସଂବନ୍ଧକୁ ଭାଷା ଦେଲା ବେଳେ ମଝିରେ ମଝିରେ ସେ ଭାବବିହ୍ୱଳ ହୋଇ ପ୍ରଶ୍ନ କରେ । ଜାଣି, ମଫ ମାର୍କା ହଷ୍ଟେଲବାସୀଙ୍କ ପରି ଡରୁଆ ଟୋକାଟିଏ ସେ; ସୁସ୍ମିତାର ପ୍ରେମ ବିହୁନେ ଶୂନ୍ୟ ହୋଇଯିବ ତାର ଅନ୍ତଃମନ ! ଭୟ ବଦଳରେ କରୁଣାର ପ୍ରାର୍ଥୀ ସେ ! କିନ୍ତୁ ପର ମୁହୂର୍ତ୍ତରେ ତାର ଜଣାଶୁଣା ଗୁଣ୍ଡା ଛବି ମନେ ପଡ଼ିଲେ ଡର ମାଡ଼େ; ସେ ଯାହା ପଚାରୁଛି 'ହଁ' ଭରିବାକୁ ମନ ଡାକେ ।

ମୁଁ ସବୁ ମାନିଗଲି: ସୁସ୍ମିତା ସହ ମୋର ପ୍ରେମ ଚାଲିଛି; ଗପିଲା ବେଳେ ରୋଜ ଚିଠିଟିଏ ବି ଦିଏ ସେ । ଆଧୁନିକ ଚୀନ ଇତିହାସର ଭୂମିକା କଥା କହିଲି । ମୋର କହିବା କଥା, ସବୁ ଭୂଲ୍ 'ମୋଟା ବହି' ଆଉ ସୁସ୍ମିତାର; ଆଉ ମତେ ସେ ଭଲ ପାଇଲା; ଯାହା ଦଣ୍ଡ ଦେବା କଥା ତାକୁ ଦିଅ । ଚିଠି ଗୁଡ଼ିକ ବି ପଢିଲା, କିଛି 'ଆମିଷ' ଦୃଷ୍ଟି ଗୋଚର ନ ହେବାରୁ ବିରକ୍ତ ହୋଇ କହିଲା, କାଲି ଆସିବ ପୁଣି । 'ଏ ସବୁ ପ୍ରେମ ଚିଠି ନା ଆଉ କିଛି'? ତାର ଚିରାଚରିତ ଶୈଳୀରେ ପ୍ରଶ୍ନଟିଏ ପଚାରି, ଉତ୍ତରର ଆଶା ନ ରଖି ସେ ଚାଲିଗଲା ସେଦିନ । ପ୍ରେମରେ 'ଆମିଷ' ଖୋଜିବାର ତାର ଅକ୍ଳାନ୍ତ ପରିଶ୍ରମରୁ ମନେ ହେଲା, ଆମ ଗାଁ ଟୋକା ଓ ଅନାଥ ମଧ୍ୟରେ କିଛି ଫରକ ନାହିଁ, ପ୍ରେମ ଓ 'ଆମିଷ' ଭିତରେ ଏମାନଙ୍କୁ ପ୍ରଭେଦ ଜଣା ନାହିଁ ।

ହଷ୍ଟେଲରେ କେହି ଅନାଥ ପ୍ରସଙ୍ଗ ପଚାରିବା ଆଗରୁ ମୋ ତରଫରୁ ସଫେଇ ଦେଲି, 'ଆଜି ଜାଣିଲି, ସୁସ୍ମିତା କେମିତ ଝିଅ ! ଏକା ସାଙ୍ଗରେ ଦୁଇ ଜଣକୁ ଭଲ ପାଉଛି ସେ' । ଏହା ପ୍ରମାଣ କଲା ଯେ ଅନାଥ ମାଡ଼ ବା ଧମକି ଦେଇନାହିଁ, ବରଂ ବନ୍ଧୁତା ନିମନ୍ତେ ନିମନ୍ତ୍ରଣ ଦେଇଛି । ପୁଣି ଅନାଥ ଓ ମୁଁ ଏକା ସ୍ତରର ପ୍ରେମିକ, ତେଣୁ ଏକା ପାହ୍ୟାର ଗୁଣ୍ଡା ଓ ସାଙ୍ଗ ମଧ୍ୟ । ଭବିଷ୍ୟତରେ କେବେ 'କିଛି' ହେଲେ, ତାକୁ ଆପୋଷ ଝଗଡ଼ାର ଦରଜା ମିଳିବ, କାରଣ ମୁଁ ଏବେ ଟାଉନ ଗୋଷ୍ଠୀର । ହେଲେ ମୋର ଅନ୍ତଃମନରେ ସେଦିନ ଧକ୍କା ଲାଗିଲା, ଜଣେ ଗାଁ ପିଲାକୁ ଏଠି କେବଳ ଝଗଡ଼ା କାହିଁକି, ପ୍ରେମ ବି କରିବାର ଅଧିକାର ନାହିଁ । ସୁସ୍ମିତାକୁ ଏଣିକି ଚିଠି ଲେଖିବି ବା ତାଠୁ ଚିଠି ପାଇବି ଅନାଥର ଖାତିରରେ । ଧକ୍କା

ଏତେ ଭୀଷଣ ନ ଥିଲା ଯେ ତାକୁ ଭିତ୍ତି କରି ଅନାଥର ଗୁଣ୍ଡାରାଜ ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କରାଯିବ । ପ୍ରେମିକା ନାଁରେ ୟାଟୁ ସ୍ୟାଟୁ ବକିଥିବାର ବା ଶୁଣି ପ୍ରତିବାଦ କରିନଥିବାର ଅପରାଧବୋଧ ମଧ୍ୟ 'ହଁ ମ, ମୁଁ ନିଜେ ଚିଠି ଗୁଡ଼ିକୁ ସାଙ୍ଗମାନଙ୍କୁ ଦେଖାଉ ନାହିଁକି? ଏବେ ଅନାଥ ପଢ଼ିଲେ କି କ୍ଷତି' ପରି ପ୍ରଶ୍ନିଳ ଯୁକ୍ତି (ଶୈଳୀଟି ଅନାଥଠାରୁ ଶିଖିଥିଲି) ବଳରେ କିଛି ବେଳ ଉତ୍ତାରୁ ଚାପି ହୋଇ ପଡ଼ିଲା ।

ଅନାଥ ପ୍ରସଙ୍ଗ ଉତ୍ତାରୁ, ମଳିମୁଣ୍ଡିଆ ଦଳକୁ ନେଇ ବାପାଙ୍କ ସହର ଆଗମନର ଯେଉଁ ଭୟ ଚିନ୍ତାରାଜ୍ୟରେ ଏତେ ବିରାଟ ଆକାର ଧାରଣ କରିଥିଲା, ତାହା ଅଣୁମାତ୍ର ହୋଇ ରହିଗଲା । ବରଂ ଅନାଥର ଦୁଷ୍ଟଭାବକୁ କାଟୁ କରିବା ନିମନ୍ତେ କେବେ କେବେ ତାର ଦରକାର ପଡ଼ିଲା । ଯଦିଓ ସୁସ୍ମିତା ସାଙ୍ଗରେ ବି ଚିଠି ଦିଆନିଆ ଓ ଗପ ଚାଲିଥାଏ (ତା ଭାଇ ଆଜିକାଲି କୁଆଡ଼େ ଗଲା କେଜାଣି ।) ତା ପାଇଁ ବିଶେଷ ଆଗ୍ରହ ନ ଥାଏ, ଥାଏ କେବଳ ଅନାଥର ଭୟ । ମୋ ପାଇଁ ନ ହେଉ ପଛେ, ତା ପଢ଼ିବା ପାଇଁ ରୋଜ ଚିଠି ଆସିବା କଥା । ଭୟ ରହିଥାଏ, ଦିନେ ନ ଆସିଲେ ଚିଠି, ମଣ୍ଡାଖିଆ ଅସୁର ପରି ଅନାଥ ଡେ଼ଇଁ ପଡ଼ିବ ବନ୍ଧୁ ଓ ଗୁଣ୍ଡାର ସୀମା ଉପରୁ, ପଶିଯିବି ଗୁଣ୍ଡା ରାଜ୍ୟରେ । ତେଣିକି ମୋର ଅବସ୍ଥା କଣ ହେବ ? ଭାବି ପାରେନା ଆଗକୁ ଆଉ ।

ଚିଠିରେ ସୁସ୍ମିତା ଆବିଷ୍କୃତ ନୂଆ ପ୍ରେମ ସଂବୋଧନଗୁଡ଼ିକୁ ଆଧାର କରି ଅନାଥ ଓ ତା' ଦଳ ରାସ୍ତାରେ ତାକୁ କମେଣ୍ଟ କଲେ । ସୁସ୍ମିତା ଜାଣିଲା ତା ଚିଠି ଅନ୍ୟମାନେ ପଢୁଛନ୍ତି । ଦିନେ ଖୋଲାଖୋଲି ପଚାରିଲା, 'ତୁମ ଚିଠି ଆଉ କିଏ ପଢ଼େ କି ?' ମୁଁ ମନା କଲି । 'ଯଦି କିଏ ଜବରଦସ୍ତି ଚିଠି ନେଇ ଯାଉଛି କୁହ ଗୋଟାଏ ଦିନରେ ତାକୁ ଠିକ କରିଦେବି ।' ସେ ଆଶ୍ବାସନା ଦେଲା । ଥରେ ଅଧେ ତ ମନ କଲା, ସବୁ କହିଦେବି । ସେ ତ ପୁଣି ଟାଉନର । ଅନାଥକୁ କହି ଥରେ ଯେମିତି କେଉଁ ଏକ ଛୋଟିଆ 'ନାଥ'କୁ ଧମକି ଦିଆ କରେଇ ଥିଲା, ଆଜି କେଉଁ ବଦ୍ରିନାଥ କିମ୍ବା ବିଶ୍ବନାଥର ସହାୟତାରେ କଣ ଅନାଥକୁ ସାବାଡ଼ କରି ପାରିବ ନାହିଁ ? ତା ନିଜ ବଳ ବି ଥାଇପାରେ ? ମାତ୍ର ମୋର ପୁରୁଷତ୍ବ ସେଠି ବାଧା ଦେଲା । ଏମିତି ବି ଖଳନାୟକ ଦାଉରୁ ତରୁଆ ନାୟକକୁ ରକ୍ଷା କରିବା ପାଇଁ ନାୟିକା ଖଣ୍ଡା ଧରିବାର ପରମ୍ପରା ହିଂଦୀ ସିନେମାକୁ ପଶି ନଥିଲା । ନାୟିକାକୁ ନେଇ ମାଡ଼ ଝଗଡ଼ା ବେଳେ ଆତ୍ମରକ୍ଷା ନିମିତ୍ତ ନାୟିକାମାନେ ରାସ୍ତାରୁ ଟେକା ଗୋଟାଇବାର ବି ଦୃଶ୍ୟ ନ ଥିଲା କେଉଁଠି । ମୋର ଅସହାୟତାକୁ ଘୋଡ଼େଇବା ନିମିତ୍ତ ମୁଁ ବାରମ୍ବାର ମିଛ କହିଲି ସୁସ୍ମିତା ଆଗରେ, ହଷ୍ଟେଲରେ, ସବୁଆଡ଼େ ।

ଏଥି ଅନ୍ତେ ନାଟକର ଶେଷ ଦୃଶ୍ୟ ବିନା କୌଣସି ନାଟକୀୟତାରେ ଘଟିଗଲା । ହିଂଦୀ ସିନେମା ପରି ନା ତାହା ଦୁଃଖାନ୍ତକ ଥିଲା, ନା ସୁଖାନ୍ତକ, ନା ଥିଲା କୌତୁକ ଭରା । ବା ଏହା ମଧ୍ୟ କୁହାଯାଇପାରେ ରୋଜ ଦିନର ଜୀବନ କାହାଣୀ ପରି ତହିଁରେ ଟିକିଏ ଦୁଃଖ ଥିଲା, ଟିକିଏ ସୁଖ, ଟିକିଏ ହସ ଥିଲା, ଟିକିଏ ଅବଶୋଷ । ରାଗ-ରୋଷ ବି ଥିଲା ଟିକିଏ ଟିକିଏ । ହେଲେ ସେସବୁ ଏମିତି ଫେଣ୍ଟାଫେଣ୍ଟି ହୋଇ ରହିଥିଲା ଯେ, ଅସ୍ୱାଦୁକର ମନେ କରି ଗୋଟାକୁ କାଢ଼ି ଫିଙ୍ଗିବା ବା ସୁସ୍ୱାଦୁକର କିଛି ଧରିମାରି ତହିଁରେ ଭର୍ତ୍ତି କରିବା ସହଜ ନଥିଲା ।

ମଲାଟଟି ସଂଖ୍ୟାରେ କୁଚ୍‌କୁଚ୍‌ ହୋଇ ପଡ଼ିଥିବାରୁ ନୂଆ ମଲାଟ ମଢ଼େଇ ସୁସ୍ମିତା ସେଦିନ ମତେ 'ମୋଟା ବହି' ଫେରାଇଲା । ମଲାଟ ଖାଲି ଥାଏ; ଉପରେ ସଂଖ୍ୟା ଲେଖା ନ ଥାଏ କିଛି । ବହି ଦେଲା ପରେ କହିଲା, 'ଆଜି କ୍ଲାସ କରିବିନି । ଘରକୁ ଫେରିଯିବି ।' 'ମୋ ସାଙ୍ଗରେ ବୋର ହୋଇଗଲ ବୋଧେ ।' ସଫା ମଲାଟରେ ଆଖି ରଖି ମୁଁ କହିଲି ।

ତୁମ ସାଁଗରେ ନୁହେଁ, ପ୍ରେମ ସାଙ୍ଗରେ ।' ତାର ଛୋଟିଆ ଜବାବ ।

ମୁଁ ବି କ୍ଲାସ ନ କରି ହଷ୍ଟେଲକୁ ଫେରି ଆସିଲି । ଅନାଥକୁ ଚିଠି ବଦଳରେ 'ମୋଟା ବହି'ର ସାଧା ମଲାଟଟି ଦେଖାଇଲାରୁ, ସାମାନ୍ୟ ଡେରିରେ ହେଉ ପଛେ, ସେ ବି ବୁଝିଲା । ତେଣିକି ନା ସୁସ୍ମିତା ସାଙ୍ଗରେ କେବେ ଗପିଛି, ନା ଅନାଥ ସାଙ୍ଗରେ ସାକ୍ଷାତ ହୋଇଛି ମୋର । ଖୁସିର କଥା, ବାପା ଦୁଇଚାରିଥର ସହର ଆସିଛନ୍ତି, କିନ୍ତୁ ମଳିମୁଣ୍ଡିଆ ଦଳ ଆଣି ନାହାନ୍ତି ସାଙ୍ଗରେ । ନିତିଦିନିଆ ଘଟଣାଟିଏ ଭଳି ସ୍ମୃତି 'ମୋଟା ବହି'ର ମଲାଟ ତଳେ ରହି ଯାଇଛି, ତାଜମହଲ ପରି କବର ପାଇନି, କି କେଦାର-ଗୌରୀର ପୋଖରୀରେ ପହଁରିବାର ସୁଯୋଗ ପାଇନି ।



# କୁଡ଼ିମ

କୁଡ଼ିମ ଏଥର ଲାଗ ଲାଗ ଦୁଇଥର ବଡ଼ ପାଟିରେ ମା'କୁ ଡାକିଲା । ବୁଢ଼ୀର କିନ୍ତୁ ଜବାବ ନାହିଁ । ଆର ଘରେ ବଡ଼ ପୁଅ ରାମର ନାତୁଣୀ ଛୁଆ ମୁଣ୍ଡରୁ ଉକୁଣୀ ବାଛୁଥାଏ ସେ । କୁଡ଼ିମର ଡାକ ଶୁଣି ଜବାବ ନ ଦେବା ତାର ଏକ ପୁରୁଣା ଅଭ୍ୟାସ । ନାତୁଣୀ ଛୁଆଟିର ବି କୁଡ଼ିମର ପାଟିକୁ ଖାତିର ନାହିଁ । ରଡ଼ାଗୁଗା ଏ ଘରେ ଯାଏ, ଏଥିରେ କଥା ବଢ଼େନି ବୋଲି ସାନ ବୟସରେ ବି ଛୁଆଟି ଜାଣି ସାରିଥିଲା । ତେଣୁ ସାନ ଅଜାର ପାଟି ଶୁଣି ନା ସେ ଡରୁଥାଏ, ନା ଦଉଡ଼ି ପଳାଉଥାଏ । ଯେମିତି ବସିଥାଏ, ଠିକ ସେମିତି ।

-ଏ ମା'ମରିଗଲୁ କି?' କୁଡ଼ିମ ପୁଣି ଥରେ ଡାକିଲା । ଏତେ ବଡ଼ ପାଟିରେ ସେ ଡାକିଥିଲା ଯେମିତି ଶେଷଥର ପାଇଁ ଡାକୁଛି । ବୁଢ଼ୀର ଜବାବ ନ ଦେଇ ଆଉ ବାଟ ନାହିଁ । ସାନ ଛୁଆଟି ଦୁଇ କାନକୁ ବୁଜି ଧରିଥାଏ ।

-କାହିଁ ରଡ଼ି ମରୁଛୁରେ ଗାଡ଼ପୁଆ? ମୁଁ କ'ଣ କୁନ୍ଧି ଭଏଁରୀ ହେଇଛି କି ? ଏତେ ଜୋରରେ ପାଟି କଲେ ଯାଇ ?'

-ପାଞ୍ଚ ଥର ଡ଼ାକିଲେ ବି ଶୁଣୁନୁ କାହିଁକି ସିନା ?' କୁଡ଼ିମର ଓଲଟା ପ୍ରଶ୍ନ ।

-ଦଶ ଥର ଡାକିଲେ ବି ଶୁଣିବିନି ।' ବୁଢ଼ୀର ଜବାବ ।

ବଡ଼ ପାଟିରେ ଡାକିବା ଧୀରେ ଡାକିବା, ପାଞ୍ଚଥର ଡାକିବା ଆଉ ଦଶଥର ଡାକିବା ଆଡ଼କୁ ଅଯଥାରେ ଟାଣି ହୋଇ ଯାଉଥିବା ପ୍ରସଙ୍ଗକୁ ନିଜ ମତଲବ ଆଡ଼କୁ ଟାଣି ଆଣି କୁଡ଼ିମ କହିଲା, 'ବିଡ଼ି ଖେଜେ ଆଣି ଦେ ।'

—କେଉଁ ଭଦରିରେ ଧାନ ଭରି ଦେଇଛୁ ଯେ ଆଗ ଦେଖାଇ ଦେ । ତା ପରେ ଖେଜେ କାହିଁକି, କେଜେ କହିଲେ ବିଡ଼ି ଆଣି ଦେବି ।' କୁଡ଼ିମର ଆଦେଶକୁ ବୁଢ଼ୀର ଖାତିର ନାହିଁ ।

-ଉଧାର ଆଣିବା ପାଇଁ କହୁଥିଲି । ଏତେ ବେଳକୁ କୁଡ଼ିମ ଛୋଟ ଛୁଆଟିଏ ଭଳି ନରମି ଯାଇଥାଏ । ତା ବ୍ୟକ୍ତିତ୍ୱର ଏଇଟା ଗୋଟାଏ ଗୁଣ । ଧମକା ଚମକାରେ କାମ ନ ହେଲେ ସେ ବାଡ଼ି ଠେଂଗକୁ ଚଢ଼ି ପାରେନାହିଁ, ବରଂ ଗୋଡ଼ ହାତ ଧରି ନେହୁରା ହେବା

ଆଡ଼କୁ ଉଠୁରି ଆସେ । ତେଣୁ ତାଠାରୁ ଯେତେ ଲୋକ ଗାଳି ଶୁଣିଛନ୍ତି ତା ଠାରୁ ଅଧିକ ହାତ ଯୋଡ଼ିବା ବି ଦେଖିଛନ୍ତି । ବୁଢ଼ୀର କିନ୍ତୁ ଠିକ ଓଲଟା ନୀତି । ଶେଷଯାଏଁ ସେ ନଇଁବନି । କୁଡ଼ିମ ରଡ଼ିଲେ ଜବାବରେ ସେ ବି ରଡୁଥିବ । ସେ ଜାଣେ ଯେ ରଡ଼ାରେ ଥକିଲା, ସେ କଥାରେ ହାରିଲା । ଏଇ ନୀତି ଧରି ସେ ଆଜିଯାଏଁ ପୁଅକୁ ଆୟତ୍ତରେ ରଖି ଆସିଛି । ତେଣୁ ପୂର୍ବର ତେଜରେ କହିଲା, 'କିଏ ଉଧାର ଦେବରେ ରଇ । ତତେ ମିଳୁଛି ଯଦି ଆଣୁନୁ?'

-ଯା, ମନର ପସରାକୁ ଯା ଟିକେ । କାଲି ହାଟରୁ ଫେରିଲେ ସାଙ୍ଗେ ସାଙ୍ଗେ ଶୁଝି ଦେବା ।' କୁଡ଼ିମ ନେହୁରା ହେଲା ।

ବୁଢ଼ୀ ଖତେଇ ହେଇ କହିଲା, 'ମନର ପସରା ? ଗଲା ମାସ ପାଏ ପାତଳ ଘଣ୍ଟା ତା ଦୋକାନରୁ ଆଣିଲି ଯେ, ତା ପଇସା କଥା, ଏତେ ହାଟ ଗଲାଣି କେବେ ତୁଣ୍ଡରେ ଧରିଛୁ ?'

-କାଲି ହାଟରୁ ଫେରେଁ । ସବୁ ଚୁକ୍ତି କରିଦେବି ।

ବୁଢ଼ୀ ନିଜକୁ ନିଜେ କହିବା ଢଙ୍ଗରେ ପୁଅକୁ ଶୁଣେଇ କହିଲା, 'ଚୁକ୍ତିରେ ମୋର । ହାଟରୁ କାଲି ଘରକୁ ଫେରିବ କି ହାଜତକୁ ଯିବ ଜଣାନାହିଁ । କହୁଛି ଚୁକ୍ତି କରିବ ।'

କୁଡ଼ିମ ଦେଖିଲା ମା'କୁ ବୁଝେଇ କିଛି ଲାଭ ନାହିଁ । ଅଡ଼ି ବସିଛି ମାନେ ଉଠିବନି ଏବେ ସେ । କହି କହି ଖାଲି ମୁହଁର ଥକାନ ବଢ଼ିବ ଯାହା । ବାଧ୍ୟରେ ସେ ନିଜେ ଖଟରୁ ଉଠିଲା । କିଛି ବେଳ ଆଗରୁ ମା'ଶୁଣିବ ବୋଲି ଯେମିତି ସେ ତଣ୍ଟିରେ ପୁରା ଯୋର ଦେଇ ଡାକିଥିଲା, ଏବେ ଅବଶ ଦେହଟାକୁ ଘୋଷାରି ନେବା ପାଇଁ ଅଣ୍ଟାରେ ସେମିତି ପୁରା ଦମ ଦେଲା । ସେ ଘରୁ ବାହାରି ଯିବା ବେଳେ ତାକୁ ଶୁଣାଯିବା ଭଳି ପାଟିରେ ବୁଢ଼ୀ ପୁଣି କହୁଥାଏ, ସକାଳୁ ଚୁଲି ଜଳିନି । ମାଣେ ଚାଉଳ କେଉଁଠୁ ଆସିବ ସେ ଚିନ୍ତା କରନ୍ତା କ'ଣ, ବିଡ଼ି ପାଇଁ ମରିଯାଉଛି । କୁଡ଼ିମ ବୁଢ଼ୀ କଥାକୁ କାନ ନ ଦେଇ ବାହାରିଗଲା । ତାକୁ ଚାଲି ଯାଉଥିବାର ଦେଖି ବୁଢ଼ୀ ତାଗିଦା କଲା, 'କପଡ଼ା ଭଲ କରି ପିନ୍ଧି ମର ରଇ । ବୁଢ଼ା ହେଲୁ ଆସି ।' ଲୁଙ୍ଗିର ଫଟା ଫାଳକୁ ଆଢୁଆଳରେ ରଖିବା ପାଇଁ ଏ ନିର୍ଦ୍ଦେଶ ।

X X X

ଗୁଡି ବରଗା ବେଳ । ନିଦେ ଶୋଇ ସାରି ରଥି ମିଶ୍ର ଛନେ ହେଲା ଦୋକାନ ଖୋଲିଥାଏ । ଏ ଯାଏଁ ଗହକି ଲାଗି ନ ଥାନ୍ତି । ଗହକି ବା ଲାଗିବେ କେମିତି? ବାଟେ ବାଟେ ଅନାମ ସାହୁ ଯେ ଦୋକାନଟାଏ ଠିଆ କରି ଦେଇଛି । ଏ ସରକାର ବି ଅଜବ । ହଇରେ ଜଣକର ବୁଦ୍ଧି ନାହିଁ ବୋଲି ତ ସେ ଫି ବର୍ଷ କଲେଜ ଇସ୍କୁଲରେ ଫେଲ ହେଲା, ତାକୁ ବେଙ୍କ ଲୋନଟାଏ ଦେଇ ଦୋକାନଟେ ଖୋଲି ଦେଲେ କ'ଣ ନୂଆ କରି ବୁଦ୍ଧି ଗଜା

ଦେବ? ଟୋକୀ ଦେଖିଲେ ଟଙ୍କାକର ଦରବକୁ ଆଠଣାରେ ଦେଲା ଆଉ କ'ଣ ଗହକି ଜୁଟିବେ ନାହିଁ? ସରକାରୀ ପଇସା । କାହାର କ'ଣ ଗଲା? ହେଲେ କେତେଦିନ ଏ ଠାଣି ଚଳିବ ବାବୁ? ବର୍ଷ ଗୋଟାକରେ ଦିଆଲିଆ ହୋଇ କେଜି ତରାଜୁ ଯଦି କବାଡ଼ିବାଲାକୁ ନ ବିକିଛୁ, ଦେଖିବୁ! ରଥି ଅନାମ ସାହୁକୁ ମନେ ମନେ ଶୋଧି ଚାଲିଥାଏ । ଏ ଆଡ଼େ କାଲିର ହାଟ ପାଇଁ ଲିଷ୍ଟ ବି ତିଆରୁ ଥାଏ । ଅନାମ ସାହୁକୁ ହେଉ କି ଉଧାର ଚୁକାଇ ନ ଥିବା, କିନ୍ତୁ ସାଙ୍ଗରେ ରୋଜ ରୋଜ ଉଧାର ନେଇ ଯାଉଥିବା ବୁଢ଼ା ଗୌନ୍ତିଆକୁ ହେଉ, ଶୋଧିଲା ବେଳେ ମିଶ୍ରର ଅଲଗା କରି ସମୟ ଦରକାର ହୁଏନା । ତାର ଦିନ, ଦୁନିଆଁ, ଜାଳ, ଜଞ୍ଜାଳର ଜୀବନ ଭିତରେ ସେ ଏ ସବୁ କାମ କରେ । କାମ ବି ଚାଲିଥାଏ, ସାଙ୍ଗକୁ ଶୋଧା ବି ଚାଲିଥାଏ ।

ଠିକ ଏତିକି ବେଳେ ଲସର ପସର ହେଇ କୁଡ଼ିମ ପହଞ୍ଚିଲା । ରଥି ମିଶ୍ରକୁ ହାତ ଯୋଡ଼ି ଜୁହାର ଟାଏ କଲା ଆଗ । ରଥିର ନିଘା ନାହିଁ ଯେମିତି । କୁଡ଼ିମକୁ ଦେଖି ଆଗଠାରୁ ବେଶୀ ଗମ୍ଭୀର ହୋଇ ପଡ଼ୁଥାଏ ସେ । ଉପରକୁ ମୁଣ୍ଡ ନ ଟେକି, ମୁହଁ ନ ଖୋଲି ଅନିଛାରେ ଆଶୀର୍ବାଦଟାଏ ଦେଲା ଅବଶ୍ୟ ।

ଶଳା ବ୍ରାହ୍ମଣର ଦୋକାନରୁ ଆଜି ଉଧାର ମିଳିବା ନୋହିବ । କୁଡ଼ିମ ରଥିର ହାବ ଭାବ ଦେଖି ଠଉରାଇ ନେଲା । ଉଧାର ମାଗି ମୁହଁ ଗନ୍ଧେଇବା ସାର ହେବ କେବଳ । ବୁଢ଼ା ଗୌନ୍ତିଆ ହେଇଥିଲେ କେତେବେଳୁ ତାକୁ ତରରେ ବସିବାକୁ କହିସାରନ୍ତାଣି । ମନ ନ ଥାଉ ପଛେ 'ଆଉ କ'ଣ ସବୁ ଦରକାର ଗୌନ୍ତିଆ' ବୋଲି ହାତ ଯୋଡୁଥାନ୍ତା । କୁଡ଼ିମକୁ ତାର କିଏ ପଚାରେ? ତଥାପି ଯେତେବେଳେ ଏତେ କଷ୍ଟ କରି ଆସିଛି ନ ମାଗି ହେଲେ ଲେଉଟି ଯିବ କେମିତି? କହିଲା, 'ମିଶ୍ର କକା, ଦୋକାନ ତ ତୋର ଚମକି ଯାଉଚି ବୋ ।'

ରଥି ବି ଠଉରାଇ ନେଲା, ଏ ଉଧାରି ଗହକି । ଆସିବା ଠାରୁ ଏମିତି ଗହକି ନ ଆସିବା ଭଲ । ହାତରେ ପଇସା ଥିଲେ କୁଡ଼ିମ ପେଟେ ପିଇ ମା'ଭଉଣୀ ଉଧେଇବା ଲୋକ । ପଇସା ନ ଥିଲେ ପାଖରେ ତା ମୁହଁରୁ ଦଦା କକା ସଂବୋଧନ ବାହାରେ । ଛତା ଟାଙ୍ଗିଲା ପରି ଗାମ୍ଭୀର୍ଯ୍ୟକୁ ପୂରା ଦମରେ ବଢ଼େଇ ଦେଇ ରଥି ପଚାରିଲା, 'କ'ଣ କହୁଥିଲୁ?'

- ବିଡ଼ି ଆଠଣାରେ ମାଗୁଥିଲି । କାଲି ହାଟରୁ ଫେରିଲେ ହିସାବ ଚୁକେଇ ଦେବି ।'

କୁଡ଼ିମ କଥାକୁ ଅଧିକ ଲମ୍ବା ଚଉଡ଼ା ନ କରି ଥୋଇଦେଲା ।

- ବିଡ଼ି ନାହିଁ ମୋ ଦୋକାନରେ ।' ପୂର୍ବର ଗାମ୍ଭୀର୍ଯ୍ୟ ଏବେ ବି ତା ମୁହଁରେ । ତାକୁ

ଜଣା, ଯେତେ ସମ୍ଭବ କୁଡ଼ିମକୁ ଦୋକାନରୁ ଭଗେଇବାକୁ ହେଲେ ଏହି ଗାମ୍ଭୀର୍ଯ୍ୟ ହିଁ ଅମୋଘ ଅସ୍ତ୍ର । କୁଡ଼ିମ ଥାକରେ ରଖା ହୋଇଥିବା ବିଡ଼ି କଠା ଆଡ଼କୁ ହାତ ବଢ଼େଇ କହିଲା, 'ହେଇ ତ ଅଛି । ଦେଇଥା, କାଲି ହାଟରୁ ଫେରେଁ ସାଙ୍ଗେ ସାଙ୍ଗେ ପଇସା ମିଳିଯିବ । କହିବୁ ଯଦି ଜିନିଷଟେ ଆଣି ଦେବି । ଟେରିକଟ ଲୁଙ୍ଗିଟେ । ସବୁଦିନ ମନେ ରଖିଥିବୁ ।'

ରଥି ମିଶ୍ର ଏଥର ମୁଣ୍ଡ ଟେକିଲା । ଭଲ କରି ଥରେ କୁଡ଼ିମର ମୁହଁକୁ ଦେଖିଲା ଆଉ କହିଲା, 'ତୁ କୁଡ଼ିମଟି? କେତେ ସବୁ ଜିନିଷ ରଥି ମିଶ୍ର ପାଇଁ ଆଣି ଦେଇଛୁ ମୋର କ'ଣ ମନେ ନାହିଁ ? ଗଲା ବର୍ଷ ପଚାଶ ଟଙ୍କା ନେଲୁ ରେଡ଼ିଓଟିଏ ଆଣି ଦେବୁ ବୋଲି । ରେଡ଼ିଓ ତ ରେଡ଼ିଓ ସେ ପଚାଶ ଟଙ୍କା ହେଲେ ଫେରାଇ ଦେଇଥାନ୍ତୁ? ଯା, ଅନାମ ସାହୁ ଦୋକାନକୁ । ମିତତୁଆ ପରେ ତୋର ସେ! ତାକୁ ଦେ ସବୁ ମାଲ । ଉଧାର ମାଗିଲା ବେଳେ କେବଳ ରଥି ମିଶ୍ର ।'

- ରେଡ଼ିଓର ନାଁ ଧରନା ମିଶ୍ର । ବଟକରା ଚୋରୀ ନାଁରେ ସେଦିନ ଗାଁ ଖୁଲିରେ ମାଇଲୁ ପରା । ତା ପରେ ଆଉ କୋଉ ପଚାଶ ଟଙ୍କା? ମାରିବୁ ଆଉ ଉଧାର ଟଙ୍କା ବି ମାଗିବୁ? ଦୁଇଥିରୁ ଗୋଟିଏ କଥା ହେଲେ ମାନିବି । ନୋହିଲେ ଆଜି ଯାଏଁ ଆଉ କ'ଣ ରେଡ଼ିଓ କଥା ପଚୁଥାନ୍ତା?' କୁଡ଼ିମ ଜବାବ ଦେଲା ।

- ଛାଡ଼ ଛାଡ଼ ଯାହା କହ ପଛେ ତୋ କଥାର ଭେଲୁ ନାହିଁ ।

- ଭେଲୁ କଥା କହନା ମିଶ୍ର । କୁଡ଼ିମ ଠକି ଉଣ୍ଡି କାହାଠାରୁ ମାରେ ନାହିଁ । ଯାହା କରେ ଝକ ଝାଏର କରେ, ଦେଖେଇ ଶୁଣେଇ । ବଟକରା ଚୋରୀ ନାଁରେ ଯଦି ମାରି ନ ଥାନ୍ତୁ, ଆଜି ରେଡ଼ିଓ କଥା କହିବାର ତୋର ହକ ଥାଆନ୍ତା ।'

- ଆଉ କ'ଣ ଚୋରାମାଲ ଆଣିଲୁନି ବୋଲି ମାରନ୍ତି? ବୁଢ଼ା ହେଇ ବି ତୋର ଅକଲ ହେଲା ନାହିଁ ଯେ ।

- ଛାଡ଼ ଛାଡ଼ । କଥା କହି କହି ମୋର ମୁହଁ ଥେତେରାଇଲାଣି । ବିଡ଼ି ଆଠଣାର ଦେ, ମୁଁ ଯିବି ।

- ତୁ ହେଲେ ମତେ ବୁଦ୍ଧି ଦେଉଛୁ ଯେ କୁଡ଼ିମ, ବହନି କରିନି । ତତେ ଏବେ ବିଡ଼ି ଉଧାର ଦେବି ?

- ଠିକ ଅଛି । ବହନି କଲେ ଦେବୁ ତ?

- ବହନି କଲେ ବି ଦେବିନି । ଆଗ ଲୁଙ୍ଗି ଆଣ, ତାପରେ କଥା ଭାଷା ।' ରଥି ପୁଣି ଲିଷ୍ଟ ତିଆରିବାରେ ମନ ଦେଲା ।

କୁତିମ କହିଲା, 'ହେଲା ପରା । କଥା ଛିଣ୍ଡିଲା । ପକ୍କା କଥା କହୁଛି । କାଲି ଆଣିବି । ଆଜି ଦେଇଥା ।'

- ଦେଖ କୁତିମ, ଥରେ ନାହିଁ କଲେ ରଥି ମିଶ୍ର, ବ୍ରହ୍ମା କହିଲେ ବି ଆଉ ହଁ ହେବ ନାହିଁ ତାହା । ଭଲ ଗତି ଅଛି ଯଦି ତୋ ରାସ୍ତା ଧର । ଟାଇମ ନୋକସାନି କରନା ।' ମିଶ୍ର ସଫା ସଫା ଶୁଣାଇ ଦେଲା ।

ମରରେ ମୋର ଟାଇମ'ରେ । ଶଳା ବିଏ ପଢ଼ା ଇଂଗଲିଶରେ ହାରିଯିବ । ଘାଁଘି ପଡ଼ାରେ ଦରବୁଢ଼ୀ ଖୋଜି ଖୋଜି ଆଉ ଦୋକାନରେ ମାଛି ଖେଦି ଖେଦି ଦିନ ଯାଉଛି, କହୁଛି 'ଟାଇମ' ନୋକସାନି । କୁତିମ ଲଂବା ନିଶ୍ୱାସ ନେଇ ଭଲଭାବେ ଦେଖିଲା କେବଳ, ରଥିକୁ କହିଲାନି କିଛି । ରାଗ, ହତାଶା ସବୁ କିଛି ମିଶି ରହିଥାଏ ତା ଦେଖିବାରେ । ରଥି ଏ ଆଡ଼େ ମୁଣ୍ଡ ବି ଟେକୁ ନଥାଏ । ଦେଖି ଦେବ ବା କହି ଦେବ ଯଦି ପଦେ, ପୁଣି କଥା ଲମ୍ବିଯିବ କାଳେ! କିଛି ବେଳ ପରେ ଚୁପ ଚାପ କିଛି ନ କହି କୁତିମ ରଥି ଦୋକାନରୁ ବାହାରି ଆସିଲା ।

ଗୁଡ଼ି ଆଡୁ ଘେରାଏ ମାରି ପୁଣି ପହଞ୍ଚିଲା କୁତିମ ରଥି ଦୋକାନରେ । ସଁହରା ପଡ଼ାର ଛୁଆ ଦୁଇଟି ଧାନ ଖେଜାଏ ଆଣି ମିଶଚର ବୁଝୁଛନ୍ତି । ତାଙ୍କୁ ବଟେଇ ସାରିବା ପରେ ରଥି ବେଶି ଟିକେ ଚିଡ଼ିଚିଡ଼ା ହେଇ କହିଲା, 'କ'ଣ ହେଲା ପୁଣି ? ଥରେ କହିଲି ପରା, ଉଧାର ଦେବି ନାହିଁ ।'

କୁତିମ ଲୁଙ୍ଗି ଅଣ୍ଟିରୁ ବଡ଼ ଚା'ପୁଡ଼ାଟାଏ କାଢ଼ି ରଥିକୁ କହିଲା, 'ବିଡ଼ି ସାଙ୍ଗକୁ ଟଙ୍କା ଦୁଇଟା ବି ଦେବୁ ଯଦି ଦେବି ।'

- ମୋ ଦୋକାନରେ ଚା ଭର୍ତ୍ତି ଅଛି ପରା ।' ସାଙ୍ଗେ ସାଙ୍ଗେ ରଥି ଜବାବ ଦେଲା ।

- କୋଉ ଜିନିଷ ତୋ ଦୋକାନରେ ନାହିଁକି? ଉଧାର ମାଗିଲେ ସିନା ମନା କରି ଦଉ । ଅନାମ ଦୋକାନକୁ ଯାଉଁ ଯାଉଁ ଟଙ୍କା ତିନିଟା ଦେବ ।' ବିଡ଼ି ଆଠଣାର ଉଧାର ମାଗିବାର ଆଉ ଏବର କୁତିମ ଭିତରେ ଆକାଶ ପାତାଳ ପ୍ରଭେଦ । ରଥି ମିଶ୍ରକୁ ବିନ୍ଦୁ ବିସର୍ଗ ଖାତିର ନାହିଁ ତା'ର ଏବେ । ମାଲ ହାତରେ ଥିଲେ କାହିଁ ଖାତିର କରିବ ଭଲା ?

ରଥି ବି କିଛି କମ ଓସ୍ତାଦ ନୁହେଁ । ଅଢ଼େଇ ଟଙ୍କା କହୁଛି ଯଦି, ଆଠଣା ତ ହେଲେ କମ ହେବ । ତିନି ଟଙ୍କା କହିଥିଲେ ବା ସେ ଅଢ଼େଇରେ ରାଜି ହୋଇଥାନ୍ତା । ଯୋର ଦେଇ କହିଲା, ' ଯାଉନୁ ଅନାମ ଦୋକାନକୁ ତାହେଲେ ।'

– ଟିକେ ଆଗରୁ 'ମାଲ' ପାଇଁ ଏତେ ଗୁଡାଉଚାର ହେଲେ । ଏବେ ମାଲ ଆଣିଲା ବେଳକୁ କହୁଛୁ, ଯାଉନୁ ।'

ରଥି କହିଲା, 'ହୋଲ ସେଲରେ ଆମେ ପରା ସେ ଚାହା ତିନି ଟଙ୍କାରେ ଆଣୁଛୁ । ଚୋରାମାଲ ଯଦି ମୁଁ ଅଢ଼େଇ ଟଙ୍କାରେ କିଣେ, ଆଛା ବିଜନେସ କରିବି?'

ମରରେ ମୋର "ବିଜିନେସ" । କୁଡ଼ିମର ରାଗରେ ହାତ୍ ପୋଡ଼ିଗଲା । କୁହା ଆମ୍ ପଟାରେ ତିଆରି ଠୁସକୁ ପାନ ଗୁଡ଼ାଟିରେ ଟଙ୍କା ଦୁଇଶହର ସାମାନ ହେବ ନାହିଁ, କହୁଛି 'ବିଜିନେସ' । କହିଲା, 'ବିକିଲା ବେଳକୁ ଏବେ ପାଞ୍ଚ ଟଙ୍କା ହାକନ୍ତୁ । କିଣିଲା ବେଳକୁ ଅଢେଇ ଟଙ୍କାରେ ବି ରୁଚୁନି ।'

ଏତେ ବେଳକୁ ପ୍ରଧାନ ଘର ପିଲା ଦୋକାନକୁ ପଶି ଆସିବାରୁ କୁଡ଼ିମ କଥା ଅଧା ରଖି ଚାହାକୁ ଅଣ୍ଟି ଭିତରେ ଲୁଚେଇ ରଖିଲା, ଯେମିତି ପଧାନ ଘରୁ ମାରି ଆଣିଛି ଚା ପୁଡ଼ାକୁ । ପିଲା ଯିବା ପରେ ପୁଣି ପ୍ରସଙ୍ଗକୁ ଫେରି ଆସି କହିଲା, 'ଆଛା କେତେ ଦେବୁ ପକ୍କା କଥା କହ ।'

ରଥି କହିଲା, ' ବିଡି ସାଙ୍ଗକୁ ଟଙ୍କାଟାଏ ।'

ଚା କୁ ରଥି ହାତରେ ଥୋଇ ଦେଇ କୁଡ଼ିମ କହିଲା, 'ଦେଢ଼ ଟଙ୍କା ଦେ । ମୁଁ ଯିବି ।' ଶେଷରେ ଦେଢ଼ ଟଙ୍କା ଆଉ ବିଡି ଆଠଣାରେ ଚା'ର ଦାମ ପଟିଲା । ପଇସାକୁ ଭଲଭାବେ ଅଣ୍ଟିରେ ଖୋସି ବିଡ଼ିଟାଏ ପହଁଟାଇଲା ସେଠି କୁଡ଼ିମ । ରଥିକୁ ବି ବିଡ଼ିଟାଏ ଜାଚିଲା । ରଥି ବିଡ଼ି ନେଲା ନି । ତାକୁ ଜଣା କୁଡ଼ିମ ଏବେ ବିର୍ଝାଉଛି । କହିଲା, 'ଦୋକାନରେ ବସିଥିଲେ ମୁଁ ବିଡ଼ି ପିଏନା ।'

କୁଡ଼ିମ ଓଲଟାଇ ଦେଇ କହିଲା, 'ତୋ ନିଜ ବିଡ଼ି ହେଲେ ସିନା ପିଉନା । ମାହାଳିଆ ପାଇଲେ କ'ଣ ଅଛି ?' ଦୋକାନରୁ ବାହାରି ଆସୁ ଆସୁ ପଚାରିଲା, 'ଚା ପୁଡ଼ାଟା କେଉଁଠୁ ମାରି ଆଣିଥିଲି ପଚାରିଲୁ ନି ଯେ?'

ପ୍ରଥମ ଥର ପାଇଁ ଆତ୍ମସନ୍ତୋଷରେ ରଥି ମିଶ୍ର ମୁରୁକି ହସି କହିଲା, 'ଅନାମ ସାହୁ ଦୋକାନରୁ ତ?'

ଜବାବରେ କୁଡ଼ିମ ବି ହସି ହସି କହିଲା, ' ନା ମିଶ୍ର, ତୋ ଦୋକାନରୁ । ଉଧାର ମାଗି ଘଡ଼ିଏ ବେଳ ଟାକି ରହିଲି । ମୁଣ୍ଡ ଟେକି ଦେଖିଲୁନି ଥରେ । କ'ଣ କରନ୍ତି?'

ରଥି ମିଶ୍ରକୁ ଚଟକଣାଟାଏ ଖାଇଲା ପରି ଲାଗିଲା, କୁଡ଼ିମର କଥା ଶୁଣି । କୁଡ଼ିମର ଯିବା ବାଟକୁ ମୁହଁ ଆମ୍ବିଳା କରି ଅନାଇ ରହିଲା ସେ । ନଈ ସୁଅରେ ପଟେ ଚପଲ

ପଡ଼ିଗଲେ ଯେମିତି ଚୁପଚାପ ଦେଖିବା ଛଡ଼ା କିଛି କରି ହୁଏନା, ଆଉ ପଟ ଚପଲ ବି ଅଦରକାରୀ ମନେହୁଏ, ଚା' ପୁଡ଼ାରେ ଲାଭ ହେଉଥିବା ଟଙ୍କା ତାକୁ ଏବେ ଅହେତୁକ, ଓଜନିଆ ଲାଗୁଥାଏ ଖାଲି ।

X X X

କୁଡ଼ିମ ଘରେ ପହଞ୍ଚି ମା'କୁ କହିଲା, 'ଚାଉଳ ପାଇଁ କହୁଥିଲୁ ତ? ନେ ପଇସା । ହେଲେ ଚାଉଳ ଆଣ କି ନ ଆଣେ, ଆଗ ମାଟିଖାଉଟିକେ ଆଣି ଧୋତିଟା ମୋର ଛଡ଼େଇ ଦେ । ମଇଳା ହୋଇ ଗଲାଣି । କାଲି ହାଟକୁ ଯିବି ।'

ପଇସା ନେଇ ବୁଢ଼ୀ ଘରୁ ବାହାରିଗଲା । ତା ପଛେ ପଛେ ନାତୁଣୀ ଛୁଆ । ମା-ପୁଅ ଭିତରେ ବେଶ ସେତିକି କଥାଭାଷା ! କେଉଁଠୁ ପଇସା ଆସିଲା, କେମିତି ଆସିଲା ଜାଣିବା ଯେମିତି ବୁଢ଼ୀର ଦରକାର ନାହିଁ; ଆଗ୍ରହ ବି ନାହିଁ । କେଉଁ ଶସ୍ତା ଉପନ୍ୟାସର ଚରିତ୍ର ହୋଇଥିଲେ ପୁଅକୁ ହାଟକୁ ଯିବା ଅର୍ଥାତ ଚୋରୀ କରିବା ବିରୋଧରେ ସେ ଏକ ଉପଦେଶ ଦେଇଥାନ୍ତା । ଖଳଚରିତ୍ର ହୋଇଥିଲେ ହୋସିଆରିରେ କାମ ନେବା ପାଇଁ ସତର୍କ କରେଇଥାନ୍ତା । ହୁଏତ ତାଜା ଫୁଲମାଳରେ ସଜା ହୋଇଥିବା ମୃତ ପତିର ଫଟୋ ଆଗରେ ବାହୁନି ହୋଇ କହିଥାନ୍ତା, 'ତୁମେ କୁଡ଼ିମର ବାପା ଆଜି ବଞ୍ଚିଥିଲେ ଆମ ମା-ପୁଅକୁ ଏ ଦୁଃଖ ଦେଖିବାକୁ ପଡ଼ୁଥାନ୍ତା? ତୁମେ କ'ଣ ପେଟକୁ ଗଣ୍ଡେ ଜୁଟେଇ ନପାରି ପୁଅକୁ ଚୋରୀ କରିବାର ବାଟ ଦେଖେଇଥାନ୍ତ? ମୁଁ ସିନା ଅଭାଗିନୀ ପାପୀ ବୋଲି ପୁଅକୁ କୁବାଟରୁ ସୁବାଟକୁ ଆଣି ପାରୁନି । ଚୋରୀ କରିବା ପାଇଁ, ଧରା ପଡ଼ିବା ପାଇଁ, ମାଡ଼ ଖାଇବା ପାଇଁ, ହାଜତରେ ଘଣା ପେଲିବା ପାଇଁ ପୁଅକୁ ନିଜ ହାତରେ ସଜବାଜ କରି ହାଟକୁ ପଠାଉଛି । ଛି କି ଅଲାଜୁକୀ ମାଆ ମୁଁ ।' ହେଲେ ବୁଢ଼ୀ ଏ ସବୁ କିଛି କହିଲାନି । ପଇସା ତକ କରାଟରେ ରଖି ବନବାସୀର ପସରା ଆଡ଼େ ମୁହାଁଇଲା । କୁଡ଼ିମର ହାଟକୁ ଯିବା ନାଁରେ ବଇନା ଆଣି ମାଲ ନ ଦେବା, ମାଡ଼ ଖାଇବା, ହାଜତ କଚେରୀ ଯିବା - ଏସବୁ ଏତେ ନିତି ଦିନିଆ ଆଉ ଦେହସହା ଯେ ସେଥିପାଇଁ ସେ ଯଦି କାନ୍ଦି ବସିବ ବା ଉପଦେଶ ଦେବା ଆରମ୍ଭ କରିବ, ରନ୍ଧା ବଢ଼ା କିଣାବିକା ପାଇଁ ତାର ଆଉ ସମୟ ନ ଥିବ । ଦିନ ସାରା କାନ୍ଦୁଥିବ ନୋହିଲେ ଉପଦେଶ ଦେଉଥିବ ଯେଉଁଥିରେ ପେଟ ପୁରେନି କି ଅଣ୍ଟା ଭରେନି । ଚାରି ଚାରିଟା ସୁବାଟରେ କମେଇଲା ଧମେଇଲା ପୁଅ ଯେବେ ବୁଢ଼ୀକୁ ଥିର ଢୋକେ ଦେବାର ନାଁ ନଉ ନାହାନ୍ତି, ଏହି ମଦୁଆ, ଗଂଜୋଡ଼, ଚୋର, ତୁହାଡ଼ ପୁଅକୁ ସେଭଳି ସୁବାଟରେ ଆଣି ଅବା ସେ କି ଲାଭ ପାଇବ? ସେ କୁବାଟ ହେଉ କି ଆଉ କୋଉବାଟ ହେଉ

- ଏହି ପୁଅ ତ ପୁଣି ମା ବୋଲି ତା'ର ଇଜ୍ଜତ ରଖିଛି । ଫଟା ହେଉ ପଛେ, ଖଣ୍ଡେ ପିନ୍ଧିବାକୁ ଦଉଛି, ସେ ପୁଣି ହତାଦର ନକରି । ପୁଣି ବୁଢ଼ୀ ଭାବେ ଆଉମାନଙ୍କୁ ଦେଖଭାଲ କରିବା ପାଇଁ ତାଙ୍କର ପାରିଲା ପୁଅ ମାଇପେ ବି ତ ଅଛନ୍ତି । ବିଚରା କୁଡ଼ିମର କିଏ ଅଛି ? ଏହି ବୁଢ଼ୀ ମା ଛଡ଼ା ଦୁନିଆଁରେ କିଏ ଅଛି ତାର? ଜନ୍ମ କଲା ଦିନୁ ଯେମିତି ଫଂଖୋଳି ଆଣିଛି, ଆଜି ଦରବୁଢ଼ା ବୟସରେ ବି ସେମିତି ଫଂଖୋଳି ନେଉଛି ବୁଢ଼ୀ । କେତେ ଗାଳି ତକରାଲ, କେତେ ମାଡ଼ ଗୋଳ ସେ ଫଂଖୋଳାରେ । କେବେ ଫଂପି କୁଦି ପକାଏ ବୁଢ଼ୀ, ତ କେବେ ମାରି ପିଟି ପକାଏ କୁଡ଼ିମ । ତଥାପି ଦୁହେଁ ଦୁହିଁଙ୍କୁ ଛାଡ଼ି ପାରିବେନି ।

ଗାଁର ସିଆଣ ମାଇକିନା ଜଣେ ଅଧେ କେବେ କେବେ ବୁଢ଼ୀକୁ ମନ୍ତ୍ର ଦିଅନ୍ତି, 'କେବେ ନିଜେ ପିଟୁଛି ତ ପୁଣି କେବେ ପୁଲିସ ହାତରେ ପିଟାଉଛି । ତା ପରେ ବି ତାକୁ ଆଶ୍ରା କଲେ ଯାଇ? ମୁଁ ତ ହେଲେ ଭିଖ ମାଗି ଖାଆନ୍ତି ପଛେ, ଏମିତି ଅଲାଜୁକ ପୁଅର ମୁହଁ ଦେଖନ୍ତିନି ।' ବୁଢ଼ୀ ଉତ୍ତର ଦିଏ, ମୁଁ ଗଲେ ଥିର ଢୋକେ ତାକୁ କିଏ ଓହ୍ଲାଇ ଦେବ? ପୁଣି କେବେ ରାଗିଯାଇ କହେ, 'ମତେ ମାରିଲା ପିଟିଲା ଯେ କା'ର କ'ଣ ଗଲା? ଯେଉଁଦିନ କୁଡ଼ିମର ମା'ତୁମ ଘରକୁ ଯାଇ ଫେରାଦ ହେବ, ସେହିଦିନ ତାକୁ ବୁଝି ଦେବ ।' ବୁଝି ଦେବା ଲୋକ ବାଟ କାଟନ୍ତି ।

ସକାଳୁ ଗାଧୋଇ ପାଧୋଇ ଆସି କୁଡ଼ିମ ମାଟିଖାରରେ ସଫା ହୋଇଥିବା ଧୋତି ପିନ୍ଧିଲା । ଅଡ଼ାରେ ଝୁଲୁଥିବା କୁରୁତା କାଢ଼ି ଲଗେଇଲା । କେବଳ ହାଟକୁ ଗଲାଦିନ ବାହାରେ ଏସବୁ । ବଡ଼ ଲୋକ ଭଳି ଦିଶିବା ପାଇଁ ତାର ମାତ୍ର ଏତିକି ସମ୍ବଳ । ପାଦରେ ଚପଲ, ହାତରେ ଘଡ଼ି, ଆଖିରେ ଚଷମା ଅବା କାନ୍ଧରେ ଗଙ୍ଗା-ଯମୁନା ତଉଲିଆ - କିଛିନାହିଁ ତା ଭାଗ୍ୟରେ । ଦରକାର ବି ନାହିଁ ଏ ସବୁର । ସଫା ଧୋତି ଦଗଲି ସାରେ ହେଲେ ଯଥେଷ୍ଟ । ଆଜିକାଲି ଯୁଗ ଏମିତି ଯେ ପୁଲିସ ଡ୍ରେସ ଭଳି ମୁଜା, ଘଡ଼ି, ଚଷମା ଆଦି ଚୋର ତାକୁଙ୍କର ଡ୍ରେସ ହୋଇଗଲାଣି । କୁଡ଼ିମ ଭାବେ, ସାଧୁ ପିନ୍ଧିଲେ ବି ଲୋକ, ଚୋର ଭାବି, ଗୋଡ଼ାଇବେ ତା ପଛରେ । କୁରୁତା ପକେଟରେ ଗଣ୍ଡିଧନ ଭଳି ସାଇତି ରଖିଥିବା ରେଜା ପଇସା ତକ କାଢ଼ି ଗଣିଲା ଥରେ କୁଡ଼ିମ । ଘରୁ ବାହାରିବା ଆଗରୁ ଗାଡ଼ି ଭଡ଼ା କଥାରେ ନିଶ୍ଚିତ ହେବାକୁ ଚାହେଁ ସେ । ହାଟରେ ପହଞ୍ଚିବା ଯାଏ କୌଣସି ରକମର ଖିଚ୍‌ପିଚ୍ ତାକୁ ଅଶୁଭ ମନେହୁଏ । ସେଥିପାଇଁ ସେ ଗୋଟାଏ ହାଟରୁ ଫେରିବା ବେଳେ ଆର ହାଟ ପାଇଁ ଗାଡ଼ି ଭଡ଼ା ସାଇତି ରଖେ । ଯେତେ ଦରକାର ପଡୁ ପଛେ ଏ ପଇସା ଅଛୁଆଁ ରହିବା କଥା । ଗଣି ସାରି ଦେଖିଲା ତିନି ଟଙ୍କାକୁ ଚାରଣା କମ ଅଛି । ପୁଣି ଥରେ ଗଣିଲା, ହିସାବ ଭୁଲ

ନୁହେଁ । ମା'କୁ ପାଟିକଲା, 'ଏଠୁ ପଇସା ନେଲୁ କି?'

ବୁଢ଼ୀ ଚୁପ୍ ରହିଲା । ତାକୁ ଜଣା କୁଡ଼ିମର ନିୟମ । କିନ୍ତୁ ଅକରତବରେ ପଡ଼ି ସେଥରୁ ଚାରଣା ନେବାକୁ ବାଧ୍ୟ ହୋଇଛି ।

- କେତେଥର ତତେ କହିଛି, ଏ ପଇସା ଛୁଇଁବୁନି । ଯେତେ ନିଅଣ୍ଟ ହେଲେ ବି ସେ ପଇସାରୁ ମୁଁ ପରା ବିଡ଼ି କିଣେନି । ଆଉ ତୁ କିରେହୀ ଲାଟସାହାବ ଭଳି ଖର୍ଚ୍ଚ କରୁଛୁ । ପଇସା ପାଇଁ କୁଡ଼ିମର ମା' ଉପରେ ଯେତେ ରାଗ ହେଉଥିଲା, ତାଠାରୁ ବେଶୀ ସେ ହତାଶ ହେଉଥିଲା - ପୁରା ପଇସା ନଥାଇ କିପରି ସେ ମଟର ଚଢ଼ିବ? ଚାରଣା ପଇସା ପାଇଁ ନାଁ କରା ଚୋର କୁଡ଼ିମ ଭାଙ୍ଗି ପଡୁଥିଲା । କେଡ଼େ ବିଚିତ୍ର ଏ ଦୁନିଆଁ! ବେପରବାୟ, ବଦମାସ, ଚୋର, ତାକୁ ଭଳି ଖଳ ଚରିତ୍ର ସବୁ ମଧ୍ୟ ପାଖରେ ମାଲ ନଥିଲେ ଛୋଟ ଛୁଆ ଭଳି ନିରୀହ, ନିଃସହାୟ ହୋଇ ପଡ଼ନ୍ତି ଆଉ ଡରୁଆ ଲୋକ ବି ପକେଟରେ ମାଲ ହେଲେ ବେଧଡ଼କ, ବେଖାତିର ହୋଇଯାଏ ।

ତେଲ, ଲୁଣ, କାଠ, ସବୁ କିଣି ଘର ଚଳାଇଲେ କେତେବେଳେ ଚାରିଅଣା ଏପଟ ସେପଟ ନ ହେବ ବୋଲି କିଏ କହିବ? ବୁଢ଼ୀକୁ ରୋଜ ସବୁ ଜିନିଷ ଆଣି ଦେଇଦେଲେ ବା ସେ କାହିଁ ଛୁଅନ୍ତା, ତା ଗାଡ଼ି ଭଡ଼ା । ବୁଢ଼ୀ ପାଖରେ ଅନେକ ଜବାବ ଥିଲା ଦେବାକୁ, କିନ୍ତୁ ସେ ଦେଲାନି । ଏବେ ତାର ଚୁପ ରହିବା ହିଁ ଭଲ ।

କୁଡ଼ିମ ବି ଜାଣିଲା, ମା'କୁ କିଛି କହି ଲାଭ ନାହିଁ । ଚାରଣା ନେବା ଲୋକ ସେ; ଚାରଣା ଜୁଟେଇବା ତା'ଦ୍ୱାରା ହେବ ନାହିଁ । ଦେଖାଯାଉ ଗାଡ଼ିବାଲା ବି ମାନି ଯାଇ ପାରେ । କୁଡ଼ିମ ଘରୁ ବାହାରିଗଲା ।

ଗାଡ଼ିବାଲା କିନ୍ତୁ ନଛୋଡ଼ ବନ୍ଧା । ସରକାରୀ ଗାଡ଼ି । ତିନି ଟଙ୍କାରୁ ପଇସାଟିଏ ଊଣା ହେଲେ ନ ଚଳେ । ଗାଡ଼ିରେ ବସିଥିବା ସମସ୍ତଙ୍କ ମୁହଁକୁ ଥରେ ଅନାଇଲା କୁଡ଼ିମ । କେହି ଚିହ୍ନାଜଣା ଲୋକ କାଳେ ଥିବେ । ପାଟପୁର ଗାଁର ନନ୍ଦସାହୁ ବସିଛି । କୁଡ଼ିମ ନନ୍ଦକୁ ଚିହ୍ନେ । ଆଉ ନନ୍ଦ ବି କୁଡ଼ୁମକୁ । ଏମିତି ବି ପାଟପୁର ଓ କଣାଗାଁ ଗୋଟିଏ ଗାଁ ଭଳି । କୁଡ଼ିମ ନନ୍ଦକୁ ଯାଇ କହିଲା, ହାଟରୁ ଫେରିଲେ ଟଙ୍କାଏ କରି ଦେବ ବୋଲି କଣ୍ଟ ଦେଲା । ନନ୍ଦ କିନ୍ତୁ ସଫା ମନା କରିଦେଲା । ଚାହିଁଲେ ଚାରଣା ସେ ଦେଇପାରନ୍ତା, ମାତ୍ର ଶଳା କୁଡ଼ିମର କେଉଁ ଭରସା? ହାଟରୁ ହାଜତକୁ ବି ଯାଇପାରେ । ଏଭଳି ଲୋକଙ୍କ ସାଙ୍ଗରେ ଦିଆନିଆର କାରବାର ଭଲ ନୁହେଁ । ସାହୁ ନିଜକୁ ନିଜେ କହିଲା ।

କୁଡ଼ିମ ଜାଣେ ନନ୍ଦସାହୁଟା ବଡ଼ କୁଛି । ପୁଷର ଶୀତରେ ଗୋଡ ଫାଟିଥିବ ବୋଲି

ସିନା! ନୋହିଲେ ତିନି ଟଙ୍କା ଭଡ଼ା ଦେଇ ଗାଡ଼ିରେ ଚଢ଼ିବ ଶଳା? ପାଟପୁରିଆ କହନ୍ତି ଥରେ କୁଆଡ଼େ ଝିଅର ନାପସନ୍ଦ ହେଲା ବୋଲି ପୁଣି ଥରେ ଶାଢ଼ୀ ବଦଳେଇବା ପାଇଁ ଚାଲି ଚାଲି ପୁଣି ଥରେ ହାଟକୁ ଆସିଥିଲା ସାହୁ । ପାଞ୍ଚ କୋଶ ଦୂର ହାଟକୁ ଦୁଇ ଥର ଆସି ଫେରି ଯାଇଥିଲା ଗୋଟାଏ ଦିନରେ । ନନ୍ଦ ସାହୁ ନାଁରେ କେତେ କାହାଣୀ ବ୍ୟାପିଛି ପାଟପୁରରେ । କୁଡ଼ିମ ବି ଶୁଣିଛି ସେ ସବୁ । ସଂକଟରେ ପଡ଼ି ଗଧର ପାହା ଧରିବା କଥା ଯାହା ।

ନନ୍ଦ ମନା କଲାପରେ କୁଡ଼ିମର ବୁଦ୍ଧିବାଟ ହଜିଗଲା । ଶେଷକୁ ଉପାୟ ନ ପାଇ ଟିକଟ ମାଷ୍ଟରକୁ କହିଲା, 'ମତେ ଚାରଣା କମ ଗାଡ଼ି ବସେଇବୁ । ଯେଉଁଠି ମୋ ପଇସାର ବାଟ ସରିଯିବ, ଓହ୍ଲାଇ ଦେବୁ । ସେଠୁ ଚାଲି ଚାଲି ଯିବି ।' ସାହୁକୁ ଦେଖେଇ କହିଲା, 'ଲୋକ ତ ପଇସା ଲୋଭରେ ଦିନକୁ ଦୁଇଥର ହାଟକୁ ଚାଲି ଆସନ୍ତି, ମୁଁ ଚାରଣାର ବାଟ ଚାଲି ପାରିବିନି ।' ଗାଡ଼ିବାଲା ବୁଝିପାରିଲାନି କଥାର ଗୂଢ଼ତତ୍ତ୍ୱ । ଗାଡ଼ିଚାଲାର କି ବୁଝିବା ଦରକାର? ଯିଏ ବୁଝିବା କଥା ବୁଝୁ । କୁଡ଼ିମ ବିଚାରିଲା ।

ସେ ହାଟରେ ଭାଗ୍ୟକୁ କୁଡ଼ିମର ଭାରି କମାଣି । କଲିକତିଆ ଦୋକାନରୁ ମାଲ ନପେଇବା ପାଇଁ ଅର୍ଡର ଦେଇ ବଟକରା ଚାରିଟା ମାରି ଆଣିଲା । ଏତେ ଭାରି ଓଜନ କିଏ ବୋହିବ ବିଚାରି ଗୁଜରାଟି ପାଖରେ ଦଶ ଟଙ୍କାରେ ବଟକରା ସବୁକୁ ବିକିଦେଲା । ବୁଢ଼ା ମାରବାଡ଼ି ଦୋକାନରେ ଧୋତି ବାଛୁ ବାଛୁ ଦୁଇ ଖଣ୍ଡ ମର୍ସାରିଜ ଧୋତି କାଖେଇ ଆଣିଲା । ତାକୁ ପୁଣି କଟକିଆ ଶୁଖୁଆ ବେପାରୀକୁ ଦେଇ ପଚାଶ ଟଙ୍କା ଖୋଲାରେ ଏବଂ କେଜେ ହେବ ସୁଖା ଚିଙ୍ଗୁଡ଼ି ଲୁଚାରେ ଆଣି ଫେରିଲା । ଚିଙ୍ଗୁଡ଼ିକୁ ହାଟପଦା ହୋଟେଲରେ ଦେଇ ଦଶ ଟଙ୍କା ଆଣିଲା । ସାଙ୍ଗରେ ଖାଇସାରି ଓଦାହାତ ପୋଛିବା ପାଇଁ ରଖା ହୋଇଥିବା ନୂଆ ଟର୍କିସ ଟାବେଲଟା ବି । ଏସବୁ ଛାଡ଼ି ତିନିଟା ଛୋଟକାଟର ପକେଟମାରୁ ବି ଜୁଟିଥିଲା ସେଦିନ । ସବୁ ମିଶି ଟଙ୍କା ଦେଢ଼ଶ ହେବ କମାଣି । କିଛି ମନ୍ଦ ନୁହେଁ । ସବୁଠାରୁ ବଡ଼ କଥା ଗୋଟାଏ ଚଟକଣା ବି କେହି ମାରି ନଥିଲେ । ଏମିତି ହାଟ ବହୁତ କମ୍ ଜୁଟେ ଭାଗ୍ୟରେ । ଥାନା ବାବୁ ଭେଟିଥିଲା, ଗଲା ପାଳି ହାଜିରି ଦୋଇ ନଥିବାରୁ ଦଶ ଥର କାନ ଉଠ ବସ ହେବାକୁ କହି ଛାଡ଼ିଦେଲା, କିଛି କଲାନି । ଶୁଭ ଦିନ ତ!

କାମ ସାରି ବେଳ ବୁଡ଼ାକୁ ଟେସନ ହୋଟେଲରେ ଢୁକିଲା କୁଡ଼ିମ । ପେଡ଼ା, ରସଗୋଲା କରି ପେଟ ଭରି ଖାଇଲା । ମା ପାଇଁ ବି ପୁଡ଼ିଆଟିଏ ବାନ୍ଧିଲା । ଆଜିର ଗାଡ଼ି ଭଡ଼ା, ଆସିବା ଥର ପାଇଁ ଗାଡ଼ି ଭଡ଼ା, ମଦ ପାଇଁ ଦଶ ଟଙ୍କା, ଗଂଜେଇ ପାଇଁ ଦଶ ଟଙ୍କା ଆଦି କାଟି

ଶହେ ଟଙ୍କା ମା' ହାତରେ ଦେବାକୁ ରଖିଲା । ଏଣିକି ହପ୍ତାଏ ରେଷ୍ଟ । ମଝିରେ ତାଲପାଲି ଗାଁ ହାଟକୁ ଗଲେ ବି ହୁଅନ୍ତା । ହେଲେ ଛୋଟ କାଟର କମାଣି ସବୁ । କା'ର ପୁରୁଣା ଚାଦର, କା'ର ହାବେଇ ଚପଲ, ପୁଣି ଆଉ କା'ର ଛତାଟାଏ । ଗୁଲଗୁଲା ପସରା ଯେତେ । ମାରବାଡ଼ି କି କଲିକତିଆର ଗଦିରୁ କିଛି କମାଣି ହେଲେ ଯେଉଁ ମଜା, ଏଥିରେ କାହିଁ ସେ ମଜା? କୁଡ଼ିମ ଭାବିଲା । ତାଲପାଲି ହାଟକୁ ଯିବାଠାରୁ ଭଲ ଉପାସରେ ରହିବା ।

ମନ ଖୁସିରେ ଟେସନକୁ ଆସିବାବେଳେ ମନେ ମନେ ବଡ଼ଭାଇମାନଙ୍କୁ ଗାଳି ଦେଉଥାଏ । 'ପରଘରେ ଖଟି ଖଟି ମରିବେ ସଭିଏଁ । ଆରାମ କ'ଣ କେବେ ତାର ମଜା ଚାଖିଲେଣି? ତା ପରେ ବି ଭଲ କରି ମୁଠେ ଖାଇଲେ ବୋଲି କେବେ ଶୁଣିନି । ଶଳେ ଇଜ୍ଜତଦାର ହେଇଛନ୍ତି । ମରନ୍ତୁ କା'ର କଣ ଯିବ?' କମାଣି ହେଲା ଦିନ ଭାଇମାନଙ୍କୁ ଗାଳି ଦେବା ଏବଂ ହାଜତରେ ହେଉ କି ଆଉ କେଁଉଠି ମାଡ଼ ଖାଇବା ଦିନ ନିଜକୁ ଗାଳି ଦେବା କୁଡ଼ିମର ଏକ ରିତିମତ ଅଭ୍ୟାସ । ଏବେ ଧରା ପଡ଼ିଗଲେ ଭାଇମାନଙ୍କ ଖଟି ଖାଇବାକୁ ପ୍ରଶଂସା ଆରମ୍ଭ କରିଦେବ । 'ପେଟ ନପୂରୁ ପଛେ ମାଡ଼ ତ ଖାଉ ନାହାନ୍ତି ମୋ ଭଳି ।' ଆଜି ଶୁଭଦିନ । ତେଣୁ ନିଜକୁ ପ୍ରଶଂସା କରୁଛି ।

ମାଛି ଅନ୍ଧାର ବେଳକୁ ଟେସନକୁ ଆସି ଗାଡ଼ିରେ ଦେଖିଲା ନନ୍ଦ ସାହୁ ବସିଛି । ନନ୍ଦକୁ ଦେଖି କୁଡ଼ିମର ଉଷତ କହିଲେ ନସରେ । ମଜା ବାହାରିବ ଶଳା କୁଛିର । ନନ୍ଦର ପାଖ ସିଟରେ ଯାଇ ବସିଲା ସେ । କ'ଣ ସବୁ ହାଟରୁ କିଣିଲୁ ବୋଲି ପଚାରି ଦେଇ ଟଙ୍କା ଗଣିବା ଆରମ୍ଭ କଲା ଖାଲି । ଦଶ ଟଙ୍କି, ପାଞ୍ଚ ଟଙ୍କି ତଳେ ରଖିଲା, ଦୁଇ ଟଙ୍କି, ଏକ ଟଙ୍କି ଉପରେ । ନନ୍ଦ କୁଡିମକୁ ଦେଖି ଡରି ଯାଉଥାଏ । ଝୁଲାମୁନା କାଳେ ନେଇଯିବ ଭାବି ଜବର କରି ଧରିଥାଏ ତାକୁ । ଏଆଡ଼େ କୁଡ଼ିମର ଏତିକିରେ ମନ ନ ମାନିବାରୁ ଟଙ୍କା ସବୁକୁ ଏକ ପାଖିଆ କଲା - ଅଶୋକ ଚିହ୍ନ ଉପରେ ଅଶୋକ ଚିହ୍ନ । ନନ୍ଦ ଭଲ କରି ଦେଖୁ ତା' କମାଣି । ନନ୍ଦ ମୁହଁ ଖୋଲି କିଛି କହିଲାନି ବୋଲି, କୁଡିମ ଛୋଟ ଛୁଆ ପରି ଖିଜେଇ ହୋଇ ପଚାରିଲା, 'ନେବୁ ଦୁଇ ଟଙ୍କା? ନେବୁ ପାଞ୍ଚ ଟଙ୍କା? ମରରେ ଘାଏ ଚାରଣା ପଇସାର ଆମେ ଲୋକ ନହେଲୁ? ନିମିଷଟାକରେ ଶହ ଶହ ଟଙ୍କା ଗଣି ଦେବା ଲୋକ ।'

ନନ୍ଦ ପାଟି ଫିଟାଇଲା ନାହିଁ । କିଛି ଲାଜରେ, କିଛି ଭୟରେ ଚୁପ ହୋଇ ଗାଡ଼ିର ସିଟକୁ ଆଉଜି ବସିଥାଏ କେବଳ ।

ଟେସନରୁ ଗାଡ଼ି ଛାଡ଼ିଲା ବେଳକୁ ମାଛି ଅନ୍ଧାର । ମୁହଁକୁ ମୁହଁ ଦିଶୁନି । ନନ୍ଦ ଭାବୁଥାଏ- କେତେବେଳେ କଣାଗାଁ ଆସିବ, ଆଉ କୁଡ଼ିମ ଓହ୍ଲାଇବ ଯେ । ବାଟସାରା କୁଡ଼ିମର ରାଜୁତି

ତା'ଉପରେ । କେତେବେଳେ ତା'ଗୋଡ଼ ଉପରେ ଗୋଡ଼ ଦେଲାଣି ତ ଆଉ କେତେବେଳେ ରାସ୍ତାରେ ମୋଡ଼ ଦେଖି ତା ଉପରେ ଲଦି ହୋଇ ପଡ଼ିଲାଣି । ପାଟି ଫିଟାଇଲେ ଏବେ ମା' ଭଉଣୀ ଶୋଧିବ । ଏ ଶଳାର କି ଡର ଇଜ୍ଜତକୁ? ଏଥିରୁ ତ ହଜାର ଗୁଣ ଭଲ ତାକୁ ଚାରଣା ପଇସା ଦେଇ ବିଦା କରିବା । ଲଟେରୀ ଟିକଟ ଭଳି ଏବେ ଫେରାଇଥାନ୍ତାବି ଦୁଇ ଚାରି ଟଙ୍କା ସାଙ୍ଗରେ । କେବେ କେଉଁ ମାଲଟେ କହିଲେ ବି ଆଣି ଦେଇଥାନ୍ତା ହାତେ ହାତେ । ଆଜି ହାଟରୁ ଶସ୍ତାରେ ଭୁଗୁଲି ଟୁପୁଲି ଦାନେ ପାଇଛି ବୋଲି ଯେଉଁ ଖୁସି ହେଉଥିଲା, ସେ ଖୁସି ଏବେ ଉଭେଇ ପାରିଥାଏ ନନ୍ଦ ମୁହଁରୁ । ଚାରଣା ପଇସା ଉଧାରି ଦେଇ ନଥିବାରୁ ଗାଳି କରୁଥାଏ ନିଜକୁ ନିଜେ ସେ ।

କଣାଗାଁ ପହଞ୍ଚିବାର ଘଡ଼ିଏ ଆଗରୁ ଗାଡ଼ି ଅଟକେଇବାକୁ କହି କୁଡ଼ିମ ଓହ୍ଲାଇଗଲା । ମଦ ଭାଟିଟା ଏଇଠି । ପିଇକି ଯିବ । ହେଲପରକୁ କହିଲା,'ଗାଡ଼ି ଉପରେ ମୋର ସାମାନ ଅଛି ।' ବାଛି ବାଛି ନନ୍ଦ ସାହୁର ଭୁଗୁଲି ଟୁପୁଲିକୁ ଦେଖାଇ କହିଲା, 'ଏଇଟା ମୋର ।' ତାକୁ ଆଗରୁ ଜଣା, ଏସବୁ ନନ୍ଦର ମାଲ । ନନ୍ଦର ନିଘା ନ ଥାଏ ଏଆଡ଼େ । କୁଡ଼ିମ ଓହ୍ଲାଇ ଯାଇଥିବାରୁ ବରଂ ଖୁସି ହେଉଥାଏ ସେ । ଗାଡ଼ି ଛାଡ଼ିଲା ।

ରାସ୍ତା ଉପରୁ ଦାନକ ଯାକ ଭୁଗୁଲି ଟୁପୁଲି ପଟ୍ ମାରି ମାରି ଆଣିଲା କୁଡ଼ିମ । ତାକୁ ଲାଗୁଥାଏ ଯେମିତି ନନ୍ଦ ସାହୁକୁ ମାରୁଛି ପଟ୍ । ଭାଟିରେ ଝୁଲି ଝୁକୁଥିବା କୁଲିକୁ କହିଲା,'ନେ ମାହାଲିଆ ଏ ସବୁ ନେ । ତୋର ମାଲିକକୁ କହିବୁ ଯା, ଏ କାଠ ମହଙ୍ଗା ଯୁଗରେ ଏତେ ସବୁ ଜାଳ ମାହାଲିଆ ମିଳିଛି । ଭଲ ମାଲ ଟିକେ ପିଆ କୁଡ଼ିମକୁ । ମନ ଖୁସି କରି ଦେ । ନନ୍ଦ ସାହୁର ମନେ ରହୁ ଆଉ କୁଡ଼ିମର ବି ମନେ ରହୁ ଆଜି ଦିନଟା ।'

ନୂଆଁ ଭୁଗୁଲି ଟୁପୁଲି ସବୁ ନିଆଁରେ ଝୁଙ୍କା ହେଲା ବେଳେ ଯେତେ ଯୋରରେ ପଟ୍ ପାଟ୍ କରୁଥାନ୍ତି, ପୁରା ଘଟଣା ବଖାଣି କେହି ଶୁଣୁ ନଥାନ୍ତୁ ପଛେ, କୁଡ଼ିମ ହସୁଥାଏ ତା'ଠାରୁ ବଡ଼ ଯୋରରେ । ନନ୍ଦ ସାହୁକୁ ଆଛା ପାନେ ଚଖାଇଛି ଆଜି । ସବୁଦିନ ମନେ ରହିଯିବ ତାର । ଗଂଝିଆ ପାଟିରେ ହସ ଗୁଡ଼ାକ କାଶ ଆଉ ଭାଟି ଚୁହ୍ଲାର ଧୂଆଁ ସାଁଗରେ ମିଶି ପୁଷର ଶୀତକୁ ଡଳି ଡଳାନ୍ତ କରି ପକାଉଥାନ୍ତି । ମହା ଆରାମରେ କୁଡ଼ିମ ବୋତଲରୁ ଗଜାମଦ ଢାଳି ପିଉଥାଏ ଆଉ ନିଆଁ ତାପୁଥାଏ । ■■■

# ବିଜ୍ଞାପନ

ପ୍ରଥମ ଶ୍ରେଣୀରେ ମାଷ୍ଟ୍ରେ 'କ-ଖ' ଶିକ୍ଷା ଦେବା ଅବସରରେ 'ଛ' କୁ ମନେ ରଖିବା ପାଇଁ କହିଲେ-ଛତା । ଆମେ ବୁଝିଲୁ 'ଛ' ମାନେ ଛତା, ଅର୍ଥାତ ଛତା ମାନେ 'ଛ' । ତାର ଉପଯୋଗିତା ସଂକ୍ରାନ୍ତରେ ପ୍ରଶ୍ନ କଲେ ଯେବେ ସବୁ ପିଲା ମିଶି ଉତ୍ତର ଦେଲୁ, ବର୍ଷାରୁ ରକ୍ଷା କରେ । ସେତେବେଳେ ଛତାର ଏହି ଗୋଟାଏ ମାତ୍ର ଗୁଣ ଆମକୁ ଜଣାଥିଲା । ମାଷ୍ଟ୍ରଙ୍କ ଶିକ୍ଷାରୁ ସେଦିନ ମୁଁ ପ୍ରଥମ ଥର ପାଇଁ ଜାଣିଲି, ଛତା ବର୍ଷାରୁ ରକ୍ଷା କରିବା ସଙ୍ଗେ ସଙ୍ଗେ, ପ୍ରଥମ ଶ୍ରେଣୀ ପିଲାଙ୍କୁ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ଶିକ୍ଷା ଦେବାରେ ମଧ୍ୟ ବିଶେଷ ସହଯୋଗ କରେ । କିଛି ବର୍ଷ ପରେ ସହରକୁ ସିନେମାରେ ଏବଂ ସିନେମାକୁ ସହରରେ ଦେଖି ଅବଗତ ହେଲି, ଚକ୍ ଚାକ୍ ସାର୍ଟ ପେଣ୍ଟ ପିନ୍ଧା ସ୍କୁଲ ଫେରନ୍ତା ଟୁଆ ଏବଂ କୋମଳ ବଦନା ଯୁବତୀ ନାରୀଙ୍କୁ ଛତା ଖରାରୁ ମଧ୍ୟ ରକ୍ଷା କରୁଛି । ଗାଁରୁ ନ ବାହାରିବା ଯାଏ ଛତାର ଏହି ବିଶେଷ ଗୁଣଟି ମତେ ଜଣା ନ ଥିଲା । ଖରାରୁ ରକ୍ଷା ପାଇବା ପାଇଁ ମୁଣ୍ଡରେ ଗାମୁଛା ଦେଲେ ଯଥେଷ୍ଟ । ଆଉ ସାନ ପିଲାଙ୍କ କଥା ଛାଡ଼ । ଆମ୍ବ, ଖଜୁରୀ, ଜାମୁକୋଳିର ସ୍ୱାଦ ମୁହଁରେ ଲାଗିଲେ ବାପାମାଙ୍କର ମାଡ଼ ତ କାଟେନି, ଖରା ଅବା କାଟିବ କେତେକେ? ପୁଣି ଦୁଇ ପହରେ ଘରୁ ଲୁଚି, ଆମ୍ବ, ଖଜୁରୀ ଅନ୍ୱେଷଣରେ ତତାପନା ହୋଇ ଭାଗିଲା ବେଳେ ଛତାଟିଏ ସାଙ୍ଗରେ ବା ନେବାକୁ କା'ର ମନେ ପଡ଼ୁଛି? ସେ ଯାହାହେଉ ବୟସ ଏବଂ ସେ ଅନୁପାତରେ ଦୁନିଆଁ ଦେଖା ବଢ଼ିବା ସଙ୍ଗେ ସଙ୍ଗେ ଛତାର ବହୁମୁଖୀ ଗୁଣ ସଂକ୍ରାନ୍ତରେ ଅଧିକରୁ ଅଧିକ ଜାଣିବାର ଯେଉଁ ଅବସର ମିଳିଲା, ଆଜି ପର୍ଯ୍ୟନ୍ତ ସେହି କ୍ରମବର୍ଦ୍ଧିଷ୍ଣୁ ଛତାଜ୍ଞାନରେ ପୂର୍ଣ୍ଣାହୂତି ପଡ଼ିନାହିଁ ।

ଥରେ ଘୋର ବର୍ଷାପରେ ଆମ ଗାଁର ମାଧୁ ନାଏକ କ୍ଷେତକୁ ଯାଇ ଦେଖିଲା, ପାଞ୍ଚ କେଜିଆ ମାଛଟିଏ ଧାନ କ୍ଷେତ୍ରରେ, ସାଧୁସନ୍ନ୍ୟାସୀ ଜଣେ ସାଂସାରିକ ମୋହମାୟାରେ ପଡ଼ି ଛଟ ପଟ ହେଲା ପରି, କଲବଲ ହେଉଛି । ମାଧୁ ଆଖ ପାଖରେ ଖୋଜିଲା ବାଡ଼ି ଠେଙ୍ଗା କିଛି ନାହିଁ । ହାତରେ ଧରିଥିବା ଛତାରେ ସେ ମାଛଟାକୁ ମାରିବା ଆରମ୍ଭ କଲା; କିଛି

ବେଳ ପରେ ସଫଳ ହେଲା ମଧ୍ୟ । ଅବଶ୍ୟ ଛତା ଭାଙ୍ଗିଲା । ତା' ଅଭିଜ୍ଞତାରୁ ଆମେ ଜାଣିଲୁ ଯେ, ଛତାରେ ବଡ଼ ମାଛ ମାରି ହୁଏ । ବହୁରାଷ୍ଟ୍ରୀୟ କମ୍ପାନୀର ଆଳୁ ଚିପ୍ସ ପରି ଛତା ଯେତେ ମହଙ୍ଗା ହେଲେ ବି ବଡ଼ ମାଛର ଚଢ଼ା ଦାମ ତୁଳନାରେ ଯେହେତୁ ତାହା ଆଗକୁ ବଢ଼ି ନପାରେ ମାଛମରାରେ ତା'ର (ଛତାର) ଭାଙ୍ଗିଯିବାରେ କିଛି କ୍ଷତି ନାହିଁ; ବରଂ ଲାଭ ଅଧିକ । (ଏଠାରେ ଛତାର ଭାଙ୍ଗିବା ଏବଂ ଆଶାତୀତ ଭାବେ ମହଙ୍ଗା ହେବାଟାକୁ ଲାଭପ୍ରଦ ବୋଲି ପ୍ରମାଣିତ କରି ପାରିଥିବାରୁ ଛତା କମ୍ପାନୀଠାରୁ ଆମ୍ଭେ ସ୍ୱତନ୍ତ୍ର ପୁରସ୍କାର ଆଶା କରୁଁ । କାରଣ ଛତାର ବାରମ୍ବାର ଭାଙ୍ଗିବାରେ କମ୍ପାନୀର କାଟତି ଏବଂ ମହଙ୍ଗା ହେବାରେ ଲାଭର ମାତ୍ରା ବୃଦ୍ଧି ସମ୍ଭବ । ଅଭଙ୍ଗା ଏବଂ ଶସ୍ତା ଛତା ଉତ୍ପାଦନ କରି କେବେ କୌଣସି କମ୍ପାନୀ ଆବଶ୍ୟକୀୟ ମାତ୍ରାରେ ଲାଭ ଆଶା କରି ନପାରେ-ଏହା ସର୍ବଥା ବିଦିତ)

ବଡ଼ମାଛ କଥା ଅଲଗା । କିନ୍ତୁ ସାନ ବା କୁଟି ମାଛମରାରେ ଛତାର ଥୁପି ତୁଲ୍ୟ ବ୍ୟବହାର ଆବହମାନ କାଳରୁ ପ୍ରଚଳିତ । ମାତ୍ର ସମାଜରେ ଖଟିଖିଆ ଲୋକପରି, ବଜାରରେ କୁଟିମାଛର ଓଜନ ଏବଂ, ତେଣୁ, ମୂଲ୍ୟ ଯେହେତୁ ବଡ଼ ମାଛ ତୁଳନାରେ କମ, ଛତାକୁ ଭାଙ୍ଗିବାର ସେ ସାହସ ରଖେନି । ଅର୍ଥାତ କୁଟିମାଛ ମରାରେ ଛତାର ଭଙ୍ଗା-ଗଢ଼ା, ବିକା-କିଣା ବା ଲାଭ-କ୍ଷତି ପ୍ରଶ୍ନ ଜଡ଼ିତ ନୁହେଁ । ତେଣୁ ଏ ନେଇ ବିଶେଷ ଚର୍ଚ୍ଚା ଅନାବଶ୍ୟକ ।

ହାଇସ୍କୁଲ ପଢ଼ିଗଲା ବେଳେ ଦିନେ ଦେଖିଲି, ମାରଣା ଷଣ୍ଢଟିଏ ରାସ୍ତାରେ ବାଟ ଓଗାଳି ଛିଡ଼ା ହୋଇଛି । ପାଖରେ କେହି ନାହାନ୍ତି । ହାତରେ ବାଡ଼ି ନାହିଁ; ଛତା ଅଛି । ସ୍କୁଲ ଯିବାରେ ଡେରି ହେଉଛି । ଛତାରେ ମାଇଲେ କି ଆଉ ଷଣ୍ଢକୁ କାଟେ? ସେ ତ ଆଉ ତହକ ବିକଳ ହେଉଥିବା, ରାସ୍ତା ପାଉ ନଥିବା ପାଞ୍ଚ କେଜିଆ ମାଛ କି ସାଧୁ ସନ୍ନ୍ୟାସୀ ନୁହେଁ । ଗାଁର ହୋଇ ଗାଁରେ ଦାଦାଗିରି କରୁଥିବା ଓସ୍ତାଦ ମାରଣା ଷଣ୍ଢଟିଏ । ଛତାଟିକୁ ଛଟକେଇ ଦେଇ ମୁଁ ସାହସ ଧରି ତା ପାଖକୁ ଆସିଲି । ସେ ମତେ ଆହ୍ୱାନ ଜଣାଉଛି,'ଆ, ଆଉ ଟିକେ ପାଖକୁ ଆ । ଦେଖ କ'ଣ ହେବ ତୋର ।' ହଠାତ୍ ଛତାଟି ତା'ଆଖି ଆଗରେ ଟାଙ୍ଗିଦେଲି । ଅତର୍କିତ ଭାବେ ସାମନାରେ ଟଙ୍ଗା ଚତାଟିକୁ ଦେଖି ଦୁଷ୍ଟ ଆଖି ବୁଜିଦେଲା । ସେହି ମୌକାରେ ମୁଁ ଦେ ଦୌଡ଼ । ଉନବିଂଶ ଶତାବ୍ଦୀର ମହା ପରାକ୍ରମଶାଳୀ ମରାଠା-ମୋଗଲଗଣ କ୍ଷୁଦ୍ରକାୟ ଇଂରେଜ ହାତରେ ଗୋଟି ଗୋଟି ହୋଇ ପରାସ୍ତ ହେଲା ପରି ବୃହତକାୟ ଷଣ୍ଢଟି ଲାଜଜାକି ରହିଲା । ଆଉ ମୁଁ? ଇଂରେଜମାନେ ଭାରତ ବିଜୟର ଶ୍ରେୟ ଯେମିତି କେବଳ ତୋପ କମାଣକୁ ଦେଲେ, ମୁଁ ସେମିତି ଛତାକୁ ଶ୍ରେୟ ନ ଦେଇ ରହି ପାରିଲି ନାହିଁ ।

ଛତାର ଉପରୋକ୍ତ ସାମରିକ ଉପଯୋଗରୁ ଆମ୍ଭେ ଏହି ଶିକ୍ଷା ପାଉ ଯେ, ହାତରେ ମାତ୍ର ଛତାଟିଏ ଥାଉ, ସମ୍ମୁଖ ସମରରେ ଆମ ଦେଶ ବୃହତକାୟ ପଡ଼ୋଶୀ ଦେଶ ଚୀନକୁ ମଧ୍ୟ ଭୂଆଁ ବୁଲେଇ ଦେବ । ଏଥିରେ ଦ୍ୱିମତ ହେବାର ନାହିଁ । ସମ୍ମୁଖ ସମରରେ ଛତାର ଏହି ଉପଯୋଗିତାକୁ ଉପଲବଧି କରଥିଲେ ବୋଲି ତ ନିଶୂନ ବିପଦ ସଂକୁଳ ରାସ୍ତାରେ ମହା ମହା ଡକାୟତମାନଙ୍କର ମୁହାଁମୁହିଁ ହୋଇ ତୀର୍ଥ ଭ୍ରମଣରେ ଗଲାବେଳେ ପଣ୍ଡିତ ବାରମ୍ବାର ଅବୋଲକରାକୁ କହୁଥାନ୍ତି, 'ଧର କମ୍ବଳ, ହାତେ ଛତା' । ନୋହିଲେ ଦୁନିଆଁରେ ଏତେ ସବୁ ବସ୍ତୁ ଥାଉ ଥାଉ କେବଳ କାହାଣୀ ଶୁଣି ଦିଲଖୁସ କରୁଥିବା ନିର୍ବୁଦ୍ଧିଆ ଅବୋଲକରାକୁ ଧରି କି ଆଉ ତୀର୍ଥଭ୍ରମଣରେ ଯିବାର ସେ ସାହସ କରିଥାନ୍ତେ?

ଉପଭୋକ୍ତା ସୁରକ୍ଷା ଆଇନ ଯେତେ ଲମ୍ବା ଏବଂ କଡ଼ା ହେଲେ କ'ଣ ହେବ, ଆଜି ସମସ୍ତଙ୍କୁ ଜଣା ଯେ, ଦୋକାନୀ ଓ ଗ୍ରାହକର ସମ୍ପର୍କ ବିରାଡ଼ି ଓ ମୂଷା ଭଳି । କୌଣସି ଆଇନର ଦ୍ୱାହି ଦେଇ ମୂଷା କେବେ ବିରାଡ଼ିଠାରୁ ପ୍ରାଣରକ୍ଷା କରି ନ ପାରେ । ସେଥିପାଇଁ ପ୍ରାଣ ଥିବା ଯାକେ ତାକୁ କୌଶଳ ଅବଲମ୍ବନ କରିବାକୁ ପଡ଼େ । ଉପଭୋକ୍ତାର ବି ଆଜି ଅବସ୍ଥା ତଦ୍ରୂପ । ଏଭଳି ଦୁଃସ୍ଥିତିରେ ଛତା ଗ୍ରାହକକୁ ଠକ ଦୋକାନୀଠାରୁ ସୁରକ୍ଷା ପ୍ରଦାନ କରେ । ଥରେ ବାପାଙ୍କ ସାଙ୍ଗରେ ବଜାର ଯାଇ ମୁଁ ଏହା ସ୍ୱଚକ୍ଷୁରେ ଦେଖିଲି । ଗୋଟାଏ ଦୋକାନୀଠାରୁ ସମସ୍ତ ଆବଶ୍ୟକୀୟ ଦ୍ରବ୍ୟର ଦାମ ପଚାରି ଆଉ ଏକ ଦୋକାନୀ ପାଖକୁ ଉକ୍ତ ଦ୍ରବ୍ୟ ସବୁର ଦାମ ଜାଣିବା ପାଇଁ ଗଲାବେଳେ, ପ୍ରଥମ ଦୋକାନୀ ପାଖରେ ବିଶ୍ୱାସ ସୃଷ୍ଟି କରିବା ପାଇଁ ବାପା 'ହଉ ଏବେ ଆସୁଛି' କହି ଖାଲି ବେଗ୍ ସାଙ୍ଗରେ ଛତାଟିକୁ ରଖି ଦେଉଛନ୍ତି । ଏତକ ନ କଲେ କୁଆଡ଼େ ଦୋକାନୀ ଭାବେ ଗ୍ରାହକ ହାତରୁ ଗଲା । ଯଦି ଦୁର୍ଯୋଗକୁ ଦ୍ୱିତୀୟ ଦୋକାନୀ ପ୍ରଥମଠାରୁ ବି ଅଧିକ ହାରାମି ଓ ଠକ, ଏବଂ ବାଧ୍ୟରେ ବାପାଙ୍କୁ ପ୍ରଥମ ପାଖକୁ ଫେରିବାକୁ ପଡ଼େ, ସେ ନିଜ ଦୋକାନୀ ସୁଲଭ ଢଙ୍ଗରେ ଅଧିକ ଲାଭ ପରାୟଣ ହୋଇ ବାପାଙ୍କ ଠାରୁ କଡ଼ାଗଣ୍ଡା କରି ଅସୁଲି ନିଏ । କିନ୍ତୁ ବିଶ୍ୱାସର ପ୍ରତୀକ ଛତାଟି ଥିଲେ, ମନେକରେ ଗ୍ରାହକ ଏବେ ଆସିବ । ଆସିଲେ ଅଧିକ ଠକି ପାରେନି; ନ ଆସିଲେ ତ ଛାଡ଼ । ବାପା ସୁବିଧା ଦେଖି ପରେ ଛତାଟି ଦ୍ୱିତୀୟ ଦୋକାନୀର ଚାକର ହାତରେ ମଗେଇ ପଠାନ୍ତି । ତେଣୁ କେବଳ ମାରଣା ଷଣ୍ଢ କାହିଁକି, ଦୋକାନୀ ଠାରୁ ମଧ୍ୟ ଛତା ସୁରକ୍ଷା ପ୍ରଦାନ କରେ ।

ଏହା ବ୍ୟତୀତ ଛୋଟ ମୋଟ ଉଧାର ପାଇଁ ଛତାଟିକୁ ବନ୍ଧା ରଖି କାମ ମଧ୍ୟ ଅସୁଲ କରାଯାଇପାରେ । ଯେଉଁ ଗ୍ରାହକର ବେକରେ ସୁନା ଚେନ ଓ ହାତରେ ଦାମି ଘଡ଼ି ବାନ୍ଧିବାର

ତାଙ୍କତ ନାହିଁ, ବଜାରକୁ ଗଲାବେଳେ ତାଙ୍କ ପାଇଁ ଛତାର ନିହାତି ଆବଶ୍ୟକତା ରହିଛି । ଯଦି ଛତାର ବେଣ୍ଟ ବାଉଁଶ ଏବଂ କନା ସାମାନ୍ୟ ଦଦରା, ତେବେ ଉଧାରୀଙ୍କୁ ଜୀବନ ଉଧାରୀରେ ପରିଣତ କଲେ ବି କିଛି କ୍ଷତି ନାହିଁ ।

ଭଉଣୀର ବିବାହ ବଜାର ବେଳେ ବାପାଙ୍କର ଦୋକାନୀ ପାଖରେ ହଜାରେ ଟଙ୍କା ଉଧାର ରହିଗଲା । ଚିହ୍ନା ଦୋକାନୀ; ଛତା ବନ୍ଧକ ଦେବାକୁ ପଡ଼ିଲାନି । ମାତ୍ର ମିଆଦି ପୂରିଗଲା ପଛେ, ଉଧାର ପ୍ରତିଶୋଧ କରିବା ନୋହିଲା । ସେଆଡ଼େ ଅନ୍ୟ କାମ ପାଇଁ ସହରକୁ ନ ଗଲେ ନ ଚଳେ । ଏଭଳି ପରିସ୍ଥିତିରେ ଖରା ବର୍ଷା, କିଛି ନ ଥାଉ ପଛେ, ସାଙ୍ଗରେ ଛତାଟି ନ ନେଲେ ବାପାଙ୍କର ଅଚଳ । ଦୋକାନୀ ଆଡ଼େ ଛତାଟି ଟାଙ୍ଗି ଦେଇ ଟିକେ ଚାଲିର ଠାଣି ବଦଳେଇ ଦେଲେ ଖାତକର ଟେର ମିଳିବା ମୁସ୍କିଲ । ଦିନ ଦୁଇ ପହରେ, ମଝି ରାସ୍ତାରେ ଖାତକ ଏବଂ ମହାଜନ ମଧ୍ୟରେ ଛତାଟି ହିମାଳୟ ତୁଲ୍ୟ ବାଡ଼ ବତା ଦେଲା । ସମୁଦ୍ରର ଭୀଷଣକାୟ ଲହଡ଼ା ପରି ମହାଜନ ଖାତକ ଆଗରେ ଚାଲିଯିବ; ତାର ତିଳେ ମାତ୍ର ସନ୍ଦେହ ନାହିଁ ଯେ, ଛତ୍ରପତି ଆଉ କେହି ନୁହନ୍ତି, ତାର ଖାତକ । ଅଶୀ ନବେ ଟଙ୍କାରେ କିଣା ଛତାଟି ଯଦି କାହାର ହଜାରେ ଟଙ୍କାର ଇଜ୍ଜତକୁ (ହଜାରେ ଟଙ୍କାର ଧାରକୁ କଣ୍ଟ ପୂରିଲା ପରେ ସୁଦ୍ଧା ପରିଶୋଧ କରି ପାରୁ ନ ଥିବା ଖାତକର ଇଜ୍ଜତର ମୂଲ୍ୟ କେବଳ ହଜାରେ ଟଙ୍କା; ସେଥିରୁ ବେଶୀ ହୋଇ ନ ପାରେ ।) ମଝି ରାସ୍ତାରେ ତୋଳି ଧରିଲା, ତେବେ ଯା'ଠାରୁ ଅଧିକ କ'ଣ ଆଶା କରାଯାଇପାରେ?

ମହାଭାରତ ରଚନା ବେଳେ ହୁଏତ ବ୍ୟାସଦେବଙ୍କୁ ଛତାର ଉକ୍ତ ଇଜ୍ଜତ ରକ୍ଷାକାରୀ ଭୂମିକା ସଂପର୍କରେ ଜଣା ନ ଥିଲା, ଅଥବା ମହେନ୍ଦ୍ର ଦତ୍ତ ଛତା ଉଦ୍ଭାବନ କରି ନ ଥିଲେ । ନୋହିଲେ ଦ୍ରୌପଦୀ ବସ୍ତ୍ରହରଣ ବେଳେ କୁରୁସଭାରେ ଶ୍ରୀକୃଷ୍ଣଙ୍କର ଆବଶ୍ୟକତା ପଡ଼ି ନ ଥାନ୍ତା; କେବଳ ଖଣ୍ଡିଏ ଭଲ ମହଙ୍ଗା ଛତା ହେଲେ କାମ ଚଳିଥାନ୍ତା ।

ଛତାର ଇଜ୍ଜତ ରକ୍ଷାକାରୀ ଗୁଣ ସଂପର୍କରେ ବିଶେଷ ଜ୍ଞାନାର୍ଜନ ନିମନ୍ତେ ତାଳ ପତ୍ର ଛତ୍ର ଏବଂ ବଳ୍କଳଧାରୀ କୌଣସି ମହିମାଧର୍ମୀ ସନ୍ନ୍ୟାସୀଙ୍କୁ ଓ 'କିରାୟାଦାର' 'ଦୁକାନଦାର' ଶୀର୍ଷକ କେତେଗୋଟି ହିନ୍ଦି ଚଳଚିତ୍ର ଦେଖିବା ଅତି ଜରୁରୀ ।

ହିମାଳୟ ରୂପରେ ଯେ ଛତା କେବଳ ଖାତକର ଇଜ୍ଜତ ରକ୍ଷାକରେ ତାହା ନୁହେଁ; ବରଂ ଏହି ରୂପରେ ସେ ଆମକୁ ନିଜ ଠାରୁ ଦରିଦ୍ର ଜ୍ଞାତି ପରିଜନ ଏବଂ କ୍ଷୁଦଭଙ୍ଗା ସାହାଯ୍ୟରେ ବନ୍ଧୁତାର ଡୋରିକୁ ମଜବୁତ କରିବା ପାଇଁ ସଦା ବ୍ୟାକୁଳ ସୁଦାମାରୂପୀ ବାଲ୍ୟ ବନ୍ଧୁଠାରୁ ମଧ୍ୟ ସୁରକ୍ଷିତ ଦୂରତାରେ ରଖେ । ମଝି ରାସ୍ତାରେ ଯିବାବେଳେ ଆତ୍ମବିଶ୍ୱାସର ସହିତ

କେବଳ ଆପଣ ଛତାଟିକୁ ଟାଙ୍ଗି ରଖନ୍ତୁ, ଦେଖିବେ - ଦରିଦ୍ର ଜ୍ଞାତି କୁଟୁମ୍ବ ଏବଂ ଅଦରକାରୀ ବାଲ୍ୟବନ୍ଧୁଙ୍କୁ ଘଉଡ଼େଇବା ପାଇଁ ଆପଣଙ୍କୁ ଆଉ ମୁହଁ ଫୁଲେଇବାର ଅଥବା ଭାରି ବ୍ୟସ୍ତ ଥିବାର ଅଭିନୟ କରିବାକୁ ପଡ଼ିବ ନାହିଁ । ନିୟମିତ ଭାବେ କିଛି ଦିନ ଏହା ଅଭ୍ୟାସ କଲେ ଦେଖବେ, ଘରେ ଆପଣ ରହିବେ, ଛତା ରହିବ; କିନ୍ତୁ ରହିବେ ନାହିଁ ବୋଇଲେ ଅଲକ୍ଷ୍ମୀ ଜ୍ଞାତି ପରିଜନ ଓ ଅଦରକାରୀ ବନ୍ଧୁ ପ୍ରବର । ଏଥିରେ ସୁବିଧା ଏତିକି ଯେ, ଆକସ୍ମାତ ଯଦି ସାହାଯ୍ୟର ଆବଶ୍ୟକତା ପଡ଼େ, ଛତା ଆଡ଼େଇ ଦେଇ ସେମାନଙ୍କୁ ପାଖକୁ ମଧ୍ୟ ଟାଣିହୁଏ । ଅର୍ଥାତ 'ଟଙ୍କା ଛତା' ହିମାଳୟ ରୂପରେ ସେମାନଙ୍କୁ ଯେମିତି ଆପଣଙ୍କର ପାଖମାଡ଼ି ଦିଏନା, କାମ ପଡ଼ିଲେ'ଅ-ଟଙ୍କା ଛତା' ମୌସୁମୀ-ବାୟୁ ରୂପରେ ସେମାନଙ୍କୁ ସେମିତି ପାଖକୁ ଡାକି ଆଣେ ।

ଆଜିକାଲି ମାସିକ ବେଙ୍କ ବ୍ୟାଲାନସ୍ ବୃଦ୍ଧି ଏବଂ ଖର୍ଚ୍ଚକାଟର ଆବଶ୍ୟକତା ଉପରେ ସମସ୍ତେ ଗୁରୁତ୍ୱ ଦେଉଛନ୍ତି । ବାପା, ମା, ଭାଇ, ବନ୍ଧୁଙ୍କର ବାରମ୍ବାର ଆଗମନ ଓ ରାତ୍ରୀ ରହଣି ଏଥିପାଇଁ ଏକ ବଡ଼ ବାଧକ - ଏକଥା ସ୍ୱଳ୍ପ ସଂଚୟ ଯୋଜନା ବିଭାଗ ସମେତ ପ୍ରଗତିବାଦୀ ସହରୀ ବୁଦ୍ଧିଜୀବୀ ଗୋଷ୍ଠୀ ମଧ୍ୟ ହୃଦୟଙ୍ଗମ କଲେଣି । ସେ କ୍ଷେତ୍ରରେ ଛତା ବନ୍ଧୁ-ପରିଜନଙ୍କୁ ଘଉଡ଼େଇ ଆମ ମାସିକ ଖର୍ଚ୍ଚ କାଟ ଓ ସ୍ୱଳ୍ପ ସଂଚୟ ଯୋଜନାକୁ ସାକାର କରୁଛି - ଏହା ନିସନ୍ଦେହ । ସ୍ୱଳ୍ପ ସଂଚୟ ଯୋଜନା ବିଭାଗ ତ ଏଥିପାଇଁ ଛତାକୁ ନିଜର 'ଲୋଗୋ' ରୂପେ ସ୍ୱୀକୃତି ଦେବା କଥା । କୁହନ୍ତୁ ଭଲା, ମାସିକ ଆୟ ଓ ଉପୁରିର ପରିମାଣ ଯାହା ହେଉନା କାହିଁକି, ଅହର୍ନିଶ କୁଣିଆ (ସେ ପୁଣି ନିଜଠାରୁ ଦରିଦ୍ର) ପ୍ରପୀଡ଼ିତ କୌଣସି ଏକାନ୍ନବର୍ତ୍ତୀ ପରିବାର କି କେବେ ସହରରେ ଘର ଖଣ୍ଡିଏ କିଣିବାର, ଫ୍ରିଜ୍, କୁଲରଟିଏ ଲେଖା ରଖିବାର ସ୍ୱପ୍ନ ଦେଖି ପାରିବ? 'ସାମାଜିକ ବନ୍ଧନ', 'ପାରିବାରିକ ସଂପର୍କ'ର ଶୃଙ୍ଖଳା ଭଜନ କରି କେତେ ଦିନ ବା ମଣିଷ ବିନା 'ଫ୍ରିଜ୍ - କୁଲର' ରେ ରହି ପାରିବ? ତା'ର ବି ତ ଟିକିଏ ଆତ୍ମ-ସମ୍ମାନ ରହିବା ଆବଶ୍ୟକ ।

ଦରିଦ୍ର 'ଖଳ' ଜ୍ଞାତିଜନଙ୍କଠାରୁ ଆବଶ୍ୟକୀୟ ଦୂରତା ରକ୍ଷା କରିବାରେ ଛତାର ଯେମିତି ଉପଯୋଗ, ନିଜ ଉପର ଅଫିସର, ଦଳୀୟ ନେତା, କଳ୍ପନାର ପ୍ରେମିକା ଇତ୍ୟାଦି 'ମହତ' ଲୋକଙ୍କୁ ପାଖକୁ ଆକର୍ଷିତ କରିବାରେ ମଧ୍ୟ ତାର ସେମିତି ସହଯୋଗ ରହିଛି । କିନ୍ତୁ ଏଥିପାଇଁ ଖରା କିମ୍ବା ବର୍ଷାକୁ ଅତର୍କିତ ଭାବରେ ନିଜ ପ୍ରକୋପ ଦେଖାଇବାକୁ ପଡ଼ିବ, ଏବଂ ସେ ପୁଣି ଅଫିସ ଛୁଟି ଅଥବା ସିନେମା 'ସୋ' କିଂବା କ୍ଲାସ ଶେଷ ବେଳେ । ଯେହେତୁ ଏଭଳି ଅତର୍କିତ ଭାବ କ୍ୱଚିତ ଆସେ, ତାର ସଦବ୍ୟବହାର ନିମିତ୍ତ ସର୍ବଦା ନିଜକୁ ଛତା

ହସ୍ତରେ ପ୍ରସ୍ତୁତ ଏବଂ 'ମହତ' ଲୋକଙ୍କୁ ବିନା ଛତାରେ ଅପ୍ରସ୍ତୁତ ରହିବାକୁ ପଡ଼ିବ । ଆମ୍ଭେ ଜାଣୁ, ବର୍ଣ୍ଣିତ ଦୃଶ୍ୟ ପ୍ରସ୍ତୁତିରେ ବ୍ୟକ୍ତିର ନିଜ ଭୂମିକା ଅତ୍ୟନ୍ତ ଗୌଣ । ସ୍ୱଇଚ୍ଛାରେ ଆପଣ ନିଜେ ନା ଖରା ବର୍ଷା କରିପାରିବେ, ନା 'ମହତ' ଲୋକଙ୍କୁ ଛତା ଧାରଣରୁ ବାରଣ କରିପାରିବେ । କେବଳ ପାରିବେ ତ ଗୋଟାଏ କାମ - ସର୍ବଦା ଛତା ଧାରଣ । ତେଣୁ ସମଗ୍ର ପରିସ୍ଥିତି ସୃଷ୍ଟି ପାଇଁ ଆପଣଙ୍କୁ ଗୁଣି ଗାରେଡ଼ିର ସାହାଯ୍ୟ ନେବାକୁ ପଡ଼ିବ । ବିଦେଶୀ ଔଷଧ ସେବନ ବେଳେ ଯେମିତି ଔଷଧର ପାର୍ଶ୍ୱ-ଅବଗୁଣ ଦୂରୀକରଣ ନିମନ୍ତେ ଭିନ୍ନ ଏକ ବିଦେଶୀ ଔଷଧ ସେବନ ଜରୁରୀ ହୋଇପଡ଼େ , ଛତାର 'ମହତ' ଓ ମନୋହାରୀ ଗୁଣ ଲାଭ ନିମନ୍ତେ ସେମିତି ଗୁଣି-ଗାରେଡ଼ିର ମଧ୍ୟ ଦରକାର ହୁଏ । ବିଦେଶୀ ଔଷଧ ସେବନରେ ପାରଙ୍ଗମ ଜନସାଧାରଣ ଛତାର ଏହି ପାର୍ଶ୍ୱ-ଅବଗୁଣକୁ କଦାପି ଅବଗୁଣ ବୋଲି ବିଚାରିବେ ନାହିଁ-ଏ ବିଶ୍ୱାସ ଆମର ଅଛି ।

ସଂପୂର୍ଣ୍ଣ ଦୃଶ୍ୟ ପ୍ରସ୍ତୁତ ହେଲା ପରେ, ଆପଣ ଛତା ହସ୍ତରେ 'ମହତ' ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଆଗଭର ହେବେ । ଯଦି 'ମହତ' ଲୋକ ଅତି ମହତ ଅର୍ଥାତ ଅତି ଉପର ଅଥବା ଭୀଷଣ ସୁନ୍ଦରୀ, ଆପଣ ଛତାଟି ତାଁକୁ ଦେଇ ନିଜେ ଭିଜିବା କିମ୍ବା ଖରାରେ ତାତିବା ଆରମ୍ଭ କରିବେ । ସେ ଯାହା ହେଉ, ଗୋଟାଏ ଛତା ତଳେ ମଣିଷ ନିଜ ଉପରିସ୍ଥ ଅଧିକାରୀ କିମ୍ବା କଳ୍ପିତ ପ୍ରେମିକା ସହ ଯଦି ଚାଲିବାର ସୌଭାଗ୍ୟ ପାଏ, ତେବେ ତା'ଠାରୁ ବଳି ଆନନ୍ଦ ଏ ଇହ ଜଗତରେ ଆଉ ନାହିଁ । ଧୈର୍ଯ୍ୟ ରଖି କେବଳ 'ହାଁ ହାଁ' ହୁଅନ୍ତି ନାହିଁ, ଦେଖିବେ ଏଭଳି କୌଣସି ଅଫିସର ନାହାନ୍ତି, ଯିଏ ଆପଣଙ୍କୁ ପଦୋନ୍ନତି ଏବଂ ଆପଣଙ୍କ ଶତ୍ରୁକୁ ପଦାବନତି ନ ଦେବେ; ବା ଏଭଳି କୌଣସି ଯୁବତୀ ନାହାନ୍ତି, ଯିଏ ସେକେଣ୍ଡ ସୋ ସିନେମା ଦେଖିବା ପାଇଁ ଆପଣଙ୍କୁ ଆମନ୍ତ୍ରଣ ନ ଜଣାଇବେ, କିମ୍ବା ସିନେମା ଦେଖାରୁ ଜ୍ଞାନ ଆହରଣ କରିବାରେ ଯଦି ଅଭିଜ୍ଞା, ତେବେ ନିଜ ବାପାଙ୍କ ସହ ଭେଟ କରେଇବା ପାଇଁ ପ୍ରତିଶ୍ରୁତି ନ ଦେବେ ।

ଆମର ଜଣେ ସହକର୍ମୀ ଅଛନ୍ତି । ଡେରିରେ ଚାକିରୀ ଆରମ୍ଭ କରିଛନ୍ତି । ବୟସ ହେଲାଣି । ମାତ୍ର ଯବାନ ଦେଖାଯିବା ପାଇଁ ସମସ୍ତ ପ୍ରଚେଷ୍ଟା ତାଙ୍କଠାରେ । ନିୟମିତ ମୁଣ୍ଡ ବାଳ କଳା କରିବେ; ଖରା, ବର୍ଷା, ଶୀତ—ବର୍ଷ ସାରା ଛତାଟିଏ ଧରି ଚାଲିବେ । ବାଡ଼ି ଧରି ଚାଲିଲେ ବୃଦ୍ଧତ୍ୱ ଜଣାପଡ଼ିଯାଏ । ଛତାକୁ ଆଶା ବାଡ଼ି ପରି ବ୍ୟବହାର କଲେ କୁଆଡ଼େ ବୟସ ଲୁଚିଯାଏ ।  ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ ବନ୍ଧୁଙ୍କଠାରୁ ତାଙ୍କ ନିୟମିତ ଛତା ଧାରଣର ରହସ୍ୟ ଜାଣିଲା ପରେ ମୁଁ ଅବଗତ ହେଲି ଯେ, ନକଲି ବାଳ ପରି ଛତା ବୁଢ଼ାକୁ ଯବାନ

କରି ନ ପାରିଲେ ବି, ସେ ଭଳିଆ କିଛି ଆତ୍ମତୃପ୍ତି ଆଣେ । ଦେଖିଲା ଲୋକ ନ ଭାବନ୍ତୁ ପଛେ, ବୁଢ଼ା ଭାବେ ଛତା ଯୋଗୁଁ ସେ ଯବାନ ହୋଇ ଯାଇଛି ।

ହିନ୍ଦୁ ସନ୍ନ୍ୟାସୀ ଏବଂ ଛୋଟ ଛୁଆକୁ ବାଦ ଦେଲେ ଆଜି କିଏ ନ ଚାହେଁ, ତା'ର ବୟସ ଅଧିକରୁ ଅଧିକ ଊଣା ହେଉ । ଆଈ ବୁଢ଼ୀ ଚାହେଁ, ମା' ଭଳି ଦେଖା ଯିବାକୁ; ମା ଚାହେଁ ସମସ୍ତେ ତାକୁ ତା'ଝିଅର ଭଉଣୀ ଡ଼ାକନ୍ତୁ; ଆଉ ବଢ଼ିଲା ଝିଅର ଇଚ୍ଛା, ତା'ଗାଲ, ବାଳ, ଭୃଲତା ଓ ଓଠରେ କୁନି ଝିଅର କୋମଳତା ପ୍ରଦର୍ଶିତ ହେଉ, ତେଣିକି ହୃଦୟ ପଥର ପରି କଠୋର ହେଲେ ବି ଚଳିବ । ବୟସ ଊଣା କରି ପାରୁଥିବାର ଆଶା ଓ ସଫଳ ଭାବେ ଭ୍ରମ ସୃଷ୍ଟିକରି କେତେ ସ୍ନୋ, ପାଉଡର ଓ ସେମ୍ପୋ କମ୍ପାନୀ ଯେ ପୂର୍ଣ୍ଣମୀ ଚନ୍ଦ୍ର ପରି ବିକଶିତ ହେଉଛନ୍ତି, ତା'ର ଇୟତ୍ତା ନାହିଁ । ଏହି ପରିପ୍ରେକ୍ଷୀରେ ଛତାର ଉପରୋକ୍ତ ଗୁଣର ଯଦି ସଫଳ ବିଜ୍ଞାପନ କରାଯାଇପାରିବ ଆମର ଦୃଢ଼ ବିଶ୍ୱାସ, ଛତା ମଧ୍ୟ ବ୍ଲୁ ଫିଲ୍ମର ଟିକେଟ ଭଳି କଳା ବଜାରରେ ବିକ୍ରୀ ହେବାରେ ଲାଗିବ ।

ଆଜି ମଣିଷ ନିଜର ଆସନ, ବ୍ୟସନ, ଚାଲି-ଚଳଣି-ସବୁଥିରେ'ଆଧୁନିକତାର' ର ପୁଟ ଦେବା ପାଇଁ ବ୍ୟଗ୍ର । ଆମ ସମାଜ ଓ ଦେଶ ପରି କେତେ ଗୋଟି ଦେଶ ଓ ସମାଜ ତ ଆଧୁନିକତାର ସ୍ୱାଦ ଚାଖିବା ପାଇଁ ଏତେ ତତ୍ପର ଯେ, ତାହା କହି ହେବ ନାହିଁ । ଆଧୁନିକତାର ଘୋଡ଼ା ଦୌଡ଼ରେ ସର୍ବଦା ଆମେ ଧାବମାନ । ମାତ୍ର ସତ୍ୟ, ସୌକ୍ଷ୍ୟ, ଭୂତ ଓ ଭଗବାନ ଭଳି ଆଧୁନିକତା ହେଲା ଏକ ଅମୂର୍ତ୍ତ ଉପଲବ୍‌ଧି । ପ୍ରତ୍ୟେକ ସମାଜରେ ଏହାର ଅର୍ଥ ଭିନ୍ନ ଭିନ୍ନ । ଆମ ସମାଜ ପାଇଁ ତାର ସଂଜ୍ଞା ହେଲା, ଯାହା ବିଦେଶୀ । ପ୍ରାପ୍ୟ ହେଲାପରେ କୌଣସି ବସ୍ତୁ ଯେମିତି ଆଉ ଅପ୍ରାପ୍ୟ ପଦବାଚ୍ୟ ରହେନା, କୌଣସି ବସ୍ତୁ ଦେଶୀ ବା ନିଜର ହେଲା ପରେ ଆଉ ବିଦେଶୀ ଅର୍ଥାତ 'ଆଧୁନିକ' ହୋଇ ରହିପାରେନା । ତେଣୁ ଆଧୁନିକତା ସର୍ବଦା ଆକାଶ କୁସୁମ କଇଁ ତୁଲ୍ୟ; ନିରନ୍ତର ତା ପଛରେ ଦୌଡ଼ିବା ଆମର ସାମାଜିକ ତଥା ଜାତୀୟ ଧର୍ମ ।

ଗତ କେତେ ଶହ ବର୍ଷର ଆମର ବିରତି-ରହିତ ଦୌଡ଼ର ଫଳ ସ୍ୱରପ, ଆମକୁ ଆଧୁନିକତା ତ ନୁହଁ, ସେହି ନାଁରେ ଭିନ୍ନ କେତେ ଗୋଟି ଦ୍ରବ୍ୟ ମିଳିଛି । ରାଜନୀତି ତନ୍ମଧ୍ୟରୁ ଅନ୍ୟତମ । ପର୍ବତ ଖୋଦନରୁ ପ୍ରାପ୍ତ ମୂଷିକକୁ ମଧ୍ୟ ଯେମିତି ବୃଥା ଛାଡ଼ି ହୁଏନା, ଆଧୁନିକତା ନାଁରେ ଲବ୍‌ଧ ରାଜନୀତିକୁ ମଧ୍ୟ ଆଧୁନିକତା ସ୍ଥାନରେ ସବୁଆଡ଼େ ବିନିଯୋଗ କରିବା ଜରୁରୀ ହୋଇ ପଡ଼େ । ଫଳରେ ସମାଜର ସବୁ ଅଙ୍ଗରେ, ଅଙ୍ଗଗୁଡ଼ିକର ଇଚ୍ଛା ନ ଥାଉ ପଛେ, ରାଜନୀତିର ଆଜି ଅବାଧ ଅନୁପ୍ରବେଶ । ତେଣୁ ଧର୍ମରେ, କର୍ମରେ, ବିଜ୍ଞାନରେ,

ଅଜ୍ଞାନରେ, କ୍ରୀଡ଼ାରେ, ବ୍ରୀଡ଼ାରେ, ଶିକ୍ଷାରେ, ଭିକ୍ଷାରେ, ପରିବାରରେ, ମରିବାରରେ - ସବୁଠି ରାଜନୀତିର ପ୍ରଭୁତ୍ୱ । ଯେଉଁଠି ରାଜନୀତି ନାହିଁ, ସେଠି ନୀତି ନାହିଁ । ଦିନେ ଯେମିତି ଆତ୍ମାର ଲକ୍ଷ୍ୟ ଥିଲା ମୋକ୍ଷ୍ୟ, ଆଜି ସେମିତି ପ୍ରତ୍ୟେକ ବ୍ୟକ୍ତି, ବସ୍ତୁ ତଥା ଘଟଣାର ଲକ୍ଷ୍ୟ ହେଲା ରାଜନୀତିକ ଅନ୍ତଃକରଣ ।

କହିବାର ଉଦ୍ଦେଶ୍ୟ ହେଲା, ଛତାର ଯେତେ ଗୁଡ଼ିଏ ମୁଖ ଥିଲେ ସୁଦ୍ଧା ଯଦି ତାର ରାଜନୀତିକ ଉପଯୋଗ ଏବଂ ସେଥିରେ ରାଜନୀତିର ଅନୁପ୍ରବେଶ ନାହିଁ, ତେବେ ତା'ପ୍ରତି ଆମେ ବିମୁଖ ହେବା ସ୍ୱାଭାବିକ । ଘୋର ବର୍ଷାରେ ଭିଜି ହେବ; ବିଚ୍ ରାସ୍ତାରେ ଇଲ୍ଲତ ଗଲେ ବଞ୍ଚି ହେବ, ଏପରି କି ନିଜଠାରୁ ଦରିଦ୍ର କୁଣିଆର ପ୍ରପୀଡ଼ନ ବି ବରଦାସ୍ତ କରିହେବ, ମାତ୍ର ଛତା ଯଦି ଅଣ-ରାଜନୀତିକ, ତାକୁ ନେଇ ଆମର କି ଲାଭ? ଅବଶ୍ୟ ରାଜନୀତିର ଏଭଳି ମହତ୍ତ୍ୱକୁ ସ୍ୱୀକାର କରି ଛତା ମଧ୍ୟ ତା'ର ଶରଣାଗତ ଏବଂ ଆମର (ଛତା କମ୍ପାନୀର) ସୌଭାଗ୍ୟ ଯେ, ରାଜନୀତି ତା (ଛତାର) ଶରଣ ସ୍ୱୀକାର ମଧ୍ୟ କରିଛି ।

ଛତାକୁ ରାଜନୀତିରେ ଶରଣ ମିଳିବା ପରେ ସେ ଏକ ରାଜନୈତିକ ଦଳର ପ୍ରତୀକ ରୂପେ ସମାଜରେ ଆଜି ସ୍ୱୀକୃତିପ୍ରାପ୍ତ । ଫଳରେ ଜାତି, ଧର୍ମ, ବର୍ଣ୍ଣ, ଶ୍ରେଣୀ, ଏପରିକି ରାଜନୈତିକ ଦଳ ନିର୍ବିଶେଷରେ ସମାଜର ଅର୍ଦ୍ଧେକ ଲୋକ ଏହି ଦଳର ସଭ୍ୟ ଭୁକ୍ତ । ବାକି ଅର୍ଦ୍ଧେକ ଛତା ଦଳର ସଦସ୍ୟତା ପାଇଁ ଶତତ ଚେଷ୍ଟିତ । ଯେଉଁ ଦୁଇ ଚାରିଜଣ ସଦସ୍ୟତା ନେଇ ନାହାନ୍ତି, କିମ୍ବା ସଦସ୍ୟତା ନିମିତ୍ତ ଆଗ୍ରହୀ ବି ନୁହନ୍ତି , ସେମାନେ ଅ-ସଭ୍ୟ ନାଁରେ ସାରା ଜଗତରେ କୁଖ୍ୟାତ । ଛତା ଦଳର ବିଶେଷ ବିଶେଷତ୍ୱ ଏହି ଯେ, ଏହି ନାଁରେ ସ୍ୱୀକୃତି ପ୍ରାପ୍ତ କୌଣସି ଦଳ ନାହାନ୍ତି, ମାତ୍ର ସମସ୍ତ ରାଜନୈତିକ ଦଳ ଭିତରେ ଏହାର ଚେର ମାଡ଼ିଛି । ଏହାର ଅଫିସ ନାହିଁ, ପୁଣି ସର୍ବତ୍ର ଏହାର ଅଫିସ; ଏହାର ନିୟମିତ ସଭ୍ୟ ନାହାନ୍ତି, କିନ୍ତୁ ସବୁଠି ଏହାର ସଭ୍ୟ । ଗତିମାନ ବାୟୁ ଓ ସମୟ ପରି ଏହା ଅଦୃଶ୍ୟ, ମାତ୍ର ସର୍ବତ୍ର ଏହା ବିଦ୍ୟମାନ, ସୁପରିବ୍ୟାପ୍ତ ଏହାର ପରିସୀମା । ଏହାର ଉଦ୍ଦେଶ୍ୟ ଅସୁବିଧାରୁ ସୁବିଧାକୁ, ବିପକ୍ଷରୁ ପକ୍ଷକୁ, ବଳିଦାନରୁ ଗାଳିଦାନକୁ, ତ୍ୟାଗରୁ ଭୋଗକୁ, ଆଦାନରୁ ପ୍ରଦାନକୁ ଏବଂ ସମତାରୁ କ୍ଷମତାକୁ ଦୌଡ଼ିବାର ପ୍ରକ୍ରିୟାକୁ ନିରନ୍ତର ଜାରି ରଖିବା, କ୍ଷମତାହୀନଠୁଁ ଦୂରେଇ ରହି କ୍ଷମତାସୀନ ପାଖକୁ ଲୋଟଣୀ ପାରା ସଦୃଶ ସର୍ବଦା ବାର୍ତ୍ତା ପହଞ୍ଚାଇବା ଓ ନିକଟତର ହେବା । ଛତା ଦଳର ଗୁରୁତ୍ୱ ଆଜି ଏତେ ବେଶୀ ଯେ, କେହି ଯଦି ପଚାରେ, ଦେଶରେ କେଉଁ ଦଳର ଶାସନ ବର୍ତ୍ତମାନ, ଆମେ ଉତ୍ତର ଦେବେ, ନା କଂସ ଦଳର ନା ବିଜାତି ଦଳର, ଶାସନ ଚାଲିଛି କେବଳ ଛତା ଦଳର ।

ଉପରୋକ୍ତ ଆଲୋଚନାରୁ ଆମେ ଜାଣିଲେ, ଛତାର ଆଜି କାଲି ଏତେ ବେଶୀ ମୁଖ ଯେ, ତାକୁ ଦୋମୁହାଁ ବୁଦ୍ଧିଜୀବୀ, ବା ଦଶାନନ ରାବଣ ସଙ୍ଗେ ତୁଳନା ନକରି ବହୁମୁଖୀ ଛତା ବୋଲି କହିଲେ ହିଁ ତାର ଉଚିତ ମୂଲ୍ୟାଙ୍କନ ହୋଇ ପାରିବ । ଶେଷରେ ଆମର ଅନୁରୋଧ ଜନତା ଛତା କିଣନ୍ତୁ, ମହଙ୍ଗା ଓ ଶଙ୍ଗା ଛତା କିଣନ୍ତୁ, ବାରମ୍ବାର ଛତା କିଣନ୍ତୁ, ନ ଖାଇ ନ ପିଇ କେବଳ ଛତା କିଣନ୍ତୁ । କାରଣ ଆଗାମୀ ଯୁଗ ହେଲା ଛତାର ଯୁଗ, ପୁଣି କ୍ଷମତା ଓ ବିଷମତାର ଯୁଗ, ସୁବିଧାବାଦର ଯୁଗ । ସମାଜ ଓ ଦେଶର ଯଦି କେବେ ମୁକ୍ତି ଅବଶ୍ୟମ୍ଭାବୀ, ତେବେ ତାହା କେବଳ ଜଣକର ହାତରେ ସମ୍ଭବ । ସେ ହେଲା ଛତା ଏବଂ କେବଳ ଛତା । (ଲେଖାରେ, ଦୃଶ୍ୟର ପ୍ରଭାବ ବା ଭିଜୁଏଲ ଏଫେକ୍ଟ ସୃଷ୍ଟି କରିବା କଷ୍ଟ । ତେଣୁ ଶେଷ ବାକ୍ୟଟିକୁ ପାଠକେ କେଉଁ ଦୂରଦର୍ଶନର ବିଜ୍ଞାପନକୁ ମନରେ ରଖି ପାଠ କଲେ ଆମ୍ଭେ କୃତଜ୍ଞ ହେବୁ ।) 

# ଦଶବର୍ଷ ପରେ

ଲୋକସଭାରେ ଆଜି ଶୀତକାଳୀନ ଅଧିବେଶନ ଓ ମାଡ଼ ଝଗଡ଼ା ମହାଉତ୍ସାହରେ ଆରମ୍ଭ ହେଲା । ଆଜିର ଅଧିବେଶନରେ ସଂଘର୍ଷବାଦୀ, ବିଜାତି ଓ କର୍ଦ୍ଦମାକ୍ତ ଦଳର ସଦସ୍ୟ ବ୍ୟତୀତ କେତେ ଜଣ ନିର୍ଦ୍ଦଳୀୟ ସଦସ୍ୟ ମଧ୍ୟ ଉପସ୍ଥିତ ଥିଲେ । ସେମାନଙ୍କ ଉପସ୍ଥିତି ବନ୍ଧାକୋବି ତରକାରୀରେ ଧନିଆଁ ପତ୍ର ସଦୃଶ ଗୃହର ଶୋଭା ବର୍ଦ୍ଧନ କରୁଥିଲା । ଠିକ ସେହିଭଳି ବହୁ ସଂଖ୍ୟକ ସଂସଦବାଦୀ ଦଳ ଆଗରେ ଅଳ୍ପସଂଖ୍ୟକ ବିରୋଧୀ ବିଜାତି ସଦସ୍ୟଙ୍କ ଉପସ୍ଥିତି ସୁଜି ଉପମାରେ ପାଚିଲା ଲଙ୍କା ତୁଲ୍ୟ ସ୍ୱାଦିଷ୍ଟ ମନେ ହେଉଥିଲା ।

ଦୂରଦର୍ଶନ 'ଟିମ'ର ଆଗମନ ଆଶାରେ କେତେଜଣ ମାନ୍ୟବର ସଦସ୍ୟ ନିଜର ଧୂଆ ଧୋତି କୁରୁତା ସବୁ ପିନ୍ଧି ସଭାଗୃହକୁ ଆସିଥିଲେ । ବିଚାରେ କୁରୁତା କ୍ରିଜ ନଷ୍ଟ ହେବା ଆଶଙ୍କାରେ ନିଜର ସମସ୍ତ ଆଗ୍ରହ ସତ୍ତ୍ୱେ ଗୃହର ମାଡ଼ ଝଗଡ଼ାରେ ସକ୍ରୀୟ ଅଂଶଗ୍ରହଣ କରି ପାରି ନଥିଲେ । ଅନ୍ୟ କେତେକ ସଦସ୍ୟ ନିଶ୍ଚିତ ଥିଲେ ଯେ ଦୂରଦର୍ଶନ କେମେରା ଟିମ ଆସିବାର ପ୍ରତିଶ୍ରୁତି ଦେଇ ଆସିବ ନାହିଁ ଏବଂ ଯଦି ବା ଆସିବ ଏକ ବିନଷ୍ଟ ପ୍ରାୟ କେମେରା ନେଇ ଆସିବ । ତେଣୁ ସେମାନେ ହୋଲି ଖେଳ ବାଲା କପଡ଼ା ପିନ୍ଧି ଆସିଥିଲେ ଏବଂ ଅନ୍ୟ ସଦସ୍ୟମାନଙ୍କ ସହ ହାତାହାତି ହେବାକୁ ସ୍ଥିର କରି ଆସିଥିଲେ । ସୁଖର କଥା ସଭାର କାର୍ଯ୍ୟ ସମାପ୍ତି ପର୍ଯ୍ୟନ୍ତ ସେମାନେ ହୁଏତ ପୁରା କଦଳିର ଅଧା ଛାଲି ଛଡ଼େଇଲା ଭଳି ହାତରୁ କୁରୁତାକୁ ଟେକାଟେକି କରୁଥିଲେ, ନୋହିଲେ ମାଡ଼ ଝଗଡ଼ାରେ ବ୍ୟସ୍ତ ଥିଲେ । ଗୃହର ଭାବମୂର୍ତ୍ତି ରକ୍ଷା କରିବାରେ ଏହା ବେଶ ସାହାଯ୍ୟ କଲା ।

କେତେକ ସଦସ୍ୟ 'ପାର୍ଲ୍ୟାମେଣ୍ଟରେ ସମୟ ନଷ୍ଟ ବ୍ୟତୀତ ଅଲଗା କ'ଣ ହୁଏ କି' ବୋଲି ମତ ଦେଇ ବାରରୁ ବାହାରୁ ନଥିଲେ । ମାତ୍ର ବାଚସ୍ପତିଙ୍କ ନିର୍ଦ୍ଦେଶ—ଅଧିବେଶନରେ ଅନୁପସ୍ଥିତ ସଦସ୍ୟଙ୍କୁ ଏକମାସ ପର୍ଯ୍ୟନ୍ତ କୌଣସି ସଭା ସମିତିରେ ମୁଖ୍ୟ ଅତିଥି ହେବାର ଅନୁମତି ମିଳିବ ନାହିଁ - ପାଇଲା ପରେ ଦୌଡ଼ି ଦୌଡ଼ି ଆସି ସଭାଗୃହରେ ପଶିଥିଲେ । ଆପଣ ଜାଣନ୍ତି, ଜଣେ ପାର୍ଲ୍ୟାମେଣ୍ଟ ସଦସ୍ୟଙ୍କ ପାଇଁ ଦୀର୍ଘ ଏକମାସ ପର୍ଯ୍ୟନ୍ତ କୌଣସି

ସଭାରେ ମୁଖ୍ୟ ଅତିଥିରୂପେ ଯୋଗ ନ ଦେବା କେତେ କଷ୍ଟ କଥା । ଏକଥା ହୃଦୟଙ୍ଗମ କରି ମାନନୀୟ ସଦସ୍ୟଗଣ ଏତେ ବେଗରେ ଦୌଡ଼ିଥିଲେ ଯେ, ତାଙ୍କ ଚପଲ ଛିଣ୍ଡିବା ସ୍ୱାଭାବିକ । ଛିଣ୍ଡା ଚପଲକୁ ସେମାନେ ନିଜ ମତ ସାବ୍ୟସ୍ତ କରିବାରେ ବିନିଯୋଗ କରି, ଉଭୟ ମତ ଓ ଚପଲକୁ ଅକାମି ହେବାରୁ ଅଳ୍ପକେ ରକ୍ଷା କଲେ ।

ଦଳେ ସଦସ୍ୟ ଗତରାତିରେ ପାର୍ଲ୍ୟାମେଣ୍ଟ ପାଇଁ ବକ୍ତବ୍ୟ ପ୍ରସ୍ତୁତ କରିବା ଯୋଗୁଁ ଶୋଇ ପାରି ନ ଥିଲେ । ଫଳରେ ଗୃହର କାର୍ଯ୍ୟ ଆରମ୍ଭ ହୁଅନ୍ତେ ସେମାନେ ନିଘୋଡ଼ ନିଦରେ ଶୋଇଗଲେ । ନିଦ୍ରାଗତ ସଦସ୍ୟଙ୍କ ମଧ୍ୟରୁ ଜଣେ ବାଉଳାରେ ସ୍ୱଦଳର ଜଣକୁ ବିରୋଧୀ ମନେକରି ଅଣ - ପାର୍ଲ୍ୟାମେଣ୍ଟାରି ଭାଷାରେ ଗାଳି ଦେବାର ଶୁଣାଗଲା । ଗାଳି ଖାଇଥିବା ସଦସ୍ୟ ପ୍ରତିବଦଳରେ ମାନନୀୟ ସଦସ୍ୟଙ୍କ ଉପରେ ପାନ ଛେପ ପକାଇ ଦେଲେ । କଲମର ସ୍ୟାହି ବି ଢ଼ାଳି ଦେଇଥାନ୍ତେ, ମାତ୍ର ପାଖରେ କଲମ ନ ଥିଲା । ତାଙ୍କ ବ୍ୟକ୍ତିଗତ ସଚିବଙ୍କଠାରୁ ପ୍ରକାଶ ଯେ ବାରମ୍ବାର ଦସ୍ତଖତ ଦେବାକୁ ପଡୁଥିବାରୁ ସଦସ୍ୟ ମହାଶୟ ପାଖରେ କଲମ ରଖି ନ ଥିଲେ ।

ଗୃହରେ ଆଜି ପାର୍ଲ୍ୟାମେଣ୍ଟ ସଦସ୍ୟଙ୍କ ମାସିକ ଦକ୍ଷିଣା ବୃଦ୍ଧି ବିଷୟକ ପ୍ରସ୍ତାବ ସର୍ବସମ୍ମତ ଭାବେ ଗୃହୀତ ହେଲା । ଗତ ଏକ ବର୍ଷ ମଧ୍ୟରେ ଏହା ଏକମାତ୍ର ପ୍ରସ୍ତାବ ଯାହାକୁ କୌଣସି ଦଳର ସଦସ୍ୟ ବିରୋଧ କରି ନାହାନ୍ତି । ସର୍ବସମ୍ମତି କ୍ରମେ ପ୍ରସ୍ତାବ ଗୃହୀତ ହେବାର ଏହି ସୁସ୍ଥ ପରମ୍ପରା, ଯାହାକି ଦୁଇବର୍ଷ ତଳେ ସଦସ୍ୟମାନଙ୍କର ସ୍ତ୍ରୀ ନାମରେ ପେଟ୍ରୋଲ ପମ୍ପ କିମ୍ବା ବିଦେଶୀ ମଦ ଦୋକାନ, ଅଥବା ଉଭୟ ଠେକା ନେବା ବିଷୟକ ପ୍ରସ୍ତାବ ଗୃହୀତ ହେବା ଦିନରୁ ଆରମ୍ଭ ହୋଇଛି, ଦେଶର ଗଣ ତାନ୍ତ୍ରିକ ଇତିହାସରେ ଏକ ନୂଆ ଅଧ୍ୟାୟ ଯୋଡ଼ି ଦେଇଛି । ସେଦିନ ଆଉ ବେଶି ଦୂର ନୁହେଁ, ଯେଉଁଦିନ ପାର୍ଲ୍ୟାମେଣ୍ଟରେ ବିରୋଧୀ ଦଳ ଥିବେ, ପାଖରେ ଅନାସ୍ଥା ପ୍ରସ୍ତାବ ଥିବ, ହେଲେ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ ଚେମ୍ବରରେ ଦଦରା ବିଲଡ଼ିଂର ଯୋଡ଼ଦିଆ ବିଲ ପାସ ହେଲା ପରି, ପ୍ରସ୍ତାବମାନ ସର୍ବସମ୍ମତି କ୍ରମେ ଖଟାଖଟ ପାସ ହୋଇ ବାହାରୁଥିବ ।

ଦକ୍ଷିଣା ପ୍ରସ୍ତାବକୁ ସଂଘର୍ଷବାଦୀଦଳ ନିଜ ସମର୍ଥନ ଦେଲାବେଳେ ସରକାରକୁ ସତର୍କ କରି କହିଲେ ଯେ, ଆସନ୍ତା ବର୍ଷ ଯଦି ପୁଣି ଦକ୍ଷିଣା ବୃଦ୍ଧି ପାଇଁ ପ୍ରସ୍ତାବ ଆସେ, ସେମାନେ ତାର ବିରୋଧ କରିବେ । ଦେଶର ନବେ ପ୍ରତିଶତ ଜନତା ଯେଉଁଠି ଦାରିଦ୍ର୍ୟର ସୀମାରେଖା ତଳେ, ସେଠି ପାର୍ଲ୍ୟାମେଣ୍ଟ ସଦସ୍ୟଙ୍କ ପ୍ରତିବର୍ଷ ଦକ୍ଷିଣା ବୃଦ୍ଧି ଶୋଭା ପାଏ ନା; ଦୁଇ ବର୍ଷକୁ ଥରେ ହେଲେ ଚଳିବ । କର୍ଦ୍ଦମାକ୍ତ ଦଳର ଜଣେ ସଦସ୍ୟ ଜନ ପ୍ରତିନିଧିଙ୍କ ଦକ୍ଷିଣାକୁ ଜନତାର

ଦକ୍ଷିଣା ସଙ୍ଗେ ତୁଳନା କରି ପ୍ରସ୍ତାବଟିକୁ ଏକ ବୈପ୍ଳବିକ ପଦକ୍ଷେପ ବୋଲି ଉଲ୍ଲେଖ କଲେ । ସଂସଦବାଦୀ ସଭ୍ୟ ଶ୍ରୀ ଲହୁଲୁହାଣ ସିଂ କହିଲେ, ଦକ୍ଷିଣାବୃଦ୍ଧି ହେବା ନ ହେବାରେ ତାଙ୍କର କିଛି ପରବାୟ ନାହିଁ । କାରଣ, ତାଙ୍କ ଗୋଟାଏ ଦିନର ଖର୍ଚ୍ଚ ପାଇଁ ସୁଦ୍ଧା ମିଳୁଥିବା ମାସିକିଆ ଦକ୍ଷିଣା ଯଥେଷ୍ଟ ନୁହେଁ । ହଁ, ଏହାକୁ ମାସିକିଆ ଦରମା ନ କହି ଦକ୍ଷିଣା କୁହାଯାଉଥିବାରୁ ସେ ଖୁସି । କାରଣ, ମାନନୀୟ ସଦସ୍ୟଙ୍କ ଦରମାର ସ୍ରୋତ ଏକମୁଖୀ ହୋଇ ନ ପାରେ । ସଂସଦୀୟ ଗଣତନ୍ତ୍ରରେ ଆମର ଆସ୍ଥା ରଖିବା ନିମିତ୍ତ ଦରମାର ସ୍ରୋତ ବହୁମୁଖୀ ହେବା ବାଞ୍ଛନୀୟ । ଦକ୍ଷିଣା ତହିଁରୁ ଗୋଟାଏ । ଶ୍ରୀ ସିଂଙ୍କ ମତକୁ ସମର୍ଥନ କରି ସଂଘର୍ଷବାଦୀ ଦଳର ଶ୍ରୀ ଦାରୁଣ ମିତ୍ର କହିଲେ, ମାନନୀୟ ସଦସ୍ୟଙ୍କ ଆୟର ସ୍ରୋତ ବହୁମୁଖୀ ହେବାରେ ତାଙ୍କର କୌଣସି ଆପତ୍ତି ନାହିଁ, ମାତ୍ର ତାହା କେତେ ମାତ୍ରାରେ ବହୁମୁଖୀ ହେବ ସେ ନେଇ ସରକାରକୁ ଏକ ପରିସୀମା ନିର୍ଦ୍ଧାରଣ କରିବାକୁ ପଡ଼ିବ ।

ଆତ୍ମହତ୍ୟାକୁ ସମ୍ବିଧାନରେ ମୌଳିକ ଅଧିକାର ଦିଆଯିବା ସଂପର୍କରେ ଏକ ବେସରକାରୀ ପ୍ରସ୍ତାବ ଆଜି ଲୋକସଭାରେ କାଟ ଖାଇଲା । ପ୍ରସ୍ତାବକୁ ଆଗତ କରି ବିଜାତି ଦଳର ନେତା ଶ୍ରୀ ହୁଲସ୍ଥୁଳ ମିଶ୍ର କହିଲେ, ଆତ୍ମହତ୍ୟାକୁ ଅପରାଧ ଶ୍ରେଣୀଭୁକ୍ତ କରାଯିବା ହେଉଛି ଜନସଂଖ୍ୟା ବୃଦ୍ଧିର ଏକ ମୁଖ୍ୟ କାରଣ । ସମାଜର ଦରିଦ୍ର ଏବଂ ସମାଜ ନିମନ୍ତେ ଅଦରକାରୀ ଲୋକଙ୍କର ସ୍ୱେଚ୍ଛାକୃତ ମୃତ୍ୟୁ ପାଇଁ ଇଚ୍ଛା ଥିବା ସତ୍ତ୍ୱେ, ସେମାନେ ଆତ୍ମହତ୍ୟା କରି ପାରୁ ନାହାନ୍ତି, କାରଣ ଆତ୍ମହତ୍ୟାକୁ କୌଣସି ସାମ୍ବିଧାନିକ ପ୍ରୋତ୍ସାହନ ଦିଆଯାଉ ନାହିଁ । ଆମେ ନୂଆ ବଜାର ବ୍ୟବସ୍ଥା, ସରକାରୀ ପ୍ରତିଷ୍ଠାନ ଗୁଡ଼ିକର ଘରୋଇକରଣ ଏବଂ ବହୁରାଷ୍ଟ୍ରୀୟ କମ୍ପାନୀ ହାତରେ ଦେଶକୁ ବନ୍ଧକ ଦେଲାବେଳେ ସ୍ପଷ୍ଟ କରି ସାରିଛୁ ଯେ, ଏଣିକି ପ୍ରତିଯୋଗୀ ମନୋଭାବ ସଂପନ୍ନ ବ୍ୟକ୍ତି ହିଁ ସମାଜରେ ତିଷ୍ଠି ପାରିବେ । ତେବେ ଅଣ—ପ୍ରତିଯୋଗୀ ଲୋକ ଯିବେ କେଉଁଠିକି? ସେମାନଂକୁ ଭୋକରେ ମରିବାର ଅଧିକାର ନ ଦେଇ ଆତ୍ମହତ୍ୟା ନିମନ୍ତେ ମୌଳିକ ଅଧିକାର ଦେବା କ'ଣ ଶତେ ଗୁଣ ଭଲ ନୁହେଁ? ସାମ୍ବିଧାନିକ ପ୍ରୋତ୍ସାହନ ଯୋଗୁଁ ଆତ୍ମହତ୍ୟା ଜନସଂଖ୍ୟା ନିୟନ୍ତ୍ରଣ କରିବା ସଂଗେ ସଂଗେ ଅଣପ୍ରତିଯୋଗୀ ଆତ୍ମଘାତୀ ଲୋକ ମନରୁ ଅପରାଧୀ ମନୋଭାବକୁ ଦୂର କରିବ । ଏହା କେତେ ବିଡ଼ମ୍ବନାର ବିଷୟ ଯେ, ସରକାର ଅଣ - ପ୍ରତିଯୋଗୀ ଅଦରକାରୀ ଲୋକ ମନରୁ ଉଭୟ ବଞ୍ଚିବାର ଓ ମରିବାର ଅଧିକାର ଛଡ଼େଇ ନେଇଛି । ଆମେ କହୁ ନାହୁଁ ଯେ, ସରକାର ସେମାନଙ୍କ ହାତରେ ବଞ୍ଚିବାର ଅଧିକାର ଦେଉ, ଯାହାକି ଛୋଟ ଛୁଆ ହାତରେ ଏକେ - ଛପନ ବନ୍ଧୁକ ଭଳି ବିପଦ ଜନକ ସିଦ୍ଧ ହେବ । ଅତିକମରେ ତାଙ୍କୁ ମରିବାର ଅଧିକାର ଦିଆଯାଉ; ବିଚାରେ

ଏକ ଅଧିକାର ବୋଧ ଥାଇ ମରନ୍ତୁ ।

ସ୍ୱାଧୀନ ସଭ୍ୟ ଶ୍ରୀ ରାମରାବଣ ପୂଜାରୀ କହିଲେ । ବୀର ଭୋଗ୍ୟା ବସୁନ୍ଧରା; ଦୁର୍ବଳର ଏଠି ସ୍ଥାନ ନାହିଁ । ସେ ଯଦି ମରିବାକୁ ଚାହେଁ, ତାକୁ ମରିଦିଅ । କେହି ମନା କର ନାହିଁ ।

ପ୍ରସ୍ତାବର ବିରୋଧ କରି ସଂଘର୍ଷବାଦୀ ଦଳର ଶ୍ରୀମତୀ କରୁଣାରାଣୀ କହିଲେ, ଜୀବନ ସଂଘର୍ଷରେ ପରାଜିତ ବ୍ୟକ୍ତି ନିମନ୍ତେ ଆତ୍ମହତ୍ୟାର ଅଧିକାର ଭଳି ସୁଖଦମୃତ୍ୟୁ ପୁରସ୍କାର ସଦୃଶ । ପରାଜିତ ଯଦି ପୁରସ୍କାର ପାଏ, ପରାଜୟର ଗ୍ଳାନି ବହନ ନ କରେ, ବିଜୟୀ ମନରେ ଅମୂର୍ତ୍ତ ଆତ୍ମତୃପ୍ତି ଉତ୍ପନ୍ନ ହେବ କେତେବେଳେ? ଆତ୍ମତୃପ୍ତି ଅଭାବରେ ତାର ପ୍ରତିଯୋଗୀ ମନୋଭାବ ଯେ କ୍ଷୁର୍ଣ୍ଣ ହେବ ଏଥିରେ ଦ୍ୱିମତ ହେବାର ନାହିଁ । ଯଦି ପ୍ରତିଯୋଗୀ ମନୋଭାବ ସଂପନ୍ନ ବ୍ୟକ୍ତିର ଉତ୍ପାଦନ ନୂଆ ଆର୍ଥିକ ନୀତିର ଏକ ଲକ୍ଷ୍ୟ, ଏଭଳି ବ୍ୟକ୍ତିଙ୍କୁ ଧାରଣ କରିବା ମଧ୍ୟ ତାର ଏକ ଲକ୍ଷ୍ୟ ହେବା ବାଞ୍ଛନୀୟ । ଉକ୍ତ ଲକ୍ଷ୍ୟ ପୂରଣ ନିମନ୍ତେ ଅଣ-ପ୍ରତିଯୋଗୀଙ୍କୁ ଆତ୍ମହତ୍ୟା କରି ନୁହେଁ, ଦୁଃଖରେ, ଶୋକରେ, ଆତ୍ମଗ୍ଳାନିରେ ତିଳ ତିଳ ହୋଇ ମରିବା ଉଚିତ । ତାଙ୍କ ଦଳର ଅନ୍ୟତମ ନେତା ଶ୍ରୀ ମର୍କଟ ଚଳୈୟା କହିଲେ, ଅନ୍ୟ ସଦସ୍ୟଙ୍କ ପରି ତାତ୍ତ୍ୱିକ ଆଲୋଚନାର ସେ ଘୋର ବିରୋଧୀ । ସ୍ପଷ୍ଟ ଶବ୍ଦରେ କହିଲେ, ସେ ପ୍ରସ୍ତାବର ବିରୋଧ କରନ୍ତି କାରଣ ତାଙ୍କ ଦଳ ଏହାକୁ ବିରୋଧ କରୁଛି ଏବଂ ତାଙ୍କ ଦଳ ବିରୋଧ କରେ କାରଣ ଏହା ବିରୋଧୀ ବିଜାତି ଦଳର ପ୍ରସ୍ତାବ । ନୋହିଲେ ଅଣ-ପ୍ରତିଯୋଗୀ ଅପରାଧବୋଧ ଥାଇ ମରୁ, କି ଅଧିକାର-ବୋଧ ଥାଇ ମରୁ ତାଙ୍କର କିଛି କହିବାର ନାହିଁ ।

କର୍ଦ୍ଧମାକ୍ତ ଦଳର ସଦସ୍ୟ ଶ୍ରୀ ଗଙ୍କର ସିଂ ଦେଶର ଅନେକ ସ୍ଥାନରେ ହୋଇଥିବା ଭୂମିକମ୍ପ ପାଇଁ ସରକାରଙ୍କୁ ଦୋଷୀ ସାବ୍ୟସ୍ତ କରି କହିଲେ, ସରକାର ନୈତିକ ଦୃଷ୍ଟିରୁ ପ୍ରାକୃତିକ ବିପତ୍ତି ପାଇଁ ନିଜକୁ ଦାୟୀ ମନେ କରି ଇସ୍ତଫା ଦେବା ଉଚିତ । ଶାସକ ଦଳର ଜଣେ ସଦସ୍ୟ ପ୍ରତ୍ୟୁତ୍ତରରେ କହିଲେ, ଗତବର୍ଷ କର୍ଦ୍ଧମାକ୍ତ ଦଳର ଶାସନ ସମୟରେ ଯେଉଁ ବନ୍ୟା ହେଲା, ସେତେବେଳେ ସେମାନେ କାହିଁକି ଇସ୍ତଫା ଦେଲେ ନାହିଁ? 'ଯଦି ପ୍ରବଳ ବନ୍ୟା ସତ୍ତ୍ୱେ କର୍ଦ୍ଧମାକ୍ତ ଦଳ ବୋହିଗଲା ନାହିଁ, ସାମାନ୍ୟ ଭୂମିକମ୍ପରେ ଆମ ସରକାର ବା କାହିଁକି ଉଜୁଡ଼ି ପଡ଼ିବ? ଆମେ ଅଲବତ ରହିବୁ, ତୁମେ ଯାହା ପାରୁଛ କର ।' ଉତ୍ତରରେ କର୍ଦ୍ଧମାକ୍ତ ନେତା ମତ ଦେଲେ, ବିରୋଧୀ ଦଳ ହିସାବରେ ତାଙ୍କର ପ୍ରତ୍ୟେକ ବିପତ୍ତି ପରେ ସରକାରଠାରୁ ଇସ୍ତଫା ଦାବୀ କରିବା କଥା ଆଉ ସେ ନିଜ କର୍ତ୍ତବ୍ୟ ପାଳନ କରିଛନ୍ତି । ତାଙ୍କ ନିଜ ସରକାର 'ସେତେବେଳେ' କାହିଁକି ଇସ୍ତଫା ଦେଲା ନାହିଁ, ତାର କାରଣ

ଜଣାଇବା ତାଙ୍କର କର୍ତ୍ତବ୍ୟ ନୁହେଁ । ଯୁକ୍ତିତର୍କକୁ ସମାପ୍ତ କରି ବାଚସ୍ପତି କହିଲେ, ସରକାରଠାରୁ ପ୍ରତି କଥାରେ ଇସ୍ତଫା ଦାବୀ କରିବା ଯେମିତି ବିରୋଧୀ ଦଳର କର୍ତ୍ତବ୍ୟ, କୌଣସି କଥାରେ ବିଚଳିତ ନ ହୋଇ ଇସ୍ତଫା ନ ଦେବା ସେମିତି ଶାସକ ଦଳର କର୍ତ୍ତବ୍ୟ । ତେଣୁ ଇସ୍ତଫା ଦାବି କରି ବିରୋଧୀ ଦଳ ଖୁସ ରହୁ ଏବଂ କ୍ଷମତାକୁ ଜାବୁଡ଼ି ଧରି ଶାସକ ଦଳ ଖୁସ ରହୁ । ମୋର ବିଶ୍ୱାସ ଏଥିରେ ହିଁ ସଂସଦୀୟ ଗଣତନ୍ତ୍ରର ଭାବମୂର୍ତ୍ତି ରକ୍ଷା ପାଇବ । ବାଚସ୍ପତିଙ୍କ ଉକ୍ତିରେ ସଂଶୋଧନ କରି ବିଜାତି ଦଳର ଶ୍ରୀ ମନ ବିକଳ ଶର୍ମା କହିଲେ, 'ନା ନା, ସଂସଦୀୟ ଗଣତନ୍ତ୍ରର ଭାବମୂର୍ତ୍ତି ରକ୍ଷା ନିମନ୍ତେ, ବିରୋଧୀ ଦଳର ଇସ୍ତଫା ଦାବୀ ଏବଂ ଶାସକ ଦଳର କ୍ଷମତା ଜାବୁଡ଼ା ସାଙ୍ଗରେ ଦେଶରେ ନିୟମିତ ବନ୍ୟା, ବାତ୍ୟା ଓ ଭୂମିକମ୍ପ, ଅଗ୍ନିକାଣ୍ଡ ମଧ୍ୟ ହେବା ଅତି ବାଞ୍ଛନୀୟ ।'

ବେଙ୍କ ଟଙ୍କା ହେରଫେର ପ୍ରସଙ୍ଗକୁ ଉତ୍‌ଥାପନ କରି ଶାସକ ଦଳର ଶ୍ରୀ ପ୍ରଚଣ୍ଡ ଯାଦବ କହିଲେ, ଶାସକ ଦଳ ଶହ ଶହ କେଶରେ ଟଙ୍କା ହେରଫେର କରିଥିବା ସତ୍ତ୍ୱେ, ବିରୋଧୀ ଦଳ ବେଙ୍କ ଟଙ୍କା ହେରଫେର ପ୍ରସଙ୍ଗକୁ କାହିଁକି ଜାବୁଡ଼ି ଧରିଛି, ତାହା ସେ ବୁଝି ପାରୁ ନାହାନ୍ତି । ଉତ୍ତରରେ ବିଜାତି ସଭ୍ୟ କହିଲେ, 'ଆପଣ କୋଉ କଥାଟା ବୁଝିପାରନ୍ତି କି?' ଏହାର ଜବାବରେ ଶ୍ରୀ ଯାଦବ କହିଲେ, 'ବୁଝି ପାରୁଥିଲେ ମନ୍ତ୍ରୀ ହୋଇ ନ ଥାନ୍ତି? ପାଞ୍ଚ ପାଞ୍ଚଥର ନିର୍ବାଚନ ଜିଣିଲା ପରେ ସୁଦ୍ଧା ସାଧାରଣ ସଦସ୍ୟ ହୋଇ ରହିଥାନ୍ତି?' ଶ୍ରୀ ଯାଦବଙ୍କ କରୁଣ କାହାଣୀ ଶୁଣି ଗୃହର କେତେକ ସଦସ୍ୟ 'ଆହା' ଆଉ କେତେକ ସଦସ୍ୟ 'ଚୁ...ଚୁ...ଚୁ' କଲେ । ଦୁଃଖରେ ମ୍ରିୟମାନ ଶ୍ରୀ ଯାଦବ କହିଲେ, ମନ୍ତ୍ରୀ ହେବା ପାଇଁ ଅନ୍ୟଠାରୁ ସେ ବୁଦ୍ଧି ଲୋଡ଼ନ୍ତି, 'ଆହା' 'ଚୁ...ଚୁ' ନୁହେଁ । ଶ୍ରୀ ଯାଦବଙ୍କ ଦୃଢ଼ୋକ୍ତି ଶୁଣି 'ଆହା' କରିଥିବା ସଦସ୍ୟ ନିଜ ଭୁଲ ସ୍ୱୀକାର କରି ଚୁପ ରହିଲେ ଏବଂ 'ଚୁ...ଚୁ' ସଦସ୍ୟ ସ୍ପଷ୍ଟୀକରଣ ଦେଇ କହିଲେ, ନିଜ ମୁହଁ ଭିତରେ ଅଲଝି ଥିବା 'ପାନ ପରାଗ'ର ଅବଶେଷକୁ ଦାନ୍ତ ସନ୍ଧିରୁ ବାହାର କରିବା ପାଇଁ ସେମାନେ 'ଚୁ...ଚୁ' କରିଛନ୍ତି, ଶ୍ରୀ ଯାଦବଙ୍କୁ ମନ୍ତ୍ରୀତ୍ୱ ଦେବା ପାଇଁ ନୁହେଁ । ଆଲୋଚନା ଅସମାପ୍ତ ରହିଲା ।

ଦେଶର ଶିକ୍ଷା ନୀତି ଉପରେ ଆଲୋଚନା ଆରମ୍ଭ ନ ହେଉଣୁ, ବିରୋଧୀ ଦଳର ସମସ୍ତ ସଭ୍ୟ ଗୃହରୁ ୱାକ୍ ଆଉଟ କରି ଚାଲିଗଲେ । ସେମାନଙ୍କ ମତରେ ଭାରତ-ଜିମ୍ବାୱେ କ୍ରିକେଟ ଖେଳ ଚାଲିଥିବା ବେଳେ ବାଚସ୍ପତିଙ୍କର ଶିକ୍ଷା ନୀତିକୁ ନେଇ ଆଲୋଚନା କରେଇବାର କୌଣସି ଅଧିକାର ନାହିଁ । ପାର୍ଲ୍ୟାମେଣ୍ଟ ସମାଚାର ଲେଖାଯିବା ପର୍ଯ୍ୟନ୍ତ ବିରୋଧୀ ଦଳର ୱାକ ଆଉଟ ଓ କ୍ରିକେଟ ଖେଳ ଅବ୍ୟାହତ ଥିଲା । ■■■

# ମୂଲ

ସରକାରୀ ଡାକ୍ତରଖାନାର ଅପରେସନ କକ୍ଷ ଆଗରେ ବାରଣ୍ଡା ତ ନୁହେଁ ବାରଣ୍ଡା ଭଳି ଟିକିଏ ଖୋଲା ଯାଗା । ନିଜ ସୁବିଧା ପାଇଁ ତାକୁ ଏଠାରେ ବାରଣ୍ଡା କହିଲେ ବି ବିଶେଷ ଭୁଲ ହେବ ନାହିଁ । ଗୋଟାଏ ପଟେ ଅପରେସନ କକ୍ଷ, ଆଗକୁ ଖୋଲା । ଆମନା ସାମନା ଦୁଇଟି କାଛ, ଗୋଟାଏ ପୁରୁଷ ୱାର୍ଡର, ଅନ୍ୟଟି ସ୍ତ୍ରୀ । ଦୁଇକାଛରେ ପିଟା ହୋଇଛି ରୋଗୀ ଏବଂ ରୋଗୀଙ୍କ ଅନୁପସ୍ଥିତିରେ ଶୁଶ୍ରୂଷାକାରୀଙ୍କ ବସିବା ଲାଗି ଦୁଇଟି ଲମ୍ବା କାଠ ପଟା । କାଛ ଉପରେ ବାରଲାଇଟଟିଏ । ମକ୍ରାଜାଲ, ଖୋଳ ଭିତରେ ଅସଂଖ୍ୟ ପତଙ୍ଗଙ୍କ ଶବ ଓ ବାହାରେ ନାନା ପୋକଙ୍କର ପ୍ରତିବନ୍ଧକ ସତ୍ତ୍ୱେ ବାରଲାଇଟରୁ ଆଲୁଅ ବିଛେଇ ହୋଇ ପଡ଼ିଛି ବାରଣ୍ଡା ଉପରେ । ଆଲୁଅ ରାତିରେ ଆଉ ଦିନରେ ବି । ବାରଲାଇଟଟି ଡାକ୍ତରଖାନାର ନିଜସ୍ୱ ବୋଲି ଯଦିଓ କାହିଁ କେଉଁଠି ଲେଖାହୋଇନି, ଅନ୍ୟ କାହାରି ନାମ ତା ଉପରେ ନଥିବାରୁ ସମସ୍ତେ ନିଷ୍ଟିତ ଯେ ତାହା ଡାକ୍ତରଖାନାର । ବାରକୁ ଟିକିଏ ଛାଡ଼ି ଛାତ ଉପରୁ ଝୁଲୁଥିବା ଏକମାତ୍ର ସିଲିଂ ପଙ୍ଖାର ତିନୋଟି ଯାକ ଡେଣାରେ ତିନିଗୋଟି ବିଭିନ୍ନ ଭାଷାରେ ଦାତାର ନାମ - ଶଙ୍କର ଲାଲ, ଗୁଣ୍ଡି ଜର୍ଦ୍ଦାବାଲା ।

କେବେ କୌଣସି ଏକ ରୋଗୀ ଜୀବନଧରି ଅପରେସନ କକ୍ଷରୁ ଫେରିବା ବେଳେ ତାଙ୍କୁ ଅପେକ୍ଷା କରୁଥିବା ଶୁଶ୍ରୂଷାକାରୀ ଜଣକ ହୁଏତ ଏହି ଶଙ୍କରଲାଲ, ଗୁଣ୍ଡି ଜର୍ଦ୍ଦାବାଲା । ଅପରେସନ ଯଦି ରାତିବେଳା ହୋଇଥାନ୍ତା ଏବଂ ଶଙ୍କର ଲାଲ ଅନ୍ଧାରକଣା ହୋଇଥାନ୍ତେ ତେବେ ନିଷ୍ଚୟ ସାଙ୍ଗରେ ବାରଲାଇଟିଏ ବି ଦାନରେ ମିଳିଥାନ୍ତା । ଫଳରେ ଭବିଷ୍ୟତରେ ତାଙ୍କ ପରି ଅନ୍ଧାରକଣା ଶୁଶ୍ରୂଷାକାରୀଙ୍କୁ ଯଥେଷ୍ଟ ଆଲୁଅ ମିଳିଥାନ୍ତା ଓ ଶଙ୍କରଲାଲକୁ ଅଧିକ କେତୋଟି ଭାଷାରେ ନିଜର ନାମ ଲେଖିବାକୁ ଯାଗା; ବାରଣ୍ଡାରେ ଅହୋରାତ୍ର ବସିବାକୁ ଆସୁଥିବା ଲୋକେ ତାଙ୍କର ବାଃ ବାଃ କରୁଥାନ୍ତେ ଏବଂ ସୁବିଧା ଦେଖି ତାଙ୍କ ଦୋକାନରୁ ଗୁଣ୍ଡିଜର୍ଦ୍ଦା ବି କିଣୁଥାନ୍ତେ । ଜନସେବା ଓ 'କାରୋବାର' ମଧ୍ୟରେ କି ଅପୂର୍ବ ସମନ୍ୱୟ ।

ସଂଧ୍ୟା ନ ହେଉଣୁ କାଠ ପଟା ଦୁଇଟିରୁ ଗୋଟାକରେ ପୁରୁଣା ଚାଦରଟିଏ ପକାଇ ମୁଁ ଜାଗା ଆବୋରିଲି । ରାତିରେ ଶୋଇ ହେବ । କାଲିଟିକେ ଡେରି ହୋଇଗଲା ବୋଲି ଜାଗା ମିଳିଲାନି । ଚାଦରଟିଏ ତଳେ ବିଛେଇ ଶୋଇବାକୁ ପଡ଼ିଲା । ଶୋଇବାଟା ହେଲେ ଚଳିଯିବ, କିନ୍ତୁ ଫୁଲପେଣ୍ଟ ପିନ୍ଧି ତଳେ ବସି ଖାଇବା ମୁସ୍କିଲ । ଫୁଲପେଣ୍ଟ ପିନ୍ଧି ତଳେ ବସିବାରେ ସାମାଜିକ ସମସ୍ୟା ଯେତେ ଶାରୀରିକ ସମସ୍ୟା ତତୋଧିକ । ସେଥିପାଇଁ ବୋଧେ ଫୁଲପେଣ୍ଟ ଆଗ ଓ ଖାଇବା ଟେବୁଲ ତା ପଛେ ପଛେ ପଶିଥିବ ସମାଜକୁ । ଗତକାଲି ତେଣୁ ତଳେ ବସିଖାଇବା ବେଳେ ହିଁ ପଣ କରିଥିଲି, ଆଜି ଯେମିତି ହେଲେ ବେଞ୍ଚ ଗୋଟାଏରେ ଯାଗା ଆବୋରିବି । କିଛି ନ ହେଲେ ବେଞ୍ଚରେ ବସି ଗୋଡ଼ ତଳକୁ ଲମ୍ବାଇ ଖାଇ ତ ପାରିବି । ତାଛଡ଼ା ବେଞ୍ଚରେ ଶୋଇଲେ ପିମ୍ପୁଡ଼ି, ବେଙ୍ଗ ଆଦିଙ୍କ ଗନ୍ତବ୍ୟ ପଥରେ ରୁକାବଟ ହେବାର ବି କମ ଆଶଙ୍କା ।

ଜାଣି ଜାଣି ପୁରୁଣା ଚାଦରଟି ହିଁ ବିଛେଇ ଥିଲି । ଗତକାଲି ଜଣଙ୍କର ମସିଣା ଚୋରୀ ହୋଇଗଲା । ବିଚରା ଅଧରାତିରେ ଉଠି ପରିସ୍ରା କରିବାକୁ ଯାଇ ଫେରିଲା ପରେ ଆବିଷ୍କାର କଲେ ଯେ, ତାଙ୍କ ମସିଣାକୁ ନେଇ କିଏ ଚଂପଟ । ପୁରୁଣା ଚପଲ ହଳକ ପିନ୍ଧି ଯାଇଥିଲେ, ନୋହିଲେ ମସିଣା ସାଙ୍ଗରେ ସେତକ ବି ଯାଇଥାନ୍ତା । ତନୁକୁ ଧରି ଡାକ୍ତରଖାନା ଆସିବାବେଳେ ବାପା ମୋତେ ଏଭଳି ଚୋରି ସଂପର୍କରେ ତାଗିଦା କରିଥିଲେ । ତା ନହେଲେ ଯାଗା ଆବୋରିବା ପାଇଁ ଯଦି ଭଲ ଚାଦରଟିଏ ବିଛେଇଥାନ୍ତି, କିଛି ବେଳ ପରେ ଫେରି ଜାଣିଥାନ୍ତି ଯେ, ଚାଦର ଓ ଯାଗା, ଉଭୟେ ଗାୟବ ! ବାପାଙ୍କ ପରାମର୍ଶକୁ ମନେ ମନେ ମୁଁ ତାରିଫ କରୁଥିଲି ।

ବାହାରେ ଗତ ଦୁଇଦିନ ଧରି ଲଗାତାର ବର୍ଷା । ବର୍ଷାରୁ ରକ୍ଷାପାଇବା ପାଇଁ ଡାକ୍ତରଖାନା ବାରଣ୍ଡାରେ ଯେତେ ଲୋକ, ପ୍ରାୟ ତତୋଧିକ ସଂଖ୍ୟାରେ ଗାଈ ଏବଂ ସେମାନଙ୍କ ଜାରଜ ସନ୍ତାନଗଣ । କୁକୁରମାନେ ଆସିବାର ସାହସ କରୁନଥାନ୍ତି । ଚକ ଆଉ ଷ୍ଟିଅରିଂହୀନ କିନ୍ତୁ ତା ସତ୍ତ୍ୱେ ନିଜକୁ ଗାଡ଼ି ବୋଲାଉ ଥିବା, ଏବଂ ନାଲି ତ୍ରିକୋଣ ଚିହ୍ନ ଲଷ୍ଟଥିବା ସତ୍ତ୍ୱେ ତାକୁ ଫେମିଲି ପ୍ଲାନିଂବାଲା ନିଜର ବୋଲି ସ୍ୱୀକାର କରୁନଥିବା ଗାଡ଼ିତଳେ ସେମାନେ ନିଜର ଆସ୍ଥାନ ଜମାଇଥାନ୍ତି । ବାରଣ୍ଡାରେ ମଣିଷ ଛୁଆ ଏବଂ ଗାଈ କେତୋଟି ପରିସ୍ରା କରି ସାରିଥାନ୍ତି, ଯାହାକି ଆସନ୍ତା କାଲିଯାଏ ସଫାହେବାର କୌଣସି ଆଶା ନଥାଏ । ପରିସ୍ରାର କ୍ରମବର୍ଦ୍ଧିଷ୍ଣୁ ସ୍ରୁଅ ଓ ପରିମାଣ କାଠ ବେଞ୍ଚର ଗୁରୁତ୍ୱକୁ ଆବଶ୍ୟକତାଠାରୁ ଅଧିକ ବଢ଼ାଇ ଦେବା ସଙ୍ଗେ ସଙ୍ଗେ ସିମେଣ୍ଟ ଚଟାଣର ମର୍ଯ୍ୟାଦାକୁ ଦଳିତଳାନ୍ତ କରି ଦେଉଥାଏ ।

କହିବାକୁ ଗଲେ ତନୁକୁ ଧରି ମୁଁ ଡାକ୍ତରଖାନା ଆସିବା ପାଇଁ ରିକ୍ସାରେ ବସିଲି ଆଉ

ଏଆଡେ ବର୍ଷା ଆରମ୍ଭ ହେଲା । ରିକ୍ସାରୁ ଓହ୍ଲାଇବା ପରେ ବର୍ଷା ବନ୍ଦ ହେବ ବୋଲି ଆଶା ଥିଲା । ମାତ୍ର କାହିଁ? ଚାରିଦିନ ହେବ ବର୍ଷା ଚାଲିଛି । 'ଆମକୁ ସାଧିବା ପାଇଁ ବର୍ଷାର ଏ କରାମତି-' ଗତକାଲି ମା କହୁଥିଲା । ସତକୁ ସତ ଆମେ ଡାକ୍ତରଖାନାରୁ ଗଲାପରେ ପାଗ ଯଦି ଭଲହୁଏ, ଏପରି ଦୁଇ ଚାରୋଟି ଘଟଣା ଜଣକୁ ଭାଗ୍ୟବାଦୀ କରିବା ପାଇଁ ଯଥେଷ୍ଟ । ତା ଉତ୍ତାରୁ ବିଜ୍ଞାନବାଦ ଯାହା କରିବା କଥା କରୁଥାଉ, କିଏ ପଚାରେ ତାକୁ?

ମନ ନଥାଇ ସୁଦ୍ଧା ଯାଗା ଆବୋରିଥିବା କାଠ ପଟାରେ ବସିଲି କିଛି ବେଳ । କାଲି ସକାଳ ଯାଏଁ ପଟାଟି ମୋର ବୋଲି ଜାହିର କରିବା ପାଇଁ ଏହାହିଁ ଏକମାତ୍ର ବିକଳ୍ପ । ଏବେ ତନୁର ଚିନ୍ତା ନାହିଁ । ରାତିସାରା ଶୋଇବ ସେ । ଇଂଜେକସନ, ଔଷଧ, ସବୁକିଛି ପୁଣି କାଲି ସକାଳକୁ । ଏମିତି ଛୋଟିଆ ଅପରେସନ ସବୁରେ ଅପରେସନର ଆଗଦିନ ଓ ପର ଦୁଇଦିନ ଯାହା କଷ୍ଟ । ଟିକିଏ ଯତ୍ନକଲେ ସେପ୍‌ଟ୍ରିକ୍‌ରୁ ରକ୍ଷା ଏବଂ ସେପ୍‌ଟିକ ନହେଲେ ଦିନ ଆଠଟାରେ ଡାକ୍ତରଖାନାରୁ ମୁକ୍ତି । ଫର୍ମାଲିଟି ଭଳି କିଛିଦିନ ପଡ଼ିରହିବା କଥା ଯାହା । ଯେଉଁ ରୋଗୀର ଜୀବନ ମରଣ ସମସ୍ୟା ତା'କଥା ଅଲଗା । ତାଛଡ଼ା ଫୁଲପେଣ୍ଟ ସାର୍ଟଟିଏ ପିନ୍ଧିଛ ମାନେ, ଅଧା ଭି·ଆଇ·ପି ତୁମେ । ନର୍ସ କମ୍ପାଉଣ୍ଡର କଥା ତ ଛାଡ଼, ଡାକ୍ତରମାନେ ବି ଆପଣ ସଂମ୍ବୋଧନ କରିବେ । ମୋଟ ଉପରେ ମୁଁ ନିଶ୍ଚିନ୍ତ ଥିଲି । 'ହେ ଭଗବାନ, ତନୁର କ'ଣ ହେବ?' ବଦଳରେ 'କେମିତି ଆଠଦିନ ବିତିବ ଯେ' ଭଳି ଚିନ୍ତା ମୋର ମୁଣ୍ଡକୁ ବାରମ୍ବାର ଘାରୁଥିଲା ।

ପ୍ରକୃତରେ ସମସ୍ୟା ତ ତାର, ଯିଏ ପ୍ରଥମଥର ପାଇଁ ରୋଗୀକୁ ଧରି ସହରକୁ ଆସିଛି । ଗାଁରେ ଯାହାର କ୍ଷେତ ଖଳା ଭାସି ଯାଉଛି । କ୍ଷେତରେ ଝୁରିକଁକରା ଧରା ବେଳର ଲୁଂଗି ପିନ୍ଧି ସହରର ଗଳି କନ୍ଦିରେ ଔଷଧ ଦୋକାନ ଖୋଜୁଛି; ଡାକ୍ତରରୁ ସୁଇପର ଯାଏଁ ସମସ୍ତଙ୍କୁ 'ଆପଣ' 'ଆଜ୍ଞା' କରୁଛି ଏବଂ ପ୍ରତି ବଦଳରେ 'ତୁ' 'ତା' ଶୁଣୁଛି । ମୁଁ କିଛିବେଳ ଧରି ଏଭଳି ଦୁଃଖୀ ଲୋକଙ୍କ କଥା ଭାବିଲି, କାରଣ କରିବା ପାଇଁ ମୋର ଆଉ କିଛି ବାକି ନଥିଲା । ତନୁ ଶୋଇ ସାରିଛି । ତନୁର ଭାଇ ଖାଇବା ଧରି ଆସିବା ପରେହିଁ ନିଜ ଖାଇବା କଥା ଚିନ୍ତା କରାଯିବ । ଶୋଇବା ସମୟ ହୋଇନି । ଏସବୁ ବାଦ୍ ବଡ଼ ଆଶ୍ୱାସନାର ବିଷୟ ଯେ କାଠ ବେଂଚରେ ଯାଗାଟିକେ ମିଳିଯାଇଛି । ପର ପାଇଁ ଭାବିବାକୁ ଏଥିରୁ ବଳି ପ୍ରକୃଷ୍ଟ ସମୟ ଆଉ କାହିଁ?

କିଛିବେଳ ଭାବିବାପରେ ବିରକ୍ତି ବୋଧ ହେଲା । ବିମାର ସ୍ତ୍ରୀମାନଙ୍କର ଫିଂଚୁଡ଼ୁ ଛୁଆମାନେ ମା' ମାନଙ୍କଠାରୁ ବେଶି ପାଟି କରୁଛନ୍ତି । ମାଛି କେତୋଟି ଅନ୍ଧାର ହେବା

ଆଗରୁ ନିଜ ନିଜ କୋଟା ପୂରା କରିବାପାଇଁ କାମୁଡ଼ିବାରେ ବ୍ୟସ୍ତ । ଅନ୍ଧାର ହେଲାକ୍ଷଣି ତେଣିକି ମଶାଙ୍କ ପାଇଁ ମଇଦାନ ଖାଲିଥିବା କଥା । ଭାବିବାକୁ ବି ଦେବେନି ଏମାନେ । ମୁଁ ଡାକ୍ତରଖାନାର ଫାଟକ ଆଡ଼େ ବାହାରି ପଡ଼ିଲି । ତନୁର ଭାଇ ଆସୁଥିବ । ଭୋକ ବି ଆରମ୍ଭ ହେଲାଣି । ଶୀଘ୍ର ଖାଇଦେଇ ଗଡ଼ିବାରେ ମଜା ଅଛି । ସେତେବେଳେ ଭାବିଲେ ଭଲ ।

ତନୁର ଭାଇ ଆସିଲା । ଯଦିଓ କେବଳ ଟିଫିନ କେରିଅରଟିର ଏଠି ଆବଶ୍ୟକତା, ସାଙ୍ଗରେ ସାଇକେଲ ଓ ଛତା ମଧ୍ୟ ଧରିଆସିଛି । ଛତା, ଟିଫିନକେରିଅର, ସାଇକେଲ– ପ୍ରତ୍ୟେକଙ୍କ ପାଇଁ ଅତିକମରେ ଗୋଟାଏ ଲେଖା ହାତ ଦରକାର । ସର୍ବମୋଟ ଦୁଇଟି ହାତରେ କେମିତି ଆଣିଛି ସବୁ, ତାକୁ ଜଣା କେବଳ । ଫାଟକରେ ହିଁ ତାଠାରୁ ଟିଫିନ କେରିଅରଟି ନେଇ ତାକୁ ବଟେଇ ଦେଲି । ଅନ୍ଧାର ହେଲାଣି । ବର୍ଷା ତା ସାଙ୍ଗକୁ । ଶୀଘ୍ର ଯିବା କଥା ତାର ।

ବାରଣ୍ଡାକୁ ଆସି ଦେଖିଲି ମୋର ପାଛୁଡ଼ାକୁ ଗୋଟାଏ ଆଡ଼କୁ ଆଡ଼େଇ ଦେଇ ବେଞ୍ଚରେ ବୁଢ଼ୀଟିଏ ବସିଛି, ବେଶ୍ ଆରାମ୍‌ରେ । ଅନ୍ୟର ଯାଗାକୁ କବ୍‌ଜା କରିବା ଜନିତ କୌଣସି ଅପରାଧବୋଧ ନାହିଁ ତା'ଠାରେ । ନିଶ୍ଚିନ୍ତରେ ବସିଛି । ଶୋଇବାର ବେଳ ହୋଇ ନାହିଁ, ନୋହିଲେ ଶୋଇ ସାରନ୍ତାଣି ବୋଧହୁଏ ।

ବୁଢ଼ୀକୁ ଦେଖି ମୋର ରାଗ ଜଳିଲା । କେତେ ଅଭଦ୍ର ଲୋକଗୁଡ଼ା ! ଶିକ୍ଷା ଦୀକ୍ଷା ନାହିଁ ବୋଲି କ'ଣ ଏତିକି ଜାଣିପାରୁ ନାହାନ୍ତି? 'ଯାଗା କା'ର? କିଏ ଆଗରୁ ଆସି ଆବୋରିଛି? କିଛି ଜାଣି ପାରୁନୁ? ପାଛୁଡାକୁ ମୋର ଅଲଗେଇ ଦେଇ ବସି ଯାଉଛୁ? ବୁଢୀ ଲୋକ । ମାଡ଼ ଝଗଡ଼ା ହେଲେ ଏବେ ପାରିବୁ ମତେ? ଏବେ ଯଦି ବେଞ୍ଚ ଉପରୁ ତତେ ତଳକୁ ଘିଚିଆଣେ, ଲୋକ ମୋ ଉପରେ ହସିବେ ।' 'ଛାର ଯାଗା ଟିକେ ପାଇଁ ବୁଢୀଟା ସଂଗେ କ'ଣ ଝଗଡ଼ା କରୁଛ?' ମନେ ମନେ ଅନେକ କଥା କହିବାକୁ ଭାବିଟଲି । କହିଲି ନାହିଁ କିଛି । ମୋ ଭିତରେ ଥିବା ବୁର୍ଜୋସ୍ତରର ଝୋପଡ଼ି ବ୍ୟକ୍ତିତ୍ୱ ମତେ ଲଢ଼ିବା ପାଇଁ ଯେମିତି ଉକସାଉ ଥାଏ, ପେଣ୍ଟ ସାର୍ଟ ପିନ୍ଧା ଲୋକ ଲଢ଼ାର ଡର ସେମିତି ପଛକୁ ଟାଣି ଆଣୁଥାଏ । ଫଳରେ ବେଞ୍ଚ ପାଇଁ ବୁଢ଼ୀସହ ମୁଁ ଝଗଡ଼ା କରି ପାରୁନଥାଏ, କି ଚୁପ ହୋଇ ବୁଢ଼ୀର ଅନଧିକାର ପ୍ରବେଶକୁ ସହିପାରୁ ନଥାଏ । କିଛି ସମୟ ପୂର୍ବର ସେଇ ନିଶ୍ଚିନ୍ତତା ମୋର ଛାଇ ନିଦ ପରି ଉଭେଇ ସାରିଥାଏ ।

ଅନନ୍ୟୋପାୟ ହୋଇ କହିଲି, 'ଉଠ ଏଠାରୁ ।' ବୁଢ଼ୀ ନିରୁତ୍ତର । ମୋ ଆଡ଼କୁ ତାର ନିଘା ନାହିଁ । 'ଆଗରୁ ଏଠି ମୋର ପାଛୁଡ଼ା ପଡ଼ିଛି ଦିଶୁନି ତତେ?' ବୁଢ଼ୀର ଜବାବ ନାହିଁ ।

ମୋ ଆଡ଼କୁ ନ ଦେଖିବା, ନ ଶୁଣିବା ପାଇଁ ଯେମିତି ପ୍ରତିଜ୍ଞା କରିଛି । ବେଶ ଏକଧ୍ୟାନରେ ସାମନାକୁ ଚାହିଁ ରହିଛି । ପାଗଳି ନୁହେ ତ? ମୋର ଆଶଙ୍କା ହେଲା । ଏପଟ ସେପଟ ଚାହିଁଲି ସମର୍ଥନ ପାଇଁ ।

ସାମନା ବେଞ୍ଚକୁ ଆବୋରି ବସିଥିବା ଜଣକ (ଭଦ୍ର ବ୍ୟକ୍ତି ନୁହେଁ) କହିଲା, 'ଠରା ନରାରେ କୁହ, ବୁଢ଼ୀ ଶୁଣିପାରେନି ।' ବୁଢ଼ୀକୁ ସମର୍ଥନ କରି କିଛି କହିନଥିଲେ ବି ବୁଢ଼ୀ ପାଇଁ ତା କଥାରେ କିଛିଟା ଦରଦର ଆଭାସ ମିଳୁଥିଲା ।

ସବୁ ଦୁର୍ଭାଗ୍ୟ । ଏତେ କଷ୍ଟ ପରେ ଆଜି ବେଞ୍ଚଟା ମିଳିଥିଲା । ସେ ପୁଣି ହାତରୁ ଗଲା । ଅଗତ୍ୟା ବେଞ୍ଚର ଯେଉଁ ଟିକେ ଜାଗାରେ ମୋର ପୁରୁଣା ଚାଦରଟି ନାଗରିକର ମୌଳିକ ଅଧିକାର ଭଳି ଲଣ୍ଡ ଭଣ୍ଡ ହୋଇ ପଡ଼ିଥିଲା, ସେଠି ବସି ମୁଁ ଟିଫିନ କେରିଅର କାଢ଼ିଲି । ବେଞ୍ଚର ଯେଉଁ ଖଣ୍ଡିକ ବାକୀ ଅଛି ତାର ସଦୁପଯୋଗ ହେବା କଥା । ଭୋକ ତ ହେଲାଣି ସେତେବଳେକୁ । ବେଞ୍ଚରେ ବସି ବସି ଖାଇଦିଏଁ ଆଗ । ତାପରେ ଶୋଇବା କଥା ଦେଖାଯିବ ।

ଖାଇବା ଜିନିଷ ତେଣିକି ଯାହା ହେଉ, ଟିଫିନ କେରିଅରଟି ବାରଣ୍ଡାରେ ଉପସ୍ଥିତ ତଥା ନିଜ ନିଜର କରିଆ ପକେଇ ଶୋଇବାକୁ ଉଦ୍ୟତ ତମାମ ଶୁଶ୍ରୁଷାକାରୀଙ୍କ ଗହଣରେ ମୋର ଏବଂ ତମାମ ରୋଗୀଙ୍କ ମଧ୍ୟରେ ତନୁର ସାମାଜିକ ସ୍ଥିତିକୁ ତ୍ରିରଙ୍ଗା ପତାକା ପରି ଉପରକୁ ଟେକି ରଖିଥାଏ । ଏଣୁ ଲୋଭାତୁର ଭାବେ ଅନେକ ଲୋକ ମୋର ଖାଇବା ବେଳେ ଆଖି ପକାଇବେ ବୋଲି ଆଶଙ୍କା ଥାଏ । ମନେ ମନେ ଘୃଣା ଲାଗୁଥାଏ । ଏସବୁର ଫଳ ସ୍ୱରୂପ ବଢ଼ିଲାଝିଅ ନିଜ ଇଜ୍ଜତ ଘୋଡ଼େଇବା ଭଳି, ଖାଇବା ବେଳେ ନଜର ନ ପଡ଼ିବ ବୋଲି ମୁଁ ଯଥାସମ୍ଭବ ଟିଫିନ କେରିଅରକୁ ଆଢୁଆଳରେ ରଖିଥାଏ । ଛାଡ଼ିଥାଏ ବୋଇଲେ ବୁଢ଼ୀ ଫାଳକୁ । ମୋର ଖାଇବା ଦେଖି ଲାଳ ଗଡ଼େ ଯଦି ତାର, ମୋ ରାଗ ଟିକିଏ ରଂଚେ ଉଣା ହେବ ।

ପ୍ରତିଶୋଧ ନେବାର ଅଭିନବ ଆୟୋଜନ ମୋର ! ହେଲେ ବୁଢ଼ୀର ନଜର ନାହିଁ ମୋ ଆଡ଼େ । ପୂର୍ବଭଳି ସାମନାକୁ ଦେଖୁଥାଏ କେବଳ ସେ । କିଛି ନହେଲେ ବି ଆଚାରକୁ ଦେଖି ତାର ଲାଳ ଗଡ଼ିଥାନ୍ତା ! ତା ନ ହେବାରୁ ମୋର ଦୁଃଖ ହେଲା ।

ଖାଇବା ମୋର ସରିନଥାଏ । ପଛଆଡୁ ଜଣେ କହିଲା, 'ପୁଅକୁ ଟିକିଏ ଖାଇବାକୁ ଦିଅ । ବର୍ଷାଯୋଗୁଁ କୁଆଡ଼େ ଯାଇ ପାରିଲି ନାହିଁ ।' ମୁଁ ପଛକୁ ଓଲଟିଲି । ଜଣେ ସ୍ତ୍ରୀ ଲୋକ ସାଙ୍ଗରେ ତିନି ଚାରି ବର୍ଷର ଛୁଆଟିଏ । ମା ପୁଅ ଦିହେଁ ମୋଆଡ଼େ ଦେଖୁଛନ୍ତି । ବୁଢ଼ୀ ଉପରେ ଥିବା ସବୁ ରାଗ ସ୍ତ୍ରୀ ଲୋକଟି ଉପରେ କଚାଡ଼ି ଦେବାର ଯୋଜନା ଥିଲା ମୋର ।

କିନ୍ତୁ ଦେଖିଲି ସ୍ତ୍ରୀ ଲୋକଟି ସବୁ କିଛି ଶୁଣିବା ପାଇଁ ମାନସିକ ପ୍ରସ୍ତୁତି କରି ସାରିଛି । ତାପରେ ସ୍ପଷ୍ଟ ମୋଠାରୁ କିଛି ପାଇବ ନାହିଁ ବୋଲି ନିଶ୍ଚିତ ସେ । ସେଥିପାଇଁ ତାର ଏକମାତ୍ର ଗିଲ୍‌ଟି ଖୁରିକୁ ଖାଲି ବି କରିନି । ଛିଣ୍ଡା କପଡ଼ା, ଭାଙ୍ଗତବା ସାଙ୍ଗକୁ ଛୁଆର ଭଙ୍ଗା ଖେଳଣା କେତୋଟି ଖୁରି ଭିତରେ । କହୁଁ କହୁଁ କହି ଦେଇଛି ପୁଅ କଥା । ମନା କରିଦିଏଁ ଯଦି, ତାକୁ ଦୁଃଖ ଲାଗିପାରେ, କିନ୍ତୁ ଆଶ୍ଚର୍ଯ୍ୟ ହେବ ନାହିଁ ସେ ।

ପାଇବାର ମନି ଆଶା କରିଥାନ୍ତା ସ୍ତ୍ରୀ ଲୋକଟି, ରାଗ ମୋର ଚଢ଼ିଥାନ୍ତା । ଏବେ ତେଣୁ ରାଗ ଉତରିଗଲା । ରୁଟିଟାଏ ମୋର ବଳୁନଥାଏ । କିନ୍ତୁ ଗୋଟାଏ ରୁଟି ଯଦି ଦେଇ ବା ଦିଏଁ କିଛି ଉଣା ହେବ ନାହିଁ । ରାତିଟିଏ ପାଞ୍ଚଟା ଜାଗାରେ ଚାରୋଟି ରୁଟି ଯଦି ଖାଏଁ, ବିଶେଷ କିଛି ଉଣା ହେବନାହିଁ । ମାତ୍ର ଛୁଆଟି କିଛି ନ ଖାଇବା ଜାଗାରେ (ମୋ' କଥା ସତ ହୋଇଥିଲେ !) ଗୋଟାଏ ରୁଟି ବି ଖାଏ, ଭଲକଥା । ମୁଁ ରୁଟିଟାଏ ଦେଲି । ବୁଢ଼ୀ ଉପରେ ଥିବା ରାଗ ସ୍ତ୍ରୀ ଲୋକଟି ଉପରେ କଚାଡ଼ିବାର ଯୋଜନା ମୋର ଅନ୍ତକେ ପଣ୍ଡ ହେଲା । ତରକାରୀ ଦେବା ପୂର୍ବରୁ କହିଲି, 'ତରକାରୀ କିନ୍ତୁ ଅଇଁଠା ।' ସ୍ତ୍ରୀଲୋକର କିଛି ଉତ୍ତର ନାହିଁ । ମୁଁ ବୁଝିଗଲି । ଅଇଁଠା ତରକାରୀ ଦେଲେ ନେବାକୁ ହୁଏତ ସେ ବାଧ୍ୟ ହେବ, ନ ଦେଲେ କିନ୍ତୁ ଖୁସିହେବ । ତରକାରୀ ଦେଲି ନାହିଁ । ବରଂ ଅଇଁଠା ରୁଟି ଓ ଅଇଁଠା ତରକାରୀ ଭିତରେ ଥିବା ପାର୍ଥକ୍ୟକୁ ମଜବୁରିରେ ପଡ଼ି ସୁଦ୍ଧା ସ୍ତ୍ରୀ ଲୋକଟି ବାରିପାରୁଛି ଦେଖି ଖୁସିହେଲି ।

ସ୍ତ୍ରୀ ଲୋକଟି ରୁଟିଟିକୁ ଛୋଟରୁ ଅଧିକ ଛୋଟ ଖଣ୍ଡ କରି ଚିରିଲା । ଜାଣି, ଅଧିକ ଖଣ୍ଡହେଲେ ରୁଟିର ପରିମାଣ ବଢ଼ିଯିବ ! ପୁଅ ସାଙ୍ଗରେ ନିଜକୁ ବି ଠକିବାର ସେ ଯୋଜନା କରିଥାଏ । ପୁଅକୁ ଖୋଇବା ସମୟରେ ମତେ ଶୁଣାଇବା ଢଙ୍ଗରେ ଆଜି କେମିତି ଖାଇବା ଯୋଗାଡ଼ ହୋଇ ପାରିଲା ନାହିଁ, ତାର ବିବରଣୀ ଦେବାକୁ ଲାଗିଲା । ତା ଅଭିଯୋଗ କେବଳ ବର୍ଷା ଉପରେ । ତ କଥାରୁ ମୁଁ ନିଶ୍ଚିନ୍ତ ହେଲି ଯେ ଡାକ୍ତରଖାନାରେ ଭର୍ତ୍ତି ହୋଇଥିବା କୌଣସି ରୋଗୀର ଶୁଶ୍ରୂଷାକାରିଣୀ ନୁହେଁ ସେ । ବରଂ ଏହା ତାର ଶୋଇବା ସ୍ଥାନ । ରେଲୱେ ପ୍ଲାଟଫର୍ମ, ବସଷ୍ଟେସନ ପରି ଡାକ୍ତରଖାନାର ବାରଣ୍ଡା ତା ପାଇଁ ଏକ ଧର୍ମଶାଳା । ଦିନସାରା କାମ ଧାମ କରି ରାତିରେ ଆସି ଶୁଏ । ଏଠି ଡାକ୍ତରଖାନାର କିଚେନରୁ ଟଙ୍କାଟିଏ ଦେଇ ଭାତ ଡାଲି ଯୋଗାଡ଼ କରେ ଏବଂ ଟଙ୍କାଟିଏ ଯୋଗାଡ଼ କରେ କାହା କାହା ଘରେ ବର୍ତ୍ତନ ସଫା କରି । ଆଜି ବର୍ଷାଯୋଗୁଁ ତାର ସମସ୍ତ ଗତାନୁଗତିକତା ଭିତରେ ବାଧା ପଡ଼ି ଯାଇଛି । ମାଗି ଖାଇବା ତାର ପେଷା ନୁହେଁ ବୋଲି ଜଣାଇବାକୁ ପ୍ରୟାସ କରୁଥାଏ ବିଚାରୀ । ଟଙ୍କାଟିଏ ଯୋଗାଡ଼ର ପଛାକୁ ପ୍ରାମାଣିକ କରିବା ପାଇଁ ସହରର ଜଣେ ନାମୀ ଓକିଲଙ୍କ ନାଁ

ଧରୁଥାଏ । ତାଙ୍କ ଘରେ କୁଆଡ଼େ ବର୍ତ୍ତନ ସଫାକରେ । ତା' ପଛାକୁ କାଳେ ମୁଁ ବେଶ୍ୟାଗିରୀ ବୋଲି ଧରି ନ ନିଏ, ସେଥିପାଇଁ ତାର ଚିନ୍ତା । ସତକଥା, ଜଣେ ପୂର୍ଣ୍ଣ ବୟସ୍କା ନାରୀକୁ ସମାଜରେ ଏକା ରହୁଥିବାର ଦେଖି, ତାର ପେଷାକୁ ପୁରୁଷ କ'ଣ ଅଲଗା କିଛି ବି ଭାବିପାରେ?

ବାରଣ୍ଡାରେ ଶୋଇଥିବା ଏବଂ ଶୋଇବାକୁ ଆସୁଥିବା ଅସଂଖ୍ୟ ଜନସମୂହ ଭିତରେ ରୁଟି ଯୋଗୁଁ ସ୍ତ୍ରୀ ଲୋକଟି ସହ ମୋର ଏକରକମ ପରିଚିତି ହୋଇଗଲା । ରୁଟିର ମୂଲ୍ୟ ତୁଟାଇବାର ଉଦ୍ୟମ ଅବସରରେ ସ୍ତ୍ରୀ ଲୋକଟି ନା ନା କଥା ଗପିଲା ଏବଂ ମୂଲ୍ୟ ଆଦାୟ କରିବା ପାଇଁ ମୁଁ ତା'ଠାରୁ ଅନେକ ପ୍ରଶ୍ନର ଉତ୍ତର ଆଶା କଲି । ରୁଟିଟିଏ ବଦଳରେ ଗୋଟାଏ ଗପର ପ୍ଲଟ ଦାବି କରିବା ଜଣେ ଲେଖକ ପାଇଁ କ'ଣ ଅସ୍ୱାଭାବିକ? କିନ୍ତୁ ପର ମୁହୂର୍ତ୍ତରେ ମୋର ସମସ୍ତ ଲେଖକୀୟ ସମ୍ବେଦନା କାହିଁ କୁଆଡ଼େ ଉଭେଇ ଯାଉଥାଏ ।

କାଠ ବେଞ୍ଚରେ ଯାଗା ପାଇନଥିବା ମୁଁ ଜଣେ ଶୁଶ୍ରୁଷାକାରୀ ମାତ୍ର । ମୋର ସମସ୍ତ ଦୁଃଖର କାରଣ ବୁଢ଼ୀ, ଯିଏ ମୋର ଆବୋରିଥିବା କାଠପଟାକୁ ଉନବିଂଶ ଶତାବ୍ଦୀର ଉପନିବେଶବାଦୀ ଢାଞ୍ଚାରେ କବ୍‌ଜା କରି ପକାଇଛି । ସ୍ତ୍ରୀ ଲୋକଟି ସହ ଚିହ୍ନଜଣା ହୋଇ ସାରିଥିଲା ତ । ତେଣୁ ଅମୂର୍ତ୍ତ ଲେଖକୀୟ କଳ୍ପନା ବିଳାସରେ ତାଠାରୁ ରୁଟିର ମୂଲ୍ୟ ଆଦାୟକୁ ସୀମିତ ନରଖି ବୁଢ଼ୀ ବିରୁଦ୍ଧରେ ଜନମତ ଆଶାକଲି । 'ମୁଁ ଚାଦରଟାଏ ବିଛେଇ ଯାଇଥିଲି । ଟିକିଏ ପରେ ଆସେଁ ତ ବୁଢ଼ୀ ଚାଦରକୁ ଅଲଗେଇ ନିଜେ ଆରାମ କରୁଛି କାଠ ବେଞ୍ଚ ଉପରେ ।'

ମତେ ସମର୍ଥନ କରିବାରେ ନିଜର ଅସାମର୍ଥ୍ୟ ଦର୍ଶାଇ ସ୍ତ୍ରୀଲୋକଟି କହିଲା, 'ତାର ଜାଗା ସେଇଟା, ସବୁଦିନ ଶୁଏ ସେ ।' ବୁଢ଼ୀର ଅଧିକାରକୁ କେବଳ ଗୋଟାଏ ରୁଟି ପାଇଁ ଯଦି ସେ ଅସ୍ୱୀକାର କରେ, କାଲି ତା ଅଧିକାର (ବାରଣ୍ଡାର କୋଣ) ଉପରେ ମଧ୍ୟ ପ୍ରଶ୍ନ ହେବ, ଏତକ ସେ ଜାଣେ । ଦେଖିଲି, ବୁଢ଼ୀ ବିରୋଧରେ କହିବା ଏଠି କିଛି କାମର ନୁହେଁ । ବୁଝି-ଶୁଣି ନପାରି ସୁଦ୍ଧା ବୁଢ଼ୀ ନିଜ ପାଇଁ ଦୃଢ଼ ପକ୍ଷଟିଏ ସୃଷ୍ଟି କରିସାରିଛି । ୟା'ଠାରୁ ବରଂ ଭଲ କଥାବାର୍ତ୍ତାକୁ ଯୁକ୍ତିତର୍କରୁ ସାଧାରଣ ସ୍ତର ଯାଏ ଆଣିବା । ଏମିତି ବି ଆଜି ରାତିକ ବୁଢ଼ୀକୁ ତ ବେଞ୍ଚରୁ ଅଲଗେଇ ହେବନି । ଯାହା କିଛି ଆସନ୍ତା କାଲିକୁ । ଆଗତ ବିଗତ ସବୁଆଡ଼େ ଭାବି ପଚାରିଲି, 'ବୁଢ଼ୀର କ'ଣ ନିଜ ଘର ନାହିଁ ?'

- ଗୋଟାଏ ବଖରା ଘର । ପୁଅକୁ ବାହା ଦେଲା ଦିନୁ ବୁଢ଼ୀ ଶୋଇବା ପାଇଁ ଡାକ୍ତରଖାନା ଚାଲିଆସେ ।'

- କେହି ମନା କରନ୍ତି ନାହିଁ?

- କାହିଁକି ମନା କରିବେ? କାହାର କ'ଣ ସରିଯାଉଛି?

ଆମର କଥାବାର୍ତ୍ତାକୁ ନେଇ ବୁଢ଼ୀର କିଛି ପ୍ରତିକ୍ରିୟା ନାହିଁ । ମୁଁ ତା ବିରୋଧରେ ଅଭିଯୋଗ କଲାବେଳେ ସେ ନା ରାଗୁଥାଏ , ସ୍ତ୍ରୀ ଲୋକଟି ତାକୁ ସମର୍ଥନ କଲାବେଳେ ସେ ନା ଖୁସି ହେଉଥାଏ । ଯେମିତି ବସିଥାଏ ଠିକ ସେମିତି । କାହିରି ସହ କଥାଭାଷା ନାହିଁ । ପୂରା ଚୁପ । କେଉଁ ଚଳଚିତ୍ରର ଗୃହହୀନ ଚରିତ୍ର ଭଳି 'ଘର ଘର' ବୋଲି ଗୁଣୁ ଗୁଣୁ ହେଉନଥାଏ କି ଦୋ ମହଲା ଘରର ସ୍ୱପ୍ନ ଦେଖୁନଥାଏ । ଆଉ ଯଦିବା ଦେଖୁଥାଏ ତାହା ଆଉମାନଙ୍କୁ ଦେଖାଯାଉ ନଥାଏ ।

ରାତି ସେତେବଳକୁ ଅନେକ ବେଶୀ । ଟିଫିନ କେରିଅରଟି ତନୁର ବେଡ ତଳେ ରଖି ମୁଁ ବି ଚଟାଣରେ ପୁରୁଣା ଚାଦରଟି ବିଛେଇଲି । ଦିନ ଯାକର ଧାଁ ଦୌଡ଼ପରେ ଶୁଶ୍ରୂଷାକାରୀଗଣ ଶୋଇଗଲେଣି । ଯେଉଁ ରୋଗୀମାନଙ୍କୁ ନିଦ ନାହିଁ, ସେମାନେ ବାଧ୍ୟ ହୋଇ ଜବରଦସ୍ତ ଆଖି ମୁଜି ଶୋଇବାର ଅଭିନୟ ଅଥବା ଚେଷ୍ଟା କରୁଥାନ୍ତି । 'ଓଃ' 'ହାଏ' 'ମରିଗଲି' ପରି ଶବ୍ଦ ଏବଂ କନ୍ଦାକଟା, ଯାହାକି ଡାକ୍ତରଖାନାର ନିତିଦିନିଆ ପ୍ରସଙ୍ଗ ବୋଲି ଚର୍ଚ୍ଚା ହୁଏ, ସେସବୁର କୌଣସି ଆଭାସ ନଥାଏ । ଏପରି କି ପ୍ରସୂତି ୱାର୍ଡରେ ମଧ୍ୟ ଅଳ୍ପ କେତୋଟି ସଦ୍ୟଜାତ ଛୁଆ ଏବଂ ଜଣେ ଦୁଇଜଣ ଆସନ୍ନ ପ୍ରସବା ମା'ଙ୍କୁ ବାଦ ଦେଲେ, କେହି ପାଟି କରୁନଥାନ୍ତି । ଡ୍ୟୁଟିରୁମର ନର୍ସଟି ଚୌକୀକୁ ଖଟବୋଲି କଳ୍ପନା କରି ଝାପସେଇ ଯାଉଥାଏ । ମୋଟ ଉପରେ ମଶା କେତେଟିଙ୍କର ଗମନାଗମନ ଜନିତ ଶବ୍ଦ ଏବଂ ଲୋକ କେତୋଟିଙ୍କର ଘୁଙ୍ଗୁଡ଼ି ମାରିବାର ପୁରୁଣା ଅଭ୍ୟାସକୁ ଛାଡ଼ି ଦେଲେ ବାତାବରଣ ଶାନ୍ତଥାଏ । ଡାକ୍ତରଖାନାର ଝାଡୁଦାର ବୋଲି ନିଜକୁ ପରିଚୟ ଦେଇ ଶୁଶ୍ରୂଷାକାରୀଙ୍କଠାରୁ ଚା'ପିଆ ଦାବି କରୁଥିବା ମଦୁଆଜଣକ ଗାଇମାନଙ୍କୁ ତଡ଼ି ଦେଇଥାଏ । ତେଣୁ ଯାହାକୁ ଯେତେ ଯାଗା, ଗାଇ ପରିସ୍ରାକୁ ବେଖାତିର କରିବାର ତାକତ ରହିଲେ ଖାଲି ହେଲା ।

ତନୁର ପେଟ ଅପରେସନର ଆଜି ଚତୁର୍ଥ ଦିନ । ଆଉ ଦିନ ଚାରିଟାରେ ଏଠୁ ମୁକ୍ତି । ଗୋଟାଏ ଦିନ ଘରେ ରେଷ୍ଟ କରି ଅଫିସ ଯିବାକୁ ପଡ଼ିବ । ଏଣିକି ଡ଼ାକ୍ତରଖାନାର ଡ୍ୟୁଟି ମୁଁ ମୋ ନିଜହାତକୁ ନେଇଥାଏ । ମା କିମ୍ବା ଶାଶୁ ଡ଼ାକ୍ତରଖାନାରେ ରହିଲେ କିଛି ଲାଭ ନାହିଁ । ଗୋଟାଏ ଗୋଟାଏ ଘରର ମେରୁଖମ୍ବ ସେମାନେ । ସେମାନେ ନ ରହିଲେ ଘରଗୁଡିକ ଅଚଳ ହୋଇପଡ଼ନ୍ତି । ପୁଣି ତନୁ ବି ଉଠାବସା କଲାଣି । ଦେଖା ରେଖା ପାଇଁ ଜଣେ ଯଥେଷ୍ଟ । ଏମିତି ବି ରୋଜ ନୂଆ ନୂଆ ଔଷଧର ତ଼ାଲିକା ମିଳୁନି କି ଖଟପାଖରେ ଜଗି ରହିବାକୁ ପଡୁନି । ବରଂ ଭାବିବା ପାଇଁ, ବସିବା ପାଇଁ ଅନେକ ସମୟ ମିଳୁଛି । ସକାଳେ

ଡ଼ାକ୍ତରଖାନାରୁ ମିଳିଥିବା ସଫା ବେଡ଼ସିଟ ଉପରେ ସତର୍କତା ମୂଳକ ପଦକ୍ଷେପ ରୂପେ ଘର ବେଡ଼ସିଟଟି ପାରିଦେବା ଅବସରରେ ମୁଁ ଭାବୁଥାଏ ।

ତଳୁର ଗୋଡ଼ ପଟକୁ ଜଣେ ସ୍ତ୍ରୀ ଏକା ପଡ଼ିଛି । କେହି ନାହାନ୍ତି ପାଖରେ । ସଂବଳ ବୋଇଲେ ପାଖରେ ଗିଲ୍‌ଟି ଖୁରିରେ ପାଣି ଅଧଖୁରି ତାର । ଯେତେମାତ୍ରାରେ ପାଣି ପିଉଛି କିଛି ବେଳ ପରେ ଖୁରିଟା ଖାଲି ହେବ ନିଶ୍ଚୟ । ନର୍ସ ଆସି ଗୋଟାକ ଉପରେ ଆଉ ଗୋଟାଏ ଔଷଧ ତାଲିକା ଦେଇ ସାରିଲେଣି । କେହି ଆଣିବାକୁ ନାହାନ୍ତି । ସେଥିପାଇଁ ଧାଇମାନେ ମିଶି ଗାଳି ବି ଦେଇ ସାରିଲେଣି । ପଚାରିଲି, 'କେହି ନାହାନ୍ତି–?' 'ନା ଆସୁଥିବେ ।' କହି ସେ ନିଜ ସ୍ୱାମୀର ହତାଦର ଏବଂ ଅନ୍ୟଠାରୁ କରୁଣା ଭିକ୍ଷା କରିବା ବିରୋଧରେ ।

ସତକୁ ସତ ସଂନ୍ଧ୍ୟା ନହେଣୁ ଜଣେ ଲୋକ ଆସି ତାଲିକା ସବୁ ନେଇଗଲା । କଥାବାର୍ତ୍ତା କିଛି ନାହିଁ । ଜାଣି, ସେଥିପାଇଁ ତା ପାଖରେ ସମୟ ନାହିଁ । ଲୋକଟି ଔଷଧ ଧରି ଫେରିବା ବେଳକୁ ସ୍ତ୍ରୀଟିକୁ ଆଉ ଗୋଟାଏ ସ୍ଥାନକୁ ବଦଳେଇ ସାରିଲେଣି । ଏବେ ବେଡ ଅଭାବରେ ବଡ଼ ଘର ରୋଗୀସବୁ ତଳ ପାଇଁ ଲାଇନ ଜମେଇଲେଣି । ଡ଼ାକ୍ତରଖାନାରେ ବେଡ କମ । ସରକାରଙ୍କ ଅବହେଳା । ଉଣେଇଶ ଶହ ଚୟାଳିଶର ଡ଼ାକ୍ତରଖାନା ଉଣେଇଶ ଶହ ବୟାନବେରେ ମଧ୍ୟ ପୂର୍ବସ୍ଥିତିରେ । 'ସହରର ଲୋକସଂଖ୍ୟା ବଢୁଛି, ରୋଗର କିସମ ବଢୁଛି । ନର୍ସ, ଧାଇ, ଡାକ୍ତର ବି ସେତେବେଳେଠାରୁ ଅଧିକ ଅଛନ୍ତି । ବଢ଼ି ନାହିଁ ବୋଇଲେ ଡ଼ାକ୍ତରଖାନାର ପରିସର ।' କାଲି ଜଣେ ଡ଼ାକ୍ତର କହୁଥିଲେ, ଡ଼ାକ୍ତରସଂଖ୍ୟା ମଧ୍ୟ ବଢ଼ିଥିବାର ସ୍ୱୀକାର କରି ସେ ନିଜ ବକ୍ତବ୍ୟକୁ ବିରୋଧୀ ଦଳ ନେତାଙ୍କଠାରୁ ଅଲଗା କରୁଥିଲେ । ତାଙ୍କୁଜଣା, ସରକାରଙ୍କୁ ଅଧା-ପଙ୍କୁ ବୋଲି କହିଲେ ହିଁ ଲୋକେ ତାଙ୍କୁ ଗ୍ରହଣ କରିବେ ।

ଲୋକଟି ଗୋଟାଏ ହାତରେ ଔଷଧ ଓ ଅନ୍ୟହାତରେ ତାଲିକା ଏବଂ ଖୁଚୁରା ପଇସା କିଛି ଧରି ଏପଟ ସେପଟ ଦେଖୁଛି । ତା'ସ୍ତ୍ରୀ ସ୍ଥାନରେ ଆଉ ଜଣେ ବଡ଼ ଲୋକିଆ ସ୍ତ୍ରୀ । ତା ସ୍ତ୍ରୀ କେଉଁଠି ପଚାରିବାର ସୁଦ୍ଧା ସାହସ ନାହିଁ ତାପାଖରେ । କହିଲି, 'ତୋ ପେସେଣ୍ଟ ସେଠି ।' ଡ଼ାକ୍ତରଖାନାର ଡ୍ୟୁଟି କରି ବୋଧହୁଏ ଲୋକଟି ପେସେଣ୍ଟର ମତଲବ ଜାଣେ । ମୋର ନିର୍ଦ୍ଦେଶ ମତେ ସେ ଆଗକୁ ବଢ଼ିଲା । ସ୍ତ୍ରୀଟି ଆଗରୁ ସହିଥିଲା ଅପନ୍ତରା ଜାଗାଟିକୁ । ଆଗରୁ ମିଳିଥିବା ନଡ଼ିଆକତାର ଗଦି ବି ଏଥର ହାତରୁ ଯାଇଛି । ଡ଼ାକ୍ତରଖାନାର ଧଳା ଚାଦରଟି ପଡ଼ିଛି କେବଳ । ଲୋକଟିର ମଧ୍ୟ କୌଣସି ପ୍ରତିବାଦ ନାହିଁ । ଯେତକ ମିଳିଛି, ତାହା ହାତଛଡ଼ା ନହେଉ ଖାଲି ।

ଅଳ୍ପ ସମୟ ପରେ ଲୋକଟି ବାରଣ୍ଡାକୁ ଚାଲିଗଲା । କରିଆଟିକୁ ଝାଡ଼ି ଝୁଡ଼ି ତଳେ

ପାରି ଶୋଇଗଲା । ରିକ୍ସା ଚଲାଏ ସେ । ଦିନସାରା ରିକ୍ସା ନେଇ ବୁଲିଛି । କମାଣିସବୁ ଧରି ସନ୍ଧ୍ୟାରେ ଡ଼ାକ୍ତରଖାନାକୁ ସ୍ତ୍ରୀର ଶୁଶ୍ରୂଷା ପାଇଁ ଆସିଛି । ଥକାନ ଏତେବେଶି ଯେ ସାଙ୍ଗେ ସାଙ୍ଗେ ନିଦ ଘାରି ପକାଇଲା ତାକୁ । ଏଆଡ଼େ ମୋ ଆଖିରେ ନିଦ ନାହିଁ । କେତେ ନିଶ୍ଚିନ୍ତରେ ଶୋଇଛି ଲୋକଟି । ସ୍ତ୍ରୀ ତେଣିକି ଯାହା ହେଉ । ମୁଁ ତନୁକୁ ଯେତେ ଭଲପାଏ,ତା'ଠାରୁ କ'ଣ କମ ଭଲ ପାଉଥିବ ସେ ନିଜ ସ୍ତ୍ରୀକୁ? ଯଦି ନା, ତେବେ କାହିଁକି ଦିନସାରା ସେ ବେଡ଼ (ଅବଶ୍ୟ ସ୍ତ୍ରୀକୁ ବେଡ ମିଳିନଥିଲା ।) ପାଖରେ ବସି ରହୁନି? ଖୁସି ରଖିବା ପାଇଁ ସ୍ତ୍ରୀ ମୁଣ୍ଡ ପାଖରେ ବସି ମଜା କଥା କହୁନି? କାହିଁକି ପୁଣି, 'ମୋ ସ୍ତ୍ରୀର କ'ଣ ହେବ ପ୍ରଭୁ? ତାକୁ ବଞ୍ଚେଇଦିଅ ଏଥର', ବୋଲି କାନ୍ଦି କାନ୍ଦି ଗୁହାରି ମୂଳକ ଭଜନ ଗାଉନି ? ସ୍ତ୍ରୀ ସ୍ତ୍ରୀ ବୋଲି ପାଗଳ ହୋଇ ଯାଉନି?

ଦିନରେ ବୁଢ଼ୀ ବେଞ୍ଚକୁ ଛାଡ଼ି ଆଉ କାଠ ପଟା ଉପରେ ମୁଁ ଆସି ବସିଲି । ଅପରେସନ ନାହିଁ ବୋଧହୁଏ ଆଜି । ମୋ ଖାଇବା ପାଇଁ ପୁଣି ଟିଫିନ କେରିଅର ଆସିଥାଏ । ଗଲାରାତିର ସ୍ତ୍ରୀ ଲୋକଟି ତାର ଛୁଆକୁ ଧରି ଆସିଲା । ହାତରେ ଡେକଚିଏ ଭାତ । 'ନେବାକୁ ଗଲିନି ତ ରାତିରେ, ରାନ୍ଧୁଣିଆ ଆଜି ବେଶୀ ଭାତ ଢାଳି ଦେଇଛି । କିଏ ଖାଇବ ମୋର ଏତେ? ମୋ ପାଖରେ ତା ପ୍ରଶ୍ନର ଉତ୍ତର ନଥିଲା । କୌଣସି ଉତ୍ତର ଅପେକ୍ଷାରେ ମଧ୍ୟ ସେ ନଥିଲା । ତା କଥାରେ ଗଲାରାତିର ତ୍ରୁଟି ପାଇଁ କେବଳ ସଫେଇ ଥିଲା । ମୋ ଆଖିରେ ବିରକ୍ତିଭାବ ନଥିବା ଅନୁମାନ କରି ବୋଧହୁଏ, ସେ ପୁଣି କହିଲା,'ତାକୁ ଟଙ୍କାଟିଏ ମିଳିଯାଏ ତ । ଆଉ ଲୋକବି ଯାଆନ୍ତେ; ଡ଼ାକ୍ତର ଜାଣିଲେ ଚାକିରୀ ଯିବା ଭୟରେ ଅନ୍ୟମାନଙ୍କୁ ଭାତ ବିକେନା ।'

ବର୍ଷା ପାଗ । ପୁଅ କାମକୁ ଯାଇନି ବୋଧେ । ତେଣୁ ବୁଢ଼ୀ ମଧ୍ୟ ଗେଲ୍‌ଟିର ଗଡୁଟିଏ ଧରି ଦୁଇପହରକୁ ବାରଣ୍ଡାରେ ହାଜର । ବିନା କଥାବାର୍ତ୍ତାରେ ସେ ନିଜ କାଠପଟାରେ ଯାଇ ବସିଲା । କୋଣଗୋଟାକୁ ଆବୋରିବା ପାଇଁ ସ୍ତ୍ରୀଲୋକଟି ତାର ଛିଣ୍ଡାକନା ପାରିଥାଏ । ମୋର ନଚାହିଁବା ସତ୍ତ୍ୱେ ଆମ ତିନିଜଣଙ୍କ ଭିତରେ ଏକ ରକମ ପରିଚିତି ହୋଇଗଲାଣି ସେତେବେଳକୁ । ତନୁର ସ୍ୱାସ୍ଥ୍ୟରେ କ୍ରମାଗତ ଉନ୍ନତି ତଥା ସେଦିନ ସକାଳେ ଡ଼ାକ୍ତରଖାନାର ଜଣେ କମ୍ପାଉଣ୍ଡର ସହ ଚିହ୍ନାଜଣା ଓ ସମସ୍ତ ସଂଭାବ୍ୟ ସହଯୋଗ ପ୍ରାପ୍ତିର ପ୍ରତିଶ୍ରୁତି ମୋର ବୋଝକୁ ହାଲୁକା କରି ଦେଇ ଥିବାରୁ ଉପରୋକ୍ତ 'ଏକରକମ ପରିଚିତି' ନିମନ୍ତେ ମୋର କୁଣ୍ଠା ନଥାଏ । ଅନ୍ୟ ପକ୍ଷରେ ତନୁର ସ୍ତ୍ରୀ ୱାର୍ଡରେ ମୋର ସଦା ବସିରହିବା ଜନିତ ଅସୁବିଧା ଏଭଳି ପରିଚିତି ପାଇଁ ମତେ ବାଧ୍ୟ କରୁଥାଏ । ଖିଆ ପିଆ ପରେ ସ୍ତ୍ରୀ ଲୋକଟିକୁ ପଚାରିଲି, 'କେତେ ଦିନରୁ ଏଠି ରହୁଛ?'

-ତା ବାପା ମତେ ଛାଡିଲା ଦିନରୁ ।' ଖୋଲା ବାରଣ୍ଡାରେ ଖେଳୁଥିବା ପୁଅକୁ ନିର୍ଦ୍ଦେଶ କରି ସେ କହିଲା ।

-କେବେ ଛାଡ଼ିଲା?'

-ପୁଅ ମୋର ପାହେ ପାହେ ପକାଉଥାଏ । ଏବେ ତ ଦଉଡ଼ି ଆସିଲାଣି ।' ଦେଖିଲି ତାର ସମସ୍ତ ସମୟଜ୍ଞାନ ପୁଅର ଜନ୍ମହେବା, ଚାଲିବା, ଦୌଡିବାର ଘେର ଭିତରେ ଆବଦ୍ଧ । ବୋଧହୁଏ, ଜାତିସଂଘର ସ୍ଥାପନା, ଚୀନ ଆକ୍ରମଣ ଭଳି ଜାତୀୟ, ଅନ୍ତର୍ଜାତୀୟ ଘଟଣା ସବୁ ମଧ୍ୟ ସେ ପୁଅକୁ କେନ୍ଦ୍ର କରି ବୁଝେଇବ । ତେଣୁ ଅଗତ୍ୟା 'କେବେ' ନଥିବା ପ୍ରଶ୍ନ ପଚାରିବାକୁ ସ୍ଥିର କଲି । 'କାହିଁକି ଛାଡ଼ିଲା?'

-ଛାଡିବନି? ସେ ମାଇକିନାଟା ପରା ତାକୁ ମୋହନୀ ଲଗେଇଲା ।

-ମୋହନୀ କେମିତି ଲଗେଇଲା?

- ମୋହନୀ ଲଗେଇ ନଥିଲେ ଏମିତି ବୁଢ୍ଢୀ ମାଇକିଣା ପାଙ୍ଗରେ ଯାଇ ରହନ୍ତା? ସାନଝିଅ ତାର ମୋ ବୟସରେ । କ'ଣ ଅଛି ତାର? ନା ବୟସ, ନା ଗଢ଼ଣ । ମାସକୁ ମାସ ସରକାରୀ ଦରମା ପାଏ; ବେଶ ସେତିକି ତ !' ଅନ୍ୟଥା ଶାନ୍ତ ସୁଧୀର ଭଳି ଦିଶୁଥିବା ସ୍ତ୍ରୀଲୋକଟି ମନରେ ସଉତୁଣୀ ପାଇଁ କେତେ ଯେ ରାଗଥାଏ, ତାହା ତା ମୁହଁରୁ ବାହାରୁଥିବା ପ୍ରତ୍ୟେକ ଶବ୍ଦରୁ ସ୍ପଷ୍ଟ ବାରି ହେଉଥାଏ । ସଉତୁଣୀର ଦରମା ଟଙ୍କା ଆଗରେ ତା ରୂପ, ବୟସ, ଆଦି ହାରିଯାଇଛନ୍ତି । ବର ତାର ହାତଛଡ଼ା ହୋଇଛି । ସେ କହିଥିବା କେତୋଟି ବାକ୍ୟରୁ ମୁଁ ତା ଜୀବନ କାହାଣୀ ଗଢୁଥିଲି ।

- ସଉତୁଣୀ କେଉଁଠି କାମ କରେ?

- ବର୍ଗଡ଼ ଡାକ୍ତରଖାନାରେ ।

- ବର ଛାଡ଼ିଦେଲା ଯଦି ନିଜ ଘରକୁ ଯାଉନ । ବାପା-ମା ପାଖକୁ ।

- ଘରେ କ'ଣ ମତେ ଢୁକିବାକୁ ଦେବେ? ଚମାର ପିଲାସହ ପଳେଇ ଆସିଥିଲି ପରା ।

- କେବେ ?' ନ ଚାହିଁବା ସତ୍ତ୍ୱେ ପଚାରି ବସିଲି ପୁଣି ଥରେ ।

- କେତେ ଦିନ ହେଲାଣି । ବଡ଼ ଝିଅ ମୋର ଦୁଇ ବର୍ଷ ଗଲେ ଖଟିଯିବ ।

- କେତୋଟି ଛୁଆ ?

- ଚାରୋଟି । ଉପର ତିନୋଟି ତା ବାପା ପାଙ୍ଗରେ ରହନ୍ତି । ଝିଅ ପିଲା ତ । ସାନଛୁଆଟି ଖାଲି ମୋ ସଂଗେ ରହେ ।

- ମଝିରେ ଯାଅ ସେଠିକି ?

- ହଁ, ଛୁଆଙ୍କୁ ଦେଖିବାକୁ ।

- ବର ଘାଙ୍କରେ ଭେଟ ହୁଏ ?

- ଛି, ମୁଁ ଭେଟିବି ? ମୋ ସଉତୁଣୀ ଆଗରେ ପରା ମତେ ସେ ଫାଇଟିଂ ମାରିଲା । ସଉତୁଣୀ ତା ପାଇଁ ଦରମା ଟଙ୍କାରୁ ମୁଦିଟିଏ କିଣି ଦେଇଛି ତ । ମୁଦିଟି ଗଡ଼ିଗଲା ମୋ ମୁଣ୍ଡରେ । ଆଜିଯାଏଁ ମୁଣ୍ଡ ଧମ ଧମ କରୁଛି ।' ମୁଦି ଗଡ଼ିଥିବା ସ୍ଥାନରେ ଅଜାଣତରେ ତା ହାତ ଯାଇ ସାଉଁଳେଇ ହେଲା ।

ଛୁଆଟି ଖେଳଛାଡ଼ି ଏବେ ମା କୋଳରେ । ମୋ ସହ କଥା ନ କରିବାକୁ ମା'କୁ ତାର ବାରମ୍ବାର ତାଗିଦ କରୁଛି । 'ଅଣ୍ଡିରା ପିଲା ସହ ମତେ କେବେ କଥା ହେଇ ଦିଏନା ।' ପୁଅର ମନୋଭାବ ସ୍ପଷ୍ଟ କରୁଥାଏ ସ୍ତ୍ରୀ ଲୋକଟି । ସାଙ୍ଗରେ ସାନ ବୟସରେ ସୁଦ୍ଧା ପୁଅ ତା' ସୁରକ୍ଷାର ଭାର ନେଇଛି ବୋଲି ପ୍ରସନ୍ନ ସେ । ଏଆଡ଼େ ବୁଢ଼ୀଟି ବୁଦ୍ଧମୂର୍ତ୍ତି ଭଳି ବସିଥାଏ । ସାନଛୁଆଟି ପରି ନା କଥା ହେବାରୁ ସେ ମନା କରୁଥାଏ, ନା ଉତ୍ସାହ ଦେଉଥାଏ । ହଁ, ମଝିରେ ମଝିରେ ଆମ କଥାବାର୍ତ୍ତା ସହ ମୋଟେ ସଂପର୍କ ନଥିବା ମନ୍ତବ୍ୟଟାଏ ଦେଉଥାଏ ଏକା । ଯେମିତି-ଆଜି ରାତିରେ ତୋ ଛୁଆପାଇଁ ମାଂସ ତରକାରୀ ଟିକିଏ ଆଣିଦେବି ।' ଅବା 'ହଇଲୋ, ପୁଅକୁ ତା ବାପ ପାଖରେ ଛାଡ଼ି ଆସୁନୁ । ଭଲକରି ମୁଠିଏ ଖାଇବ ।' ତ କଥାରୁ ଜଣା ପଡୁଥାଏ ସ୍ତ୍ରୀଲୋକ ଓ ଛୁଆର ଜୀବନ ସଂଘର୍ଷ ସହ ସଂପୂର୍ଣ୍ଣ ପରିଚିତ ସେ ।

ୱାର୍ଡକୁ ଫେରି ସ୍ତ୍ରୀଲୋକଟି ସମ୍ପର୍କରେ ସବୁକଥା ମୁଁ ତନୁକୁ କହିଲି । ବେଡରେ ପଡ଼ି ପଡ଼ି ବିଚାରୀ ଥକିଯିବଣି । ସ୍ତ୍ରୀର ଜୀବନ କାହାଣୀ ଶୁଣି ବା ସେ ଟିକିଏ ଖୁସି ଅନୁଭବ କରିବ । ବେଳେ ବେଳେ ବେଡରୁ ଉଠି ଏପାଖ ସେପାଖ ବି ହେଲାଣି । କେତେବେଳେ ବାରଣ୍ଡାକୁ ଆସି ମତେ ସ୍ତ୍ରୀଲୋକଟି ସହ କଥାବାର୍ତ୍ତା କରୁଥିବାର ଦେଖିଲେ ଭୁଲ ନ ବୁଝିବ-ତାହା ଥିଲା ମୋ କହିବାର ଅନ୍ୟ ଏକ ଉଦ୍ଦେଶ୍ୟ । ଆମର ଦିନ ଦୁନିଆଁ ଭିତରେ ବୁଢ଼ୀ ଆଉ ସ୍ତ୍ରୀଲୋକଟି ଭଳି ଚରିତ୍ରର ଅଧିକ ଏଥିରୁ କ'ଣ ବା ଦଖଲ ରହିବ? ବୁଢ଼ୀଟାଏ ହସପିଟାଲର ବାରଣ୍ଡାରେ ପ୍ଲାଟଫର୍ମ କରି ଘରକଲାଣି । ଶୁଣି ପାରେନି । ତେଣୁ ଅନ୍ୟର ଧମକ ଚମକର ଭିତରେ ସେ ନାହିଁ । ସ୍ତ୍ରୀଲୋକଟିଏ ଯୁଆନ ବୟସରେ ଏକା ରହେ । ପୁଅପାଇଁ ତାର ଜୀବନ ସଂଘର୍ଷ । ଶୁଣିବାଲୋକ, ଯଦି ନିଜକୁ ସଂବେଦନଶୀଳ ବୋଲି ପରିଚୟ ଦେବାକୁ ଚାହୁଁଥାଏ, କହିବ, 'ଆହା...ଚୁ...ଚୁ... ।'

ପରଦିନ ପାଗ ଟିକିଏ ଶୁଖିଲା ଥିଲା । ମଦୁଆର ବାରଣ ନଥିଲେ ବି ଗାଈ ମାନେ

ଡ଼ାକ୍ତରଖାନାର ବାରଣ୍ଡାକୁ ଆସି ନଥାନ୍ତି । ଗାଡ଼ି ଫେଲ ଅତିଥିପରି ହାତରେ କିଛି ବିକଳ୍ପ ନଥିଲେ ଯିନା ସେମାନେ ଆସନ୍ତି, ନୋହିଲେ ହୋଟେଲର ପଛପଟେ ପଡ଼ିଥିବା ଅଇଁଠା ଭାତ, ରାସ୍ତାର ଛିଣ୍ଡା କାଗଜକୁ ଛାଡ଼ି ବାରଣ୍ଡାକୁ ବା ତାଙ୍କର କି ଲୋଭ ଯେ ! ରିକ୍ସାବାଲାଟି ସ୍ତ୍ରୀ ସ୍ୱାସ୍ଥ୍ୟର ଉନ୍ନତି ହେବାରୁ, ସ୍ତ୍ରୀକୁ ନିଜ ରିକ୍ସାରେ ଘରକୁ ନେବାର ଆଦେଶ ସଂଗ୍ରହ କରି ସାରିଥାଏ । ସେ ସ୍ଥାନରେ ଆସିଥିବା ନୂଆଁ ବୁଢ଼ୀ ରୋଗୀଜଣକ ଅନର୍ଗଳ କଥା ଗପୁଥାନ୍ତି । କାଣି, ମୁହଁରେ ଡାଇରିଆ ହୋଇଛି । ତାଙ୍କ କହିବା ଅନୁଯାୟୀ ପୁଅ-ବୋହୂ, ନାତି-ନାତୁଣୀ ସବୁ ତାଙ୍କର ବହୁତ ସମ୍ମାନ କରନ୍ତି ଏବଂ ତାଙ୍କ ଅପରେସନ ସମୟରେ ଯେତିକି ପରିମାଣରେ ରକ୍ତ ଆବଶ୍ୟକ ହେଲେ ବି କୌଣସି ଅସୁବିଧା ହେବ ନାହିଁ । ବୁଢ଼ୀଙ୍କର ନିଜ ଶୁଶ୍ରୂଷାକାରୀ କେହି ନଥିବାରୁ ୱାର୍ଡର ସମସ୍ତ ଶୁଶ୍ରୂଷାକାରୀ ଏବଂ କ୍ରମଶଃ ଭଲ ହୋଇ ଆସୁଥିବା ରୋଗୀଙ୍କୁ ହିଁ ଏସବୁ ଶୁଣିବାକୁ ପଡୁଥାଏ ।

ଆଜି ମୋର ମନ ଭଲ ନଥାଏ । ଆସନ୍ତା କାଲି ଆମ ଡ଼ାକ୍ତରଖାନା ଛାଡ଼ିବା କଥା । କିନ୍ତୁ ଡ଼ାକ୍ତର କହିଛନ୍ତି ଆଉ ତିନିଦିନ ରିହବାକୁ ହେବ । କାଲି ତ ଯିବୁ ବୋଲି ତନୁ ଭାଇ ହାତରେ ଘରକୁ ପଠାଇ ଦେଇଥିବା କେତେଗୁଡ଼ିଏ ଜିନିଷ ପୁଣି ଅଣେଇବାକୁ ପଡ଼ିବ । ସେପଟେ ଅଫିସରେ ଛୁଟି ନାହିଁ । ସକାଳୁ କ୍ଷୀର ଗରମ କରିବାକୁ ଯାଇ ଚା' ଦୋକାନୀ ସହ ସାମାନ୍ୟ କଥାଟିରେ ବଚସା ହେଲା । ଆଉ ତିନିଦିନ ରହିବା ନଥିଲେ ବଚସାରେ କିଛି କ୍ଷତି ନଥିଲା । କାଲିଠାରୁ କ୍ଷୀର ଗରମ ପାଇଁ ଆଉ କେଉଁଠି ଦେଖିବାକୁ ପଡ଼ିବ । ଏଆଡ଼େ ତନୁର ଦାନ୍ତଘଷା, ଔଷଧ ସେବନ, କିଛି ହେଇନି । ଅବଶ୍ୟ ଏବେ କହିଲା ବେଳେ ଜଣା ପଡୁନି, ସେତେବେଳେ  କିନ୍ତୁ ଲାଗୁଥାଏ, ଜୀବନଟା ଦୁଃଖମୟ ।

ଠିକ ଏତିକିବେଳେ ସ୍ତ୍ରୀଲୋକଟି ଝରକା ସେପଟୁ ମତେ ପାଖକୁ ଡ଼ାକିଲା । ମୁଁ ଆହୁରି ଚିଡ଼ିଗଲି । ଲୋକେ ଦେଖିଲେ କ'ଣ ଭାବିବେ? ତଥାପି ତା ପାଖକୁ ଆସିଲି । ସେ କାନ୍ଦ କାନ୍ଦ ହୋଇ କହିଲା, 'ବର୍ଗଡ଼ର ଜଣେ କହିଲା, ମଦପିଇ ତା'ବାପ ବଡ଼ ଝିଅକୁ ବହୁତ ଫାଇଟିଂ ମାରିଛି । ଆଗରୁ କେବେ କେବେ ପିଉଥିଲା । ଆଜିକାଲି ସଉତୁଣୀ ପଚାରୁନି ବୋଲି କୁଆଡ଼େ  ବହୁତ ପିଉଛି । ଝିଅପିଲା, ଗୋଡ଼ ହାତ ଭାଙ୍ଗିଲେ ବାହା ଦେବି କେମିତି?' ଏସବୁ ମତେ କହିବାର କି ଦରକାର? ମୋର ପଚାରିବାକୁ ଇଚ୍ଛା ହେଉଥାଏ । ନୋହିଲା ଚିହ୍ନା ଯେ, ଇଏତ ମୋର ଆଉ ପିଛା ଛାଡ଼ିବନି । ତା'ର ବିଭିନ୍ନ ପ୍ରଶ୍ନର ମୋଠାରୁ ଉତ୍ତର ବା ପରାମର୍ଶ ଆଶା ନରଖି ସେ କାନ୍ଦି କାନ୍ଦି ଗପି ଚାଲିଥାଏ । ମୋ ବିରକ୍ତିରେ ବେଖବର ସେ । କ୍ରମଶଃ ମୋ ବିରକ୍ତିର ଅନୁପାତ ବୃଦ୍ଧି ଓ ତା'ର 'ଦୁଃଖ କାହାଣୀ'  ବର୍ଣ୍ଣନା ସମାନ

ଅନ୍ତରରେ ଚାଲିଥାନ୍ତି ।

ବୋଧହୁଏ ମୋ ସହ ଚିହ୍ନାଜଣାର ସେ ଦାମ ଅସୁଲ କରିବାକୁ ଚାହେଁ । ଝିଅକୁ ଡ଼ାକ୍ତରଖାନାରେ ଭର୍ତ୍ତି କରିବାକୁ ପଡ଼ିବ । ଔଷଧ ପାଇଁ ପଇସା ଦରକାର । ତା ଲମ୍ବା ବକ୍ତବ୍ୟର ଏହାହିଁ ସାରକଥା ହେବ । ମୁଁ ନିଶ୍ଚିତ ହେଲି । ତ ସିଧା ସିଧା କହୁନି କାହିଁକି? ସବୁ ଲୋକଙ୍କ ଦୃଷ୍ଟିର ପରିଧି ଭିତରେ ରହି ନିଜ କାମ ଧାମ ଛାଡ଼ି ଏତେକଥା ଶୁଣିବାକୁ ବେଳ କାହାର? 'କ'ଣ ଦରକାର?' ପଚାରିଲି । ତୋ ଦୁଃଖ କାହାଣୀ ଶୁଣି ଆନନ୍ଦ ନେଇଛି ଯେତେବେଳେ, ଏବେ କିଛି ମୂଲ୍ୟ ଦେବାରେ ବା ପଛଘୁଞ୍ଚା ଦେବି କେମିତି?

ମୋ ପ୍ରଶ୍ନର ଜବାବ ଦେଲାନି ସେ । ପୁଣିଥରେ ପଚାରିଲି, 'ବର୍ଗଡ଼ ଯିବ? ଝିଅକୁ ଦେଖିବା ପାଇଁ? ଗାଡ଼ିଭଡ଼ା ଦରକାର?' ଗାଡ଼ିଭଡ଼ା ଓ ଔଷଧ ଖର୍ଚ୍ଚ ଭିତରେ ପ୍ରଥମଟି ଶସ୍ତା ହେବ । ତେଣୁ ଜାଣିଶୁଣି ଔଷଧର ଉଲ୍ଲେଖ କଲିନି । ତା ବକ୍ତବ୍ୟକୁ ସଂକ୍ଷିପ୍ତ କରେଇବା ଥିଲା ପ୍ରଶ୍ନ ପଚାରିବାର ଅନ୍ୟ ଏକ ଉଦ୍ଦେଶ୍ୟ ।

-ନା, ଗାଡ଼ିଭଡ଼ା ଅଛି ।

-ନିଅ କିଛି । ମୂଲ୍ୟ ଦେବା ପାଇଁ ବଦ୍ଧପରିକର ମୁଁ ।

-ନା, ଅଛି' କହି ସେ ଚାଲିଗଲା । ଅଧିକ କହିବା ପାଇଁ ମୋତେ ସୁଯୋଗ ମିଳିଲାନି । ଅଧିକ କିଛି କହିବା ପାଇଁ ନଥିଲା ବି ମୋ ପାଖରେ । ମୋ କରୁଣା ମନୋଭାବରେ ଆହତ ହେବାର ସଂକେତଠାରୁ ଅଧିକ ଶୀଘ୍ର ଗାଡ଼ି ଚଢ଼ିବାର ତତ୍ପରତା ଏବଂ ଜଣଙ୍କ ଆଗରେ ମନକଥା କହିପାରିଥିବାର ଆଶ୍ୱସ୍ତି ଥିଲା ତା'ଠାରେ । ଡ଼ାକ୍ତରଖାନା ରହଣୀ ଭିତରେ ତା ସହ ଆଉ ଭେଟ ହୋଇନି । ସଉତୁଣୀ ଘରେ ତା ପହଞ୍ଚିବା ବେଳକୁ ଝିଅ ଭଲହୋଇ ଯାଇଥିଲା କି ଅନ୍ୟ ଝିଅମାନେ ବି ମଦୁଆ ବାପାଠାରୁ ମାଡ଼ଖାଇ ଗୋଡହାତ ଭାଙ୍ଗିଥିଲେ- ତାର କିଛି ଖବର ରଖିନି । ରଖିଥିଲେ ମୋ ଗଳ୍ପର କଳେବର ବୃଦ୍ଧିରେ ହୁଏତ ତାହା ବିଶେଷ ସାହାଯ୍ୟ ବି କରିଥାନ୍ତା । କିନ୍ତୁ ବୁଢ଼ୀ, ସ୍ତ୍ରୀଲୋକ ଭଳି ମଣିଷର ସଂପୂର୍ଣ୍ଣ ଜୀବନ କାହାଣୀକୁ କିଛି ପଇସା, ସାମୟିକ ଆନନ୍ଦ ଏବଂ ଗୋଟାଏ ଗଳ୍ପର ପରିଧି ଭିତରେ ଠେଲି ପେଲି ଭର୍ତ୍ତିକରିବା ଜନିତ ଅପରାଧବୋଧ ମୋତେ ଏତେ ଘାଣ୍ଟିଲା ଯେ, ମୁଁ ଏଣିକି ସେମାନଙ୍କଠାରୁ ଦୂରରେ ରହିଲି । ଗାଡ଼ିଭଡ଼ା ନେବା ପାଇଁ ମନାକରି ସ୍ତ୍ରୀଲୋକଟି ମୋତେ ଯେଉଁ ଚଟକଣା ମାରିଥିଲା, ତାର ଦରଦ ଅନେକ ଦିନ ଯାଏଁ ଉଣା ହେବାର କୌଣସି ଆଶା ନଥିଲା ।



# ଆତଙ୍କବାଦୀ

ଟୁକ-ଟୁକ-ଟୁକ । ଛାଇ ନିଦ ମୋର ଭାଙ୍ଗିଗଲା । ତକିଆ ତଳେ ଅନବରତ ଭାବେ ଚାଲିଛି ଟୁକ-ଟୁକ-ଟୁକ । ଘଡ଼ିର ଟିକଟିକରୁ ବେଶି, ବଢ଼େଇର ଢକ ଢକରୁ କମ । ଭାବିଲି କାଠପୋକ ହୋଇଥିବ । ସରକାରୀ ଘରର ଶସ୍ତା କାଠ ତିଆରି ଖଟ ଭିତରକୁ ପଶିବା ପାଇଁ କାଠ ପୋକଟିକୁ ବେଶୀ କଷ୍ଟ ବି କରିବାକୁ ପଡ଼ି ନଥିବ ।

ଲାଇଟି ଜାଳିଲି । ସବୁ ଚୁପ । ଲାଇଟି ବନ୍ଦ କଲି । ପୁଣି ଟୁକ-ଟୁକ-ଟୁକ । କଡ଼ ବଦେଳେଇଲି, ଯେମିତି କି ସେମିତି । ଗୋଡ଼ ପଟକୁ ମୁଣ୍ଡ କଲି । ସାମାନ୍ୟ ନୀରବତା । ପରେ ପୁଣି ଟୁକ-ଟୁକ-ଟୁକ । ଏଥର ଲାଇଟ ଜାଳି ଶେଯଟିକୁ ବିଛଣାରୁ ଉଠେଇ ଦେଲି । ସାଙ୍ଗରେ ତକିଆଟିକୁ ବି । ମୂଷାଟିଏ କାଳ ବିଳମ୍ବ ନ କରି ପଳାଇଲା । ଏଭଳି ଏକ ପରିସ୍ଥିତିର ମୁକାବିଲା ପାଇଁ ଯେମିତି ପୂର୍ବରୁ ସେ ପ୍ରସ୍ତୁତି ମଧ୍ୟ କରି ସାରିଥିଲା । ସାମାନ୍ୟ ଡେରିରେ ହେଉ ପଛେ, ଜଣା ପଡ଼ିଲା ଯେ ବାରମ୍ବାର ଟୁକ-ଟୁକ-ଟୁକ କରି ନିଦ ଭାଙ୍ଗୁଥିବା ଜନ୍ତୁଟି ମୂଷା ବ୍ୟତୀତ ଅନ୍ୟ କେହି ନୁହେଁ ।

ଖଟ ତଳକୁ ଦେଖିଲି । ତକିଆର ଅସଂଖ୍ୟ ସିମିଳି ତୁଳା ମକ୍ରାଜାଲରେ ଦୋଳି ଝୁଲୁଛନ୍ତି । ତକିଆରେ ହାତ ପଶିଲା ଭଳି ସୁଡ଼ଙ୍ଗଟିଏ । ୟା ପରେ ଶେଯର ପାଳି । ସବୁ ମୂଷାର କରାମତି । ତକିଆଟି ପାଇଁ ମୋର ଦୁଃଖ ନଥିଲା । ଘର ଯୋଗାଇବା ଅନୁଷ୍ଠାନ ଖଟ ଆଉ ମଶାରୀ ସାଙ୍ଗକୁ ଶେଯ ଏବଂ ତକିଆ ବି ଯୋଗାଇ ଥିଲେ । ମୋର ବହୁମୂଲ୍ୟ ନିଦ ଭାଙ୍ଗିବା ସହ ଯଦି ମୂଷାଟି ଆର୍ଥିକ କ୍ଷତି ସାଧିବାକୁ ଚାହିଁଥାଏ, ତେବେ ତା ଯୋଜନାର ଅର୍ଦ୍ଧେକ ପଣ୍ଡ ହେଲା । ତକିଆଦାତା ଅନୁଷ୍ଠାନକୁ ମନେ ମନେ ମୁଁ ସାଧୁବାଦ ଜଣାଇଲି ।

ବୋଧହୁଏ ମୂଷାଟିର ଆଗମନ ଆଜି ନୂଆ ନୁହେଁ । ନୋହିଲେ ଗୋଟାଏ ଦିନର ପରିଶ୍ରମରେ ଏତେ ଗୁଡ଼ାଏ ତୁଳାକୁ ସେ ତକିଆଚ୍ୟୁତ କରି ପାରି ନଥାନ୍ତା । ଗତ କେତେ ଦିନ ଧରି ଲଗାତର ଟୁକ-ଟୁକ-ଟୁକ କରି ଚାଲିଛି ତାହାହେଲେ ସେ । ବଦଳି, ଲମ୍ବା ଟ୍ରେନ ଯାତ୍ରା ସାଙ୍ଗକୁ ଘର ସଜଡ଼ା ଜନିତ କ୍ଳାନ୍ତି ଯୋଗୁଁ ମୁଁ ମୂର୍ଖ ତାର ଟେର ପାଇନି । ରୋଜ

ଖଟକୁ ନଯାଉଣୁ ଗଭୀର ନିଦରେ ମଜ୍ଜି ଯାଉଛି । ମଲା ହଜିଲା କିଛି ଜାଣି ପାରୁନି । କାଲି ପରିଚିତ ଝିଅ ଜଣକ ମୋର ବିବାହ ପ୍ରସ୍ତାବକୁ ରୋକଠୋକ ନାକଚ କରି ପଠାଇଥିବା ଚିଠିଟି ହସ୍ତଗତ ହୋଇ ନଥିଲେ, ହୁଏତ ଆଜି ବି କୁମ୍ଭକର୍ଣ୍ଣ ଭଳି ଶୋଇ ପଡ଼ିଥାନ୍ତି । କିଛି ଦିନ ଏମିତି ଚାଲିଲେ ଦିନେ ତକିଆ ନୁହେଁ, ନିଶ୍ଚୟ ମୂଷାଟି ଉପରେ ମୁଣ୍ଡ ରଖି ଶୋଇବାକୁ ପଡ଼ିଥାନ୍ତା । ଦୁଶ୍ଚିନ୍ତା ଯୋଗୁଁ ହେଉ ପଛେ ଶୋଇ ପାରିଲିନି ବୋଲି ସିନା ମୂଷାଟିକୁ ଆବିଷ୍କାର କରିହେଲା ।

ଘରର ଚାରିଆଡ଼େ ନଜର ଦେଲି । ଆହୁରି କାହା ଉପରେ ବି ତାର ଦୃଷ୍ଟି ପଡ଼ିଥାଇପାରେ । ଏଯାଏଁ କାଛ କଣା ହୋଇନି । ରନ୍ଧାଘର ନାଳି ହିଁ ରାସ୍ତାର କାମ କରୁଛି । ଘରେ ମୋର ଏବଂ ମୂଷାର ସାଧାରଣ ଖାଦ୍ୟ ଦ୍ରବ୍ୟ ଭିତରେ କେବଳ ବିସ୍କୁଟ ଆଉ ପାଉଁରୁଟି । ଟିଣ ଖୋଲିଲି । ସବୁ ଅତୁଟ ଅଛି । ଖାଦ୍ୟର ଅବସ୍ଥିତି କଥା ଏଯାଏଁ ଜାଣି ପାରିନି ହୁଏତ । ଅଥବା ମତେ ସତର୍କ ହେବାରୁ ବଞ୍ଚିତ କରିବା ପାଇଁ ଇଏ ତାର ଏକ ଚକ୍ରାନ୍ତ ବି ହୋଇପାରେ ।

ତକିଆଟିକୁ ତୁଳାଚ୍ୟୁତ କରି କି ଲାଭ ଅବା ସେ ପାଉଛି ଯେ? ନିଦ ଭାଙ୍ଗିଲା ପରେ ଗମ୍ଭୀର ହୋଇ ମୁଁ ମୂଷାଟି କଥା ଚିନ୍ତା କଲି । ତକିଆର ତୁଳା ଖାଲି କରି କ'ଣ କେବେ ସେ ନିଜ ପେଟ ଭର୍ତ୍ତି କରି ପାରିବ? ଅନ୍ୟର ନିଦରେ ବ୍ୟାଘାତ ଜନ୍ମାଇ କେବେ କ'ଣ ସେ ନିଜେ ସୁଖ ନିଦ୍ରା ଯାଇ ପାରିବ? ଅନ୍ୟ ସମ୍ପତ୍ତିର କ୍ଷୟକ୍ଷତି କରି କେବେ ସେ ନିଜ କ୍ଷତିର ପୂରଣ କରି ପାରିବ? କେବେ ନୁହେଁ । ଏତେ ଟୁକ-ଟୁକ କରି ସାମାନ୍ୟ ଦାନ୍ତର ବ୍ୟାୟାମ, କିଛିଟା ଆତ୍ମତୃପ୍ତି ବ୍ୟତୀତ ଅନ୍ୟ କ'ଣ ବା ଲାଭ ପାଉଛି ସେ? ସେଥିପାଇଁ କେତେ ବିପଦାପନ୍ନ ବି ନକରୁଛି ନିଜ ଜୀବନକୁ? କେବେ ନିଜ ଚାଲାକିରେ ଧରା ପଡ଼ିଲେ ମୃତ୍ୟୁ ଦଣ୍ଡରୁ କ'ଣ କିଛି ସେ ଊଣା ଦଣ୍ଡ ପାଇବ?

ପର ମୁହୂର୍ତ୍ତରେ ତାର ପ୍ରଶଂସା ବି କଲି । ବ୍ୟାୟାମ, ଆତ୍ମତୃପ୍ତି ଭଳି ଅମୂର୍ତ୍ତ, ଅବସ୍ଥାବ ଉପଲବଧି ପାଇଁ କେତେ ପରିଶ୍ରମ ବା ନ କରୁଛି ବିଚରା ମୂଷାଟି? ତାର ପ୍ରତିବଦ୍ଧତା, କାମନାରହିତ ପରିଶ୍ରମ, ଆଳସ୍ୟହୀନ ଦୈନନ୍ଦିନ ଜୀବନରୁ ପ୍ରକୃତରେ ଆମକୁ ଅନେକ କିଛି ଶିଖିବାର ଅଛି । ଏହି ଉପସଂହାରେ ପହଞ୍ଚିଲା ପରେ ମୁଁ ଲାଇଟ ବନ୍ଦ କରି ଆଉ ଥରେ ଶୋଇବାର ଉପକ୍ରମ କଲି ।

ଏବେ ପ୍ରସ୍ତାବ ନାକଚ କରିଥିବା ଝିଅଟି ବଦଳରେ ମୂଷାଟି କଥା କେବଳ ମନେପଡୁଥାଏ । ମୂଷାଟି ପୋଟଳ ଆକାରର । ବାଇଗଣ ଭଳି ହେବାର ସୁଯୋଗ ପାଇନି । ପାଉଁରୁଟି, ବିସ୍କୁଟର ଟିଣ ମିଳିଗଲେ ବାଇଗଣ ହେବାରେ ବା ତାକୁ କେତେ ଡେରି? ଗତ

କେତେ ଦିନର ପ୍ରତିବନ୍ଧକହୀନ ଟୁକଟୁକରେ ଉତ୍ସାହିତ ହୋଇ ନିଜ ବନ୍ଧୁ ପରିଜନଙ୍କୁ ବି ଏଠାକୁ ଆସିବାକୁ ନିମନ୍ତ୍ରଣ କରିପାରେ । ନା, ଖାଇବାକୁ ନ ପାଇଲେ କେବଳ ଶିମିଳି ତୁଳା ପାଇଁ କିଏ ଆସିବ? ସମସ୍ତେ କ'ଣ ୟା ଭଳି ଅନ୍ୟକୁ କଷ୍ଟ ଦେବାରେ ସୁଖ ପାଆନ୍ତି? ଅବଶ୍ୟ ପାଉଁରୁଟି, ବିସ୍କୁଟର ମଜା ପାଇଲେ କେହି ମନା କରିବେନି । ରନ୍ଧାଘରକୁ ଯାଇ ବିସ୍କୁଟ ଟିଣକୁ ପୁଣିଥରେ ଭଲ ଭାବେ ବଂଦ କଲି । ଅନ୍ୟ କିଛି ସଂଭବ ନ ହେଲେ ସୁବିଧା ଉଣ୍ଡି ମୂଷାଟି ଘରେ ମୋର ବଂଶ ବିସ୍ତାର ମଧ୍ୟ କରି ଦେଇପାରେ । ତା'ର କେଉଁ ପରିବାର ନିୟୋଜନର ଭୟ ଅଛି? ପରିବାର କଲ୍ୟାଣ ତ ତା'ର ପ୍ରଜନନରେ ।

କିଛି ବେଳର ନୀରବତା ପରେ ଛାଇ ନିଦ ବେଳକୁ ପୁଣି ସେଇ ଟୁକ-ଟୁକ । ମୋତେ ଶୋଇ ନ ଦେବା ବ୍ୟତୀତ ଅନ୍ୟ କୌଣସି ଲକ୍ଷ୍ୟ ନାହିଁ ତା ଜୀବନରେ । ଅନିଚ୍ଛା ସତ୍ତ୍ୱେ ମୂଷାଟି ଉପରେ ଭୀଷଣ ରାଗ ହେଲା । ତାର ପ୍ରତିବନ୍ଧତା, ଆଳସ୍ୟହୀନତାରୁ ମତେ କ'ଣ ମିଳିବ? କାଲି ଅଫିସରେ ଲମ୍ବା ଲମ୍ବା ହାଇ ମାରି, ସହକର୍ମୀଂକ ଆଗରେ, ଅପଦସ୍ତ ହେଲେ ମୂଷା କ'ଣ ଆସି ମୋ ପାଇଁ କୈଫିୟତ ଦେବ? କାରଣ ଦର୍ଶାଅ ନୋଟିସର ଶୀକାର ହେବି ଯଦି ଉଲ୍ଲିଖିତ ସ୍ଥାନରେ କ'ଣ ମୁଁ ମୂଷାଟିର ନାମ ସୁଦ୍ଧା ଉଚ୍ଚାରଣ କରି ପାରିବି? କଦାପି ନୁହେଁ । ବରଂ ମୂଷା ପରି କ୍ଷୁଦ୍ର ଜନ୍ତୁଟିଏ ମୋ ଭଳି ବିରାଟକାୟ ମଣିଷଟିକୁ ବିପର୍ଯ୍ୟସ୍ତ କରୁଥିବାର କେହି ଶୁଣନ୍ତି ଅଯଥା ହସମୁଣି ପ୍ରତିପାଦିତ ହେବି ।

ବିନା ପାଦ ଶବ୍ଦରେ ଲାଇଟ ଜଳାଇ ଶେଯଟିକୁ ପୁଣି ଥରେ ଧଡ୍ କରି ଉଠାଇ ଦେଲି । ମୂଷାଟି ପୂର୍ବବତ୍ ଦେ ଚମ୍ପଟ । ନିହାତି ରୂପେ ସେ ମୋଠାରୁ ବେଶି ଚାଲାକ । ରୀତିମତ ଉତ୍ପାତ କରିବା ପାଇଁ ଯେମିତି ଗରିଲା ସାଜିଛି । ସ୍ନେହ, ପ୍ରେମ, ବାୟୁ, ସମୟ ଭଳି ତାର ଅସ୍ତିତ୍ୱ ମୁଁ ଉପଲବ୍ଧି କରି ପାରୁଛି, ମାତ୍ର କବଜା କରି ପାରୁନି । ଭାରି ଅଜବ ସ୍ଥିତି ।

ଦୁର୍ବଳ ମନେକରି ମୂଷାଟି କେବଳ ମୋ ଉପରେ ଦାଉ ସାଧୁନି ତ? କେଜାଣି? ମୁଖ୍ୟାଳୟରେ ଏତେ ଲୋକ ଥିବା ସତ୍ତ୍ୱେ ଉଚ୍ଚାଧିକାରୀ ପୁଣି ତ ଦୁର୍ବଳ ମନେ କରି ମତେ ଏ ଅପନ୍ତରା ଜାଗାକୁ ପଠାଇଲେ, ସହରରେ ଏତେ ଯୁବକ ଥାଉଁ ଥାଉଁ ତ ପୁଣି ଅପାରଗ ବୋଲି ଝିଅଟି ମତେ ଧୋକା ଦେଲା । ମୂଷା ବା' କାହିଁ କରୁ ନଥିବ ସେମିତି?

ଭାବିଲି ଘରର ପୂର୍ବ ଅଧିକର୍ତ୍ତାଙ୍କ ପାଖକୁ ସକାଳେ ଯାଇ ସତ୍ୟାସତ୍ୟ ପଚାରିବି । ତାଙ୍କ ରହଣି ବେଳେ ମୂଷାର ଏ ଉତ୍ପାତ ଥିଲା ନା ଏବେ ନୂଆ ହୋଇ ଆରମ୍ଭ ହୋଇଛି? ପୁଣି ମନେ ପଡ଼ିଲା ପଦୋନ୍ନତି ପାଇ ଅଧିକାରୀ ଆଜିକାଲି ବଡ଼ ସରକାରୀ ଘରେ । ଅଧସ୍ତନ

କର୍ମଚାରୀଙ୍କ ତାଙ୍କ ସହ ମିଳାମିଶାକୁ ନିହାତି ନାପସନ୍ଦ କରୁଥିବେ । ଘରୋଇ କାମ ହାସଲ କରିବାର ସାଜିସ ବୋଲି ଆଶଙ୍କା କରୁଥିବେ । ଘରକୁ ଯିବା ସହଜ ନୁହେଁ ।

ଅବଶ୍ୟ ମୂଷା ଉତ୍ପାତରୁ ଦୁନିଆଁରେ କିଏ ତ୍ରାହି ପାଇଛି? ତାକୁ ଅକ୍ତିଆରରେ ରଖିବା ପାଇଁ କିଏ ଗଣେଷଙ୍କ ଭଳି ବାହନ କରିଛି, ତ ଆଉ କିଏ ନିଧି ବୁଢ଼ା ପରି ବିରାଡ଼ି ପୋଷିଛି, ବାଡ଼ି ଧରି ଗୋଡ଼ାଇଛି । ଯେତେ ଦିନ ଯାଏ ମଣିଷ ଅଛି, ତା ମୁଣ୍ଡ ତଳେ ଶିମିଳି ତୁଳାର ତକିଆ, ଆଉ ପିଠି ତଳେ ଗାଏ ମୋଟ ଶେଯ ଅଛି, ସେତେଦିନ ଯାଏ ମୂଷା ରହିବ, ତାର ଉତ୍ପାତ ରହିବ । ମୋ ଘରେ ମୂଷା ଉତ୍ପାତର କାରଣ ମୋର ଦୁର୍ବଳତା ନୁହେଁ, ମଣିଷ ସହ ତାର ପୁରୁଣା ଶତୃତା—ଏହି ଉପସଂହାର ବଳରେ ମୁଁ ନିଜକୁ ସାନ୍ତ୍ୱନା ଦେଲି ।

ବେଳକୁ ବେଳ ରାତି ବଢ଼ିବା ସଙ୍ଗେ ସଙ୍ଗେ ମୂଷା ଓ ମୋ ଭିତରେ ଶତ୍ରୁତା ମଧ୍ୟ ବଢ଼ି ଚାଲିଥାଏ । ତାକୁ ମାରିବା ଉଦ୍ଦେଶ୍ୟରେ ଘରେ ବିଦ୍ୟମାନ ଏକମାତ୍ର ଅସ୍ତ୍ର ଟେବୁଲ ୱେଟଟି ଭାଙ୍ଗି ଚୁରମାର ହେବା ପରେ ହଳେ ଚପଲ ବି ଦରଛିଣ୍ଡା ହେଲେ । ରାଗରେ କେତେବେଳେ ମୁଁ ମୂଷା ପରି ଦାନ୍ତ ଟୁକ୍-ଟୁକ୍ କଲି ତ ଆଉ କେତେବେଳେ ଏ ଅପନ୍ତରା ସହରକୁ ମତେ ବଦଳି କରିଥିବା ଅଧିକାରୀଙ୍କୁ ମା'ଭଉଣୀ ଶୋଧିଲି । ହେଲେ ଶାନ୍ତି ନାହିଁ?

'ଯାହାକରୁଛି କରୁ । ସକାଳ ପାହିଲେ ତାର ମଜା ବାହାରିବ ' କହି ଅକସ୍ମାତ ଗଜୁରି ଥିବା ପେଟ ବିମାରକୁ ଡାକ୍ତର ନ ଆସିବା ଯାଏଁ ସେମିତି ରହିବାକୁ ଅନୁମତି ଦେଲା ଭଳି ଶେଷରେ ଚୁପ୍ ରହିବାକୁ ସ୍ଥିରକଲି । ମଝିରେ ଟୁକ୍ ଟୁକ୍ ଅସହ୍ୟ ହେଲେ ଲାଇଟ ଜଳାଇ ଶେଯ ଟାଣି ଦିଏଁ ତ ପୁଣି କିଛି ବେଳ ପରେ କାଳେ ନିଦ ଆସିଯାଇପାରେ ଭାବି ଲାଇଟ ବନ୍ଦ କରେ । ପ୍ରତିଜ୍ଞା କରେ କାଲି ସର୍ବପ୍ରଥମେ ମୂଷା ଉନ୍ମୋଳନ ତା ପରେ ବାକୀ ଯାହା ।

ସକାଳେ 'ମୂଷାମରା' ଅନ୍ୱେଷଣରେ ବଜାର ଗଲି । ବଜାରରେ ବା ମୋର କେତେ ଦିନର ଜଣାଶୁଣା । ଜଣେ ଅଣ୍ଡା ଦୋକାନୀ ସାଙ୍ଗରେ ହିଁ ଯାହା ପରିଚୟ । ଦୋକାନୀ ଜଣକ ମୋ ପରି ଅଣ-ସ୍ଥାନୀୟ ଭାଷୀ ତଥା ସ୍ୱଳ୍ପ ଭାଷୀ ହୋଇଥିବାରୁ ଆମ ଭିତରେ ପରିଚୟ ବେଶ ଚଳନୀୟ କହିଲେ ଚଳିବ । ନିୟମିତ ଭାବେ ତାଙ୍କଠାରୁ ଅଣ୍ଡାନିଏ । ପଚାରିବାରୁ ସାମାନ୍ୟ ହସିଦେଇ କହିଲେ, ତାଙ୍କ ପାଖରେ ନାହିଁ । ମତେ ବି ଜଣା ସେତକ । ତାଙ୍କର ଅଣ୍ଡା ବେପାର ସେ କାହୁଁ ରଖିବେ ମୂଷାମରା? ନିର୍ଦ୍ଦିଷ୍ଟ କେଉଁଠି ମିଳିବ କହିବେ ଆଶାକରି ପଚାରିଥିଲି । ସେତକ ସେ ନିଜ ତରଫରୁ ଆଗଭର ହୋଇ ନ କହିବାରୁ ମୁହଁ ଖୋଲି ପଚାରିଲି, 'କେଉଁଠି ମିଳିବ?' ଏଥର ବି ସାମାନ୍ୟ ହସ ଏବଂ ତାକୁ ଅନୁସରଣ କରି ସଂକ୍ଷିପ୍ତ ଉତ୍ତରଟାଏ, 'କହି ପାରିବିନି ।' ଦୋକାନୀ ଉପରେ ମୋର ବିରକ୍ତି ଆସିଲା ।

ନିୟମିତ ଗ୍ରାହକ ଜଣକୁ ଯଦି ଭଲ ଦୁଇ ପଦ କହି ନ ପାରିଲି କି ଲାଭ ମୋର ତୁମ ସହ ସଂପର୍କ ରଖି? ମନେ ମନେ ଅଣ୍ଡା ଦୋକାନୀକୁ ପଚାରିଲି ଏବଂ ଏଣିକି ଅନ୍ୟ କାହାଠାରୁ ଅଣ୍ଡା ନେବାକୁ ନିଷ୍ଚିତ କଲି । ଏଥିରୁ ତ ଭଲ ପ୍ରଗଳ୍‌ଭ ବେପାରୀ, ନ ପଚାରୁଣୁ ସବୁ କହିଯିବେ ।

ଛୋଟ ସହର । ସର୍ବମୋଟ ଚାଳିଶ ପଚାଶଟି ଦୋକାନ । ସେ ଭିତରେ ଜୋତା, କପଡ଼ା, ପାଉଁରୁଟି, ବହିର କେତୋଟି ଦୋକାନକୁ ବାଦ ଦେଇ ପ୍ରାୟ ଅଧାଅଧି ଦୋକାନରେ ପଚାରିଗଲି । କିଏ କହିଲା, ନାହିଁ ତା ପାଖରେ । କିଏ କହିଲା କହି ପାରିବନି କେଉଁଠି ମିଳିବ । କିଏ ଅଣ୍ଡା ଦୋକାନୀ ପରି ହସିଲା କେବଳ । ମୂଷାମରା ମାଗି ଅପରାଧ କରିଛି ଯେମିତି ମୁଁ । ମୂଷା ନୁହେଁ, ଆତୁର ହୋଇ ମଣିଷମରା ଖୋଜୁଛି ଯେମିତି । କୌଣସି ଦୋକାନୀର ଆଗ୍ରହ ନାହିଁ ପ୍ରଶ୍ନ ଶୁଣିବାରେ, ସନ୍ତୋଷ ଜନକ ଉତ୍ତର ବା କାହିଁ ମିଳିବ ତାଙ୍କଠାରୁ? ବିରକ୍ତ ହୋଇ ମୁଁ ଅଫିସ ବାହାରିଲି ।

ଅଫିସ କାମରେ ମନ ଲାଗୁ ନଥାଏ । ଅନିଦ୍ରା ଯୋଗୁଁ ଆଖି ଜଳୁଥାଏ । ଆଖି କେତେ ଲାଲ ହୋଇଛି ଦେଖିବା ପାଇଁ ଦୁଇ ଚାରି ଥର ବାଥରୁମ ଯାଇ ଦର୍ପଣ ଆଗରେ ବି ଛିଡ଼ା ହେଲି । ଆତ୍ମଦୟାରେ ମନଟା ଭରି ଉଠୁଥାଏ । କେହି ଦେଖିଲେ ଭାବିବେ କାଲିର ଚିଠି ଯୋଗୁଁ ମୁଁ ରାତି ସାରା ଶୋଇ ପାରିନି । ନିଜ ଖୋଲା ମନୋଭାବର ପ୍ରମାଣ ଦେବାକୁ ଯାଇ ଝିଅଟି କଥା ମୋର ଅଫିସରେ କହିବାର ନଥିଲା । ଯଦିବା କହିଲି ପ୍ରସ୍ତାବ ନାକଚ ବିଷୟକ ସତ୍ୟଟିକୁ କିଛି ଦିନ ଲୁଚେଇ ରଖିଥିଲେ ବା କି କ୍ଷତି ଥିଲା? ଭବିଷ୍ୟତରେ ସବୁ କଥା ମାପିଚୁପି କହିବାକୁ ପଡ଼ିବ । ଆଉ ଛାତ୍ର ଜୀବନ ନାହିଁ ଯେ ଗପିଲେ ଲୋକ ଖୁସି ହେବେ ।

ସୁବିଧା ଉଣ୍ଡି ଚୌକୀରେ ଛାଇ ନିଦ ମାଡ଼ି ଆସିଲେ ସ୍ୱପ୍ନରେ କେବଳ ମୂଷାଟି ଦେଖାଯାଉଥାଏ । କେତେବେଳେ ପେପର ୱେଟର ଆଘାତରେ ରକ୍ତାକ୍ତ ହୋଇ ପଡ଼ିଛି ତ ଆଉ କେତେବେଳେ ଟୁକ୍-ଟୁକ୍ ବଦଳରେ ରକ୍ତବୀର୍ଯ୍ୟ ପରି ଦ୍ୱିଗୁଣ ଉତ୍ସାହରେ ହାଃ ହାଃ କରୁଛି ।

ଅଫିସରେ କାହାକୁ କହିହେବ ମୂଷା ଉପଦ୍ରବ କଥା ? ପ୍ରେମିକା ଉପଦ୍ରବ କଥା ଶୁଣିବାକୁ ସମସ୍ତେ କାନ ଡେରିଥାନ୍ତି । ମୂଷା ବେଳକୁ କାହିଁ ଦେଖା ଦେବ କିଏ? ତଳିଆ କର୍ମଚାରୀ ଶୁଣନ୍ତେ । ହେଲେ ନିଜ ପଦବୀର ବି ତ କିଛି ଗାମ୍ଭୀର୍ଯ୍ୟ ଅଛି ।

କାଣ୍ଡଟି ପିଅନ ଘରେ ହୋଇଥିଲେ କେତେ ଆରାମରେ ସେ ଅନ୍ୟମାନଙ୍କୁ କହି ପାରନ୍ତାଣି । ମୂଷାଭକ୍ଷୀ ସାଥି ପିଅନ କେତେ ଜଣ ମୂଷାଟିକୁ ମାରିବା ପାଇଁ ଏଭିତରେ

ଆଗଭର ବି ହୋଇ ପଡ଼ନ୍ତେଣି । ଆଉ ମୁଁ? ନୋହିଲା ପଦବୀ ଯେ ଡ଼ାକି ପାରିବିନି କାହାକୁ- ଆସ ମୂଷା ଉତ୍ପାତରୁ ମତେ ରକ୍ଷାକର ।

ସମସ୍ତ ଅଫିସ କର୍ମଚାରୀ ଗହଣରେ ଏବେ ପିଅନଟି କେବଳ ମତେ ସହୃଦୟ ଭଳି ମନେ ହେଲା । ସେ ହିଁ ଭଲ ଭାବେ ବୁଝି ପାରିବ ମୋର ଦୂରବସ୍ଥା । ପାଖକୁ ଡାକିଲି । ଦମ୍ଭ ହେଲାନି । ରାଷ୍ଟ୍ର କିରଦିଏ ଯଦି କଥାଟି? ମୂଷା ପରି ମତେ ହଇରାଣ କରିବା ଲକ୍ଷ୍ୟ ନେଇ ନ ହେଉ, ମୋ ସହ ତାର ଅନ୍ତରଙ୍ଗତା ପ୍ରମାଣ କରିବା ପାଇଁ । କାଲିଠାରୁ ଅଫିସରେ ତ ମୋର ନାଁ 'ମୂଷା ଅଫିସର' ହୋଇଯିବ । କର୍ମଚାରୀ ୟୁନିୟନର ପ୍ରଚାର ପତ୍ରରେ ବେଶ ଖାପ ବି ଖାଇବ ଶବ୍ଦଟି । ଧର୍ମଘଟ ହେଲେ ମୁଖ୍ୟାଳୟରେ ଦୁର୍ନାମ ରଟିବ, 'ସାମାନ୍ୟ ମୂଷାଟିକୁ ନିୟନ୍ତ୍ରଣରେ ରଖି ପାରୁନଥିବା ମୂଷା ଅଫିସର ବା ଅବସ୍ଥା ସଂଭାଳିବ କ'ଣ?' ନା ୟାଠାରୁ ଶହେ ଗୁଣ ଭଲ ମୂଷା ଉତ୍ପାତ ସହିବା । ଅଗତ୍ୟା ଚା ଆଣିବାକୁ କହି ପିଅନକୁ ବିଦା କଲି ।

ସେଦିନ ମୂଷାମରା ମିଳିବାର ସମ୍ଭାବନା ଆଉ ଦେଖାଗଲା ନାହିଁ । ନିରାଶ ହୋଇ ସନ୍ଧ୍ୟାରେ ଘରକୁ ଫେରିଲି । ଅଫିସରୁ ଫେରି ଆରାମ କରିବାର କୌଣସି ଆଗ୍ରହ ନଥାଏ । ଛାଡ଼ପତ୍ର ପାଇଁ ଆବେଦନ କରିଥିବା ପତି ଭଳି ମୂଷାଟି ଭୟରେ ମୁଁ ଖଟ ଠାରୁ ଦୂରେଇ ରହୁଥାଏ । କିନ୍ତୁ ରାତି ଅନେକ ହେବା ପରେ ଖଟକୁ ନ ଯିବାର ଆଉ ଉପାୟ ନଥିଲା । କାଲିଠାରୁ ଆଜିର ଅବସ୍ଥା ଆହୁରି ଗୁରୁତର । ମୂଷାଟି ଖାତିର କରୁନି ଆଉ । ବିଛଣା କାଢ଼ି ଦେଲେ ମନ ନ ଥାଇ ଧୀରେ ଧୀରେ ଯାଉଛି । ପେପର ୱେଟ ଭାଙ୍ଗିଲା ପରେ ଆଉ କିଛି ନୂଆ ଅସ୍ତ୍ର ଆଣି ଆସିଛି, ନା କେବଳ ଠୁଙ୍କାଟାରେ ତାକୁ ଘଉଡ଼ିବା ପାଇଁ ଖେଯ, ତକିଆ କାଢୁଛି ଜାଣିବା ପାଇଁ ବେଳେ ବେଳେ ବଡ଼ ବଡ଼ ଆଖି କରି ଦେଖୁଛି । ହୁଏତ ସେ ବି ଉପାୟ ପାଞ୍ଚୁଛି-ମୋର ବାରମ୍ବାର ଲାଇଟ ଜାଳିବା, ବିଛଣା କାଢ଼ିବାଟା ବନ୍ଦ କରିବା ପାଇଁ ତାକୁ କିଛି କରିବାକୁ ପଡ଼ିବ । ମୋର ଭୟ ହେଲା ।

ଆଉ ରକ୍ଷା ନାହିଁ । ମହତ ଯାଉପଛେ କାଲି ଅଫିସରେ କଥାଟିକୁ ରାଷ୍ଟ୍ର କରିଦେବାକୁ ପଡ଼ିବ । ନୋହିଲେ ପରେ ହୁଏତ ଅନୁଷ୍ଠାନବାଲା ଖେଯ ତକିଆ ଭର୍ତ୍ତି ମାଗି ପାରନ୍ତି । ମୋର ବିରସ ଭାବ ଦେଖି କିଏ କ'ଣ ଆଶଙ୍କା ମଧ୍ୟ କରି ପାରନ୍ତି । ଅଫିସରେ ସମସ୍ତେ ମିଶି ଚିନ୍ତା କଲେ ମୂଷା ଉନ୍ମୋଳନର ଉପାୟ ମିଳି ଯିବାର ବି ସମ୍ଭାବନା ଅଛି ।

ପରଦିନ ଅଫିସରେ କଥାଟିକୁ ରାଷ୍ଟ୍ର କରିଦେବାର ଯଦିଓ ସାହସ ଯୋଗାଡ଼ କରି ପାରିଲିନି, ତଥାପି ଜଣେ ସମବୟସ୍କ ତଥା ସମ-ପଦବୀଧାରୀକୁ ଲାଜ ଭୟ ଛାଡ଼ି ସବୁ

ଖୋଲି କହିଲି । ସବୁ ଶୁଣିବା ପରେ ଅଧିକାରୀ ଜଣକ ନିଜର ବିନା ସାଇଲେନ୍‌ସରବାଲା ସ୍କୁଟରର ଭଳି ପାଟିଟାକୁ ଆବଶ୍ୟକତା ଠାରୁ ଅଧିକ ବଡ଼ କରି ପଚାରିଲେ, 'ଆପଣ ମୂଷାଟିକୁ ମାରିବେ କାହିଁକି?' ମୁଁ ଆଶ୍ଚର୍ଯ୍ୟ ହେଲି । ଏତେ ବେଳ ଯାଏ ତାହେଲେ ଲୋକଟି କିଛି ଶୁଣୁ ନଥିଲା । ବିରକ୍ତ ହୋଇ ମୁଁ ଚୁପ୍ ରହିଲି । ନିରୁତ୍ସାହ ନ ହୋଇ ସେ କହିଲେ, 'ମୂଷା ହେଲା ଭାରି ପ୍ରତିଶୋଧ ପରାୟଣ ଜୀବ । ତାକୁ ମାରି ଆପଣ ତାର ଉତ୍ପାତକୁ ବନ୍ଦ କରି ପାରିବେ ନାହିଁ । ବରଂ ବିସ୍କୁଟ ପାଉଁରୁଟି ଦେଇ ତାକୁ ବଶ କରନ୍ତୁ ।' ଭଦ୍ରବ୍ୟକ୍ତି ଜଣକ ନିଜେ କୁଆଡ଼େ ଗତ କେତେ ବର୍ଷ ହେଲା ବିଭିନ୍ନ ଖାଦ୍ୟଦ୍ରବ୍ୟ ଦେଇ କେତୋଟି ମୂଷାଙ୍କୁ ବଶ କରିଛନ୍ତି । ପେଟ ପୁରିବାରୁ ତକିଆ, ଶେଯ ଭଳି ସୂକ୍ଷ୍ମାତିସୂକ୍ଷ୍ମ ବସ୍ତୁ ପ୍ରତି ମୋଟା ବୁଦ୍ଧିଆ ମୂଷାର ଧ୍ୟାନ ଯାଏନାହିଁ । ଏବେ ତ ଏମିତି ହେଲାଣି ଯେ ଆବଶ୍ୟକ ହେଲେ ଅର୍ଥାତ ସେ ଆଦେଶ ଦେଲେ, ତାଙ୍କ ମୂଷାମାନେ ପଡ଼ୋଶୀ ଘରେ ଉତ୍ପାତ ବି କରି ଆସନ୍ତି ମଝିରେ ମଝିରେ ।

ଭଦ୍ରବ୍ୟକ୍ତିଙ୍କ ଉକ୍ତି ଶୁଣି ମୋ ମନରେ ଅନେକ ପ୍ରଶ୍ନ ଉଙ୍କି ମାରିଲା । ତାଙ୍କର ପାଟି ଭଳି ମୁଣ୍ଡଟି ବି କ'ଣ ସାଇଲେନସ୍‌ରହୀନ? କଥାଟି ଯଦି ସତ ହୋଇଥାଏ, ମୋ ଘରେ ଉତ୍ପାତ କରୁଥିବା ମୂଷାଟି କଣ ତାଙ୍କ ଦ୍ୱାରା ପ୍ରେରିତ? ହୁଏତ ଯା ବି ହୋଇପାରେ ଯେ, ମୂଷା ଭଳି ଆବଶ୍ୟକତା ଠାରୁ ବେଶୀ ଚାଲାକ ସେ । ନିଜ ଘରର ମୂଷା ଉନ୍ମୋଳନ ପରେ ଅନ୍ୟମାନଙ୍କୁ ମୂଷାମରା ଉପାୟ ଦେଇ ସୁଖି କରିବାକୁ ଚାହାନ୍ତି ନାହିଁ ।

ମୁଁ ଆଉ ଜଣେ ସମ-ପଦବୀଧାରୀଙ୍କ ସହ ପରାମର୍ଶ କଲି । ସେ ମୂଷା ମାରିବା ସପକ୍ଷରେ । କିନ୍ତୁ ତାଙ୍କ ମତରେ ମୂଷା ମାରିବା କୁଆଡ଼େ ଅସମ୍ଭବ । ପରାମର୍ଶ ଦେଲେ, ରାତିସାରା ଗୋଟେ ଲାଇଟ୍ ଜାଳି ରଖିବାକୁ । କୁଆଡ଼େ ମୂଷା ଭାବିବ, ମୁଁ ସତର୍କ ଅଛି । ବିଛଣା ତଳେ ପଶିବାକୁ ଭୟ କରିବ ।

ଲାଇଟ ଜାଳି ଶୋଇବାର ମୋର ଅଭ୍ୟାସ ନଥିଲା; ଆପତ୍ତି ବି ନଥିଲା । ଲାଇଟ ଜାଳିବାରୁ ପ୍ରଥମେ ନିଦ ହେଲା ନାହିଁ; ମୂଷା ବି ଆସିଲା ନି । ଅଭ୍ୟାସ ହେଲେ ବଳେ ନିଦ ଆସିଯିବ । ପ୍ଲାଟ ଫର୍ମରେ ତ ପୁଣି ଲୋକ ନିଘୋଡ଼ ନିଦରେ ଶୋଉଛନ୍ତି । ମୁଁ ନିଜକୁ ବୁଝାଇଲି । ସତକୁ ସତ କିଛି ଦିନ ପରେ ଆଲୁଅରେ ଶୋଇବା ମୋର ଅଭ୍ୟାସରେ ପରିଣତ ହେଲା । କିନ୍ତୁ ଦୁର୍ଭାଗ୍ୟକୁ ସେତେବେଳକୁ ମୂଷାଟି ବି ଅଭ୍ୟସ୍ତ ହୋଇ ସାରିଲାଣି । ଲାଇଟ ଜଳୁଛି, ମୁଁ ଶୋଇଛି, ସେ ତାର ଟୁକ୍-ଟୁକ୍ କରୁଛି । ଯେଉଁ ଅବସ୍ଥାକୁ ସେଇ ଅବସ୍ଥା ।

ଏ ଆଡ଼େ ଅଫିସରେ ମୂଷା କଥା କହିବା ପର ଦିନଠାରୁ ଆଉ ଏକ ସମସ୍ୟା ସୃଷ୍ଟି

ହେଲା । ଅଫିସରେ ନପହଞ୍ଚୁଣୁ ରୋଜ ଜଣ ଜଣ କରି ସମସ୍ତେ ମୋତେ ଦେଖା କଲେ ଏବଂ ଗତ ରାତିର ମୂଷାର ଗତିବିଧି କଥା ପଚାରିଲେ । ଜିଜ୍ଞାସୁଙ୍କ ମଧ୍ୟରେ ସହୃଦୟଙ୍କ ସଂଖ୍ୟା ଅତି ନଗଣ୍ୟ । ଅଧସ୍ତନ କର୍ମଚାରୀମାନେ ପଚାରୁଥିଲେ, ଅନ୍ତରଙ୍ଗ ହେବା ଆଶାରେ, ଓ ସମପଦବୀଧାରୀମାନେ ପଚାରୁଥିଲେ ମୋର ମଜାକ୍ ଉଡ଼େଇବା ମତଲବରେ । ଶେଷରେ ଆଜ୍ଞାକାରୀ ପିଅନଟି ମଧ୍ୟ ମୋର ବିରୋଧୀଙ୍କ ସହ ହାତ ମିଳାଇଲା । ମୋର ଉପସ୍ଥିତିରେ ଅନ୍ତରଙ୍ଗ ହେବାର ଚେଷ୍ଟା କରି, ଅନୁପସ୍ଥିତିରେ ମୋ ଦୂରବସ୍ଥାର ନାଟକୀୟ ଅନୁକରଣ କଲା, ଛିଃ ।

ଲାଇଟ ଜାଳି ଶୋଇବା ପରି ଉତ୍ତର ଦେବାରେ ମଧ୍ୟ କ୍ରମଶଃ ମୁଁ ଅଭ୍ୟସ୍ତ ହୋଇଗଲି । ବିରକ୍ତି ଦେଖାଇବା ଅର୍ଥ ଆହୁରି ଅପଦସ୍ତ ହେବା । ରୋଜ ପ୍ରତ୍ୟେକଙ୍କୁ ଅଲଗା କରି ଉତ୍ତର ଦେବାରୁ ମୁକ୍ତି ପାଇବା ପାଇଁ ଭାବିଲି ଟେବୁଲ ଆଗରେ ହାତଲେଖା ବୋର୍ଡଟାଏ ଝୁଲାଇ ଦେବି । ଶୀର୍ଷକ ହେବ 'ଗତ ରାତିରେ ମୂଷା ଉତ୍ପାତର ବିବରଣୀ ।' ଅନ୍ତତ ଦିନସାରା ଅଫିସରେ ବଜର ବଜର ହେବାକୁ ପଡ଼ିବ ନାହିଁ । ଦିନକୁ ଦିନ ଅଫିସ, ଘର, ବଜାର- ସବୁଠି ଜୀବନଟା ଦୁର୍ବିସହ ମନେ ହେଲା ।

ଦିନେ ସକାଳେ ମୋର ପଡ଼ୋଶୀ ଆସି ପଚାରିଲେ, 'ଆପଣଙ୍କ ଘରେ କ'ଣ ମୂଷା ଅଛି?'

ଉତ୍ତରରେ ମୁଁ ଓଲଟା ପ୍ରଶ୍ନ କଲି, 'କାହିଁକି?'

- ମୋର ପୁଅ ସକାଳେ ତାକୁ ଆପଣଙ୍କ ଘର ଆଡ଼େ ଆସୁଥିବାର ଦେଖିଲା ।

- ଓ?

- ଗତ କେତେ ଦିନ ହେଲା ଆମ ଘରୁ ଟମାଟୋ, ଧନିଆଁ ପତ୍ର ସବୁ ଖାଇ ଯାଉଛି ।' ତୁମ ଗାଈ ଆମ ବାଡ଼ିର ଶାଗ ଖାଇଗଲା ଭଳି ପଡ଼ୋଶୀଙ୍କ ଅଭିଯୋଗ ।

ମୋର ଅନେକ କିଛି କହିବା ପାଇଁ ଇଚ୍ଛା ଥିଲା, କିନ୍ତୁ ଭଦ୍ରତା ରକ୍ଷା ନାଁରେ ଚୁପ୍ ରହିଲି । ପଡ଼ୋଶୀ ବି ମୋ ଠାରୁ କିଛି ଶୁଣିବାର ଆଶା ନରଖି ଦୁମଦୁମ କରି ଚାଲିଗଲେ ।

ସେହିଦିନ ରାତିରେ ସ୍ଥିର କଲି, ନିକଟସ୍ଥ ସହରକୁ ଯାଇ ମୂଷାମରା ଆଣିବି । ପରଦିନ ଗଲି ମଧ୍ୟ । ହେଲେ ସେଠି ବି ସେଇ ସମସ୍ୟା । ଯାହାକୁ ପଚାର କହିଲା, ନାହିଁ । ବେଶି ପଚାରିଲେ ଉତ୍ତର ମିଳିବ, 'କହି ପାରିବିନି କେଉଁଠି ମିଳିବ ।' ଧର୍ମଭୀରୁଗୁଡାକ । ଦୁନିଆଁ ଯାଇ କାହିଁ କେଉଁଠି ପହଞ୍ଚିଲାଣି, ଏମାନେ ମୂଷାଟିଏ ମାରିଲା ବେଳକୁ କେତେ ବାଛ ବିଚାର ।

ମନେ ପଡ଼ିଲା, ଦୋକାନୀ ବୁଝି ପାରୁ ନଥାଏ ଯଦି? ନା, ପ୍ରଥମେ ସ୍ଥାନୀୟ ଭାଷାରେ ମୂଷାର ପ୍ରତିଶବ୍ଦ ମତେ ଜାଣିବାକୁ ପଡ଼ିବ । ମୁଁ ଆଗକୁ ବଢ଼ିଲି । ମନେ ମନେ 'ମୂଷାମରା' ପରିବର୍ତ୍ତେ ଗହଳି ନଥିବା ଦୋକାନଟାଏ ଖୋଜୁଥାଏ, ଯେଉଁଠି ମନ ଖୋଲି ମୂଷା କ'ଣ ମୁଁ ବୁଝାଇ ପାରିବି, ଯେଉଁଠି ବୁଝିବା ପାଇଁ ଦୋକାନୀ ପାଖରେ ସମୟ ଥିବ ଏବଂ ବୁଝେଇବା ବେଳେ ଦୋକାନରେ ଆଉ ଗ୍ରାହକ ନଥିବେ ।

କିଛି ଦୂର ଗଲା ପରେ ଦେଖିଲି ଗୋଟାଏ ଦୋକାନରେ ଭିଡ଼ ନାହିଁ । ଟିଣ, କାଚ ବନ୍ଧେଇ ଭଗବାନ ଫଟୋ ଉପରର ପରସ୍ତ ପରସ୍ତ ଅଳ୍ପ ଏବଂ ସାଜସଜ୍ଜା ନାଁରେ ଝୁଲୁଥିବା ରଙ୍ଗ ବେରଙ୍ଗର ପାଣି ଭର୍ତ୍ତି ଫ୍ୟୁଜ ବଲ୍‌ବକୁ ଦେଖିଲେ ଅନୁମାନ କରି ହେବ ଯେ ଆଗତ ଭବିଷ୍ୟତରେ ଭିଡ଼ ହେବାର ସଂଭାବନା ବି ନାହିଁ ସେଠାରେ । ତେଣୁ ଦୋକାନୀ ସ୍ଥାନରେ ସାନ ପିଲାଟିଏ ବସିଛି । ହୁଏତ ତାକୁ ବସେଇ ଦିଆଯାଇଛି ଜୋର ଜବରଦସ୍ତ ମୁଗଫଳି ଆଟର ପୁତୁଲା ଭଳି । ଏହାଠାରୁ ବେଶି ସୁବିଧା ଜାଗା ଆଉ କେଉଁଠି ମିଳିବ ନାହିଁ । ଦୋକାନକୁ ଚାଲି ଖଣ୍ଡିଆ ସ୍ଥାନୀୟ ଭାଷାରେ ପଚାରିଲି, 'ମୂଷାମରା ଅଛି ?'

ପିଲାଟିର ସଂକ୍ଷିପ୍ତ ଉତ୍ତର, 'ନା ।'

ପୁଣି ପଚାରିଲି, 'ବୁଝି ପାରୁଛ ତ ମୂଷା ମାନେ କଣ ?'

- ହଁ ।

- କ'ଣ?' ନିଜକୁ ଯଥାସାଧ୍ୟ କୋମଳ କରୁଥାଏଁ ନିଜକୁ ।

ଏହାର ଉତ୍ତରରେ ପିଲାଟି ହସି ଦେଲା । ଅର୍ଥାତ୍ ଉତ୍ତର ନାସ୍ତିସୂଚକ ।

ତାର ଚାଲାକି ଦେଖି ମୋର ରାଗ ହେବା କଥା । କିନ୍ତୁ ଅନୁମାନ ସତ ହୋଇଥିବାରୁ ରାଗିବା ପରିବର୍ତ୍ତେ ଖୁସି ହେଲି ଏବଂ ଆହୁରି କୋମଳ ସ୍ୱରରେ ତାକୁ ବୁଝାଇଲି—ଧାନ ଖାଏ ।

ପିଲାଟି କହିଲା, 'ଗାଈ ।'

ମୁଁ ଡରିଗଲି । ବୟସ୍କ କେହି ଶୁଣିଲେ ଗୋହତ୍ୟା ଅପରାଧରେ ଧରିନେବ ମତେ ।

- ନା, ନା, ତୁମ ଦୋକାନରେ ବି ଥାଏ ।

- ନା, ଆମ ଦୋକାନରେ ନାହିଁ ।' ମୋଠାରୁ ତ୍ରାହି ପାଇବା ପାଇଁ ତାର ଏ' ବି ଏକ ଉପକ୍ରମ ।

ମୂଷାର ଆକାର ଦର୍ଶାଇବାକୁ ଯାଇ ମୁଁ ହାତଟିକୁ ବାଟି ଆକୃତିର କରି କହିଲି 'ଏମିତି ଛୋଟ ଛୋଟ' । ବାଟି ଆକୃତିର ହାତକୁ ଦୋକାନର ଟିଣ ଡବାଗୁଡ଼ିକ ଉପରେ ଝୋଟି

ଦେଲା ପରି କରି କହିଲା, 'ଏମିତି ଚାଲେ ।' ଏଥିରେ ବି ନ ବୁଝିବାରୁ କହିଲି, ବିସ୍କୁଟ ପାଉଁରୁଟି ଖାଏ । ତାକୁ ପୁଣି ବିଲେଇ ଖାଏ । (ସ୍ଥିର କଲି ଆଜି ଯଦି ବିଫଳ ହୁଏ ତେବେ ଫେରିଲା ପରେ ବିଲେଇଟାଏ ପୋଷିବି) ଭୟ-ଏ ଭିତରେ କେବଳ ଆର ଦୋକାନୀ ଆସି ନ ଯାଉ । ଶେଷରେ ପିଲାଟି ବି ବୁଝିଗଲା 'ନିଗୁନି, ଟମାଟୋ ଖାଏ ।' ତାର ସ୍ୱରରେ ଦୃଢ଼ତା, ଆଖିରେ ବିଶ୍ୱାସର ଝଲକ ଦେଖି ମୁଁ ବି ନିଶ୍ଚିତ ହେଲି ଯେ ଜନ୍ତୁଟି-ନିଗୁନି ।

ପଚାରିଲି, 'ଏବେ କେଉଁଠି ମିଳିବ?'

ଉତ୍ତର ଦେଲା ' କ୍ଷେତରେ ।'

- ନା, ନା, ନିଗୁନି ନୁହେଁ, ନିଗୁନିମରା ।

- ଜ୍ୟୋତି ଷ୍ଟୋର ।

ହାତ ପାପୁଲିରେ ଜ୍ୟୋତି ଷ୍ଟୋର ଲେଖି ପିଲାଟିକୁ ଧନ୍ୟବାଦ ଦେଲି । ଆଜିର ଯାତ୍ରା ଅଧା ସଫଳ ହେଲା ଭଳିଆ ଲାଗୁଥାଏ । ବ୍ୟଗ୍ର ହୋଇ ଜ୍ୟୋତି ଷ୍ଟୋର ଖୋଜୁଥାଏ ଏବେ ।

କୋଡ଼ି, କୁରାଢ଼ି, ହାତୁଡ଼ିର ବିରାଟ ଦୋକାନ-ଜ୍ୟୋତି ଷ୍ଟୋର । ସାମନାରେ ମାଳ ମାଳ ହୋଇ କୁକୁର ବନ୍ଧା ଚେନ ବି ଝୁଲୁଛି । ପ୍ରଥମ ଦର୍ଶନରୁ ଆଶଙ୍କା ଜନ୍ମିଲା, ଲୁହା ଦୋକାନରେ ବା ମୂଷାମରା କେମିତି ମିଳିବ? ଦୋ ଦୋ ପାଞ୍ଚ ହୋଇ ଭିତରକୁ ପଶିଲି । ଦୋକାନୀକୁ ପଚାରିବାରୁ ତାଚ୍ଛଲ୍ୟ କରି ସେ କହିଲା, 'ଦୋକାନଟି କ'ଣ ନିଗୁନିମରା ମିଳିଲା ଭଳି ଦିଶୁଛି?'

ନିରାଶ ହୋଇ ମୁଁ ବାହାରି ଆସିଲି । ପିଲାଟି ବୋଧେ ମୂଷାମରା ବଦଳରେ ମୂଷା ଧରା ବୁଝିଲା । ଲୁହା ଦୋକାନକୁ ପଠେଇ ଦେଲା ।

ଜ୍ୟୋତି ଷ୍ଟୋରରୁ ଆସି ଆଉ ଗୋଟାଏ ଦୋକାନରେ ପଚାରିଲି । ଦୋକାନୀ କିଛି ବେଳ ଧରି ମତେ ଦେଖିଲା; ମୋର ନିଃସହାୟତା ପ୍ରତି ଦୟା କଲା, ଏବଂ କହିଲା 'ଜଣା ପଡୁଛି, ଆପଣ ନୂଆଁ ଏ ଅଞ୍ଚଳରେ ।' ମୁଁ ହଁ ଭରିବାରୁ ସେ ପୁଣି ଯୋଡ଼ିଲା, 'ନିଗୁନି ମାରିବା ଅଶୁଭ । ଲୋକ ବରଂ ପୋଷନ୍ତି ତାକୁ । ତେଣୁ ବଜାରରେ ମିଳିବ ନାହିଁ । ଶନିବାର ଦିନ ଆସନ୍ତୁ । ହାଟ ବସେ । ଜଣେ ଅଧେ ବେପାରୀ ଆଣି ଥାଇ ପାରନ୍ତି ।' ସାମାନ୍ୟ ନୀରବତା ପରେ ଆଖି ଠାରି କହିଲା, 'ଚୁପଚାପ ପଚାରିଲେ ମିଳିଯାଇ ପାରେ ।'

ମଝି ରାସ୍ତାକୁ ଆସ ଦୀର୍ଘ ନିଃଶ୍ୱାସଟିଏ ଛାଡ଼ିଲି । ପ୍ରଥମ ଦିନ ଅଣ୍ଡା ଦୋକାନୀଟି ଯଦି ଏକଥା କହି ଦେଇଥାନ୍ତା, ଏତେ ହିନସ୍ତା ହୋଇନଥାନ୍ତି । ଅପନ୍ତରା ସହରକୁ

ବଦଳି କରିଥିବା ପଦାଧିକାରୀଙ୍କ ପାଙ୍କରେ ଏବେ ଅଣ୍ଡା ଦୋକାନୀଙ୍କୁ ବି ମା ଭଉଣୀ ଶୋଧିବା ଆରମ୍ଭ କଲି ।

ଘରକୁ ଫେରିବା ପାଇଁ ବସରେ ବସିଲା ବେଳକୁ ମୁଁ ପୁରାପୁରି ଥକି ସାରିଥାଏ । ଦୂର ପାହାଡ଼, ବଡ଼ ପାଟିରେ ଟିକେଟ ମାଗୁଥିବା କଣ୍ଡକ୍ଟର ଏବଂ ତାଠାରୁ ବଡ଼ ପାଟିରେ ଭିଖ ମାଗୁଥିବା ଅନ୍ଧଗାୟକ ଅବା ଯଥାସମ୍ଭବ ଆଢୁଆଳ କରି ମହିଳା ସିଟରେ ସାନଛୁଆକୁ କ୍ଷୀର ପେଉଥିବା ଯୁବତୀ ମାତା କାହାରି ଆଡ଼େ ମୋର ନିଘା ନଥାଏ । ଝରକା ଆଡ଼କୁ ଆଉଜି ଚୁପ ହୋଇ ବସିଥାଏ । ଏତେବେଳକୁ ମୋ କଡ଼ରେ ଜଣେ ଭଦ୍ରବ୍ୟକ୍ତି ଆସି ବସିଲେ । ବେଶଭୂଷାରୁ ମନେ ହେଲା ସ୍ଥାନୀୟ ନୁହନ୍ତି । ଚାକିରୀ କରୁଥିବେ କେଉଁଠି । ପରିଚୟ ହେଲାରୁ ଜାଣିଲି ଯେ ମୁଁ ଥିବା ସହରରେ ସେ ବି ଅଛନ୍ତି ।

ଚିହ୍ନାଜଣା ହେଲା ପରେ ସମାଜର କୁସଂସ୍କାର, ଅନ୍ଧବିଶ୍ୱାସ ଉପରେ ସେ କୁଠାରଘାତ କଲେ । ବର୍ତ୍ତମାନ ପରିସ୍ଥିତିରେ ମୋ ପାଇଁ ବିଷୟଟିର ପ୍ରାସଙ୍ଗିକତା ଥିବା ହେତୁ, ସମସ୍ତ ମନସ୍ତାପ ସତ୍ତ୍ୱେ ମୁଁ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କଲି । ଏଠିକା ସଂସ୍କୃତି ସମସ୍ତ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଜାବୁଡ଼ି ରଖିଛି ବୋଲି ମୁଁ ମତ ଦେବାରୁ ଅବିଳମ୍ବେ ସେ ମୋ ସାଙ୍ଗେ ସହମତ ହେଲେ ଏବଂ ଏଠିକା ସଂସ୍କୃତିକୁ ଜାବୁଡ଼ି ରଖିଥିବା ଲୋକ ସମୂହକୁ ଗାଳି କଲେ । ପ୍ରସଙ୍ଗ କ୍ରମେ ଭଦ୍ରବ୍ୟକ୍ତି ଜଣକ ଏଭଳି ଅନେକ ତଥ୍ୟ ଦେଲେ ଯାହାକି ମତେ ପୂର୍ବରୁ ଜଣାଥିଲା ଏବଂ ଏଭଳି ଅନେକ କଥା ମୋ କାନରେ ଚୁପଚୁପ କରି କହିଲେ ଯାହାକୁ କି ପାଟି କରି କହିଥିଲେ ବି କିଛି ବିପଦ ନଥିଲା । ତଥାପି ମୋର ଆନନ୍ଦର ସୀମା ନଥାଏ । ଏତେ ଦିନକେ ଜଣେ ବନ୍ଧୁ ଭଳି ବନ୍ଧୁ ମିଳିଛନ୍ତି ।

ମୂଷା ପୋଷିବା କଥା ପଡ଼ିବାରୁ ଅତି ଆଗ୍ରହରେ ସେ କହିଲେ, 'ଛାଡନ୍ତୁ ଆଜ୍ଞା । ଗତବର୍ଷ ମୂଷା ଯୋଗୁଁ ମୁଁ ଏତେ ହଇରାଣରେ ପଡ଼ିଛି ଯେ କହିଲେ ନ ସରେ ।...'

ମତେ ଲାଗୁଥାଏ ଯେମିତି ସେ ଶ୍ରୋତା ଆଉ ମୁଁ ବକ୍ତା । ଉତ୍ପାତର ବିଶଦ ବିବରଣୀ ଶୁଣିବା ପାଇଁ ମୋର ଧୈର୍ଯ୍ୟ ନଥିଲା, ଆବଶ୍ୟକତା ବି ନଥିଲା । ପଚାରିଲି, 'କେମିତି ମୁକ୍ତି ପାଇଲେ ପୁଣି?'

କହିଲେ, 'ମୂଷା ମରା ଖୋଜି ଖୋଜି ଥକିଗଲି ଏଠି । ସବୁ ଦୋକାନୀ କହନ୍ତି.... ।'

ମୋର କହିବାକୁ ଇଚ୍ଛା ହେଉଥିଲା, 'ଏସବୁ ଶୁଣେଇବାର କୌଣସି ଆବଶ୍ୟକତା ନାହିଁ । ଆଗନ୍ତୁ ବଢ଼ନ୍ତୁ ।' ହେଲେ ମନ ଦୁଃଖ କରି କାଳେ ଲୋକଟି ପୁରା କଥାବାର୍ତ୍ତା ବନ୍ଦ କରି ନ ଦେଉ—ଏହି ଆଶଙ୍କାରେ ମନ ଦେଇ ତାଙ୍କ କଥା ଶୁଣିବାର ଅଭିନୟ କଲି ।

ମାତ୍ର ଭଦ୍ରବ୍ୟକ୍ତି ଜଣକ ବି କିଛି କମ ନୁହନ୍ତି । କୁଆଡୁ କୁଆଡୁ ଯାଇ ଅନ୍ଧବିଶ୍ୱାସ ବିରୋଧରେ ଲଢ଼ିବା ପାଇଁ ତାଙ୍କ ସ୍ୱର୍ଗବାସୀ ଅଜାଙ୍କ ପ୍ରେରଣା କେମିତି ତାଙ୍କୁ ସାହାଯ୍ୟ କରିଛି ତାର ବର୍ଣ୍ଣନା ଆରମ୍ଭ କଲେ ।

ଏଣିକି ମୋର ଆଉ ଧୈର୍ଯ୍ୟ ରହିଲା ନାହିଁ । ବକ୍ତବ୍ୟକୁ ସଂକ୍ଷିପ୍ତ କରିବାକୁ ଇସାରା ଦେଇ ପଚାରିଲି, 'ଶେଷରେ ମୂଷାମରା ପାଇଲେ କେଉଁଠୁ?' (ଏତକ ଜାଣିଗଲେ ତାଙ୍କ ସଙ୍ଗେ ଝଗଡ଼ା କରିବାରେ ବି ମୋର କୌଣସି ଆପତ୍ତି ନାହିଁ ।)

ଉତ୍ତର ମିଳିଲା, 'ଭାଇକୁ ଲେଖିଲି । ପାର୍ସଲରେ ପଠାଇ ଦେଲା ।' ତାପରେ ପରିବାର ଭିନେ ହେଲା ପରେ ବି ତାଙ୍କ ଆଜ୍ଞାବର୍ତ୍ତୀ ଭାଇ ତାଙ୍କୁ କେମିତି ସମ୍ମାନ ଦିଏ ତାର ବିସ୍ତୃତ ବିବରଣୀ ଦେଲେ ସେ ।

ଏବେ ମୁଁ ଜାଣିଲି ଯେ, ଭଦ୍ରବ୍ୟକ୍ତିଙ୍କୁ ଅନୁସରଣ କରି ମୋ ଭାଇକୁ ଲେଖିବି ଯଦି ପାର୍ସଲ ଆସିଲା ବେଳକୁ ପାଗଳ ହୋଇ ଯାଇ ସାରିଥିବି ଏଠି । ଏଥିରୁ ଭଲ ଆଉଥରେ ଲାଜ ଭୟ ଛାଡ଼ି ତାଙ୍କୁ ମୋ ଘର କଥା କହିବାକୁ ପଡ଼ିବ । ତାଙ୍କ ପାଖରେ ହୁଏତ ବଳକା ମୂଷାମରା ଥିବ । ଦେଇ ଦେବେ ସେ ।

ଭାଗ୍ୟକୁ ତାଙ୍କ ପାଖରେ ଅଳ୍ପ ମୂଷାମରା ବଳିଥିଲା ଏବଂ ସେ ଦେବାକୁ ବି ରାଜି ହେଲେ । ଆଣିଲା ବେଳେ ଅବଶ୍ୟ ଉକ୍ତ ମୂଷାମରାର ମାରାତ୍ମକତା, ବ୍ୟବହାର ପ୍ରଣାଳୀ ବିଷୟରେ ମତେ କିଛି ବେଳ ଶୁଣିବାକୁ ପଡ଼ିଲା । କୁଆଡ଼େ ଏହା ଏତେ ବିଷାକ୍ତ ଯେ ଖାଇଲେ ମଣିଷ ବି ମରିଯିବ । ତେଣୁ ବୋର୍ଡ ପରୀକ୍ଷାରେ ଅକୃତକାର୍ଯ୍ୟ, ଚାକିରୀ ପାଇବାରେ ଅଯୋଗ୍ୟ ଏବଂ ପ୍ରେମିକା କିମ୍ବା ଜ୍ଞାତି କୁଟୁମ୍ବଙ୍କ ଅପମାନରେ ଅପମାନିତ କ୍ରେତାଙ୍କୁ ବିକ୍ରୀ ନ କରିବାକୁ ବିକ୍ରେତାଙ୍କୁ ଉପରୁ ଅଲିଖିତ ନିର୍ଦ୍ଦେଶ ଥାଏ । ଭଲ ହୋଇଛି, ପ୍ରସ୍ତାବ ନାକଚ କରିଥିବା ଝିଅଟି କଥା କଥା-ପ୍ରସଙ୍ଗରେ ଉଲ୍ଲେଖ କରିନାହିଁ । ନୋହିଲେ ସେ ମତେ ବି ଉକ୍ତ ଆତ୍ମଘାତୀ କ୍ରେତା ଗୋଷ୍ଠୀରେ ସାମିଲ କରିଥାନ୍ତେ ।

ରାତିରେ ଶୋଇବା ପୂର୍ବରୁ ଭଦ୍ରବ୍ୟକ୍ତିଙ୍କ ନିର୍ଦ୍ଦେଶ ମତେ ମୂଷାମରାକୁ ମୁଁ ମୂଷାର ସମସ୍ତ ସଂଭାବ୍ୟ ଗନ୍ତବ୍ୟ ପଥରେ ରଖିଲି, ଲାଇଟ ବନ୍ଦ କଲି, ଏବଂ କାଗଜ ଠୁଙ୍ଗା ଦେଇ ବନ୍ଦ କରିଥିବା ରନ୍ଧା ଘର ନାଳିକୁ ଖୋଲା କଲି । ମୂଷାକୁ ସାଦର ଆମନ୍ତ୍ରଣ ! କେବଳ ଭୟ-ମୋର ଚକ୍ରାନ୍ତ ଜାଣି ନ ଯାଉ ସେ ।

ରାତିରେ ଅନେକ ଥର ନିଦ ଭାଙ୍ଗିଛି, ଲାଇଟ ଜାଳି ମଲା ମୂଷାକୁ ଥରେ ନୟନ ପୁରାଇ ଦେଖିବାର ଇଚ୍ଛା ହୋଇଛି, ଅଫିସକୁ ଯାଇ ବଡ଼ ପାଟିରେ ମୂଷାମରାର ବିଷଦ

ବିବରଣୀ ଶୁଣାଇବାକୁ ମନ ଡାକିଛି, କିନ୍ତୁ ସକାଳ ଯାଏ ସମସ୍ତ ଇଛାକୁ ମୁଁ ଅବଦମିତ କରିଛି । ଚୁପ କରି ଖଟରେ ପଡ଼ି ରହିଛି ।

ପାହାନ୍ତିଆରୁ ଉଠି ସବୁ ଆଡ଼େ ଖୋଜିଲି । ହେଲେ ମୂଷା କାହିଁ? ୟେ'ତ ବିରାଡ଼ିଟିଏ । ମୂଷାର ଅନ୍ୱେଷଣରେ ଆସି ବୋ'ଧେ ବିଚାରା ମୂଷାମରାର କବଳରେ ପଡ଼ିଛି । ଆହା ! ନିଜେ ମରିନି ତ, ମତେ ଦରମରା କରି ଦେଇଛି ।

ନିରାଶବାଦୀମାନଙ୍କ ପରି ଯଦି କଥାଟିର ଉପସଂହାର କରିବି, ତେବେ ମୂଷାମରାର ଟେର ପାଇ ଚାଲାକ ମୂଷାଟି କାଲି ଆସିନି । ଠକି ଦେଇଛି ମତେ । ତା ବଦଳରେ ବିରାଡ଼ି ଆସି ମରିଛି । ଆଉ ଆଶାବାଦୀ ଭଳି ଚିନ୍ତା କଲେ? ମୂଷାଟି ରାତିରେ ଆସିଛି; ମୂଷାମରାକୁ ବିସ୍କୁଟ, ପାଉଁରୁଟି ଭାବି ଖାଇଛି ଏବଂ ମରିବା ପାଇଁ ଛଟପଟ ହୋଇଛି । ଠିକ୍ ଏତେବେଳକୁ ଅନେକ ଦିନରୁ ମୂଷାର ଅନ୍ୱେଷଣରେ ଥିବା ବିରାଡ଼ି ଆସି ପହଞ୍ଚିଛି, ଛଟ ପଟ ହେଉଥିବା ବିଷାକ୍ତ ମୂଷାକୁ ଖାଇଛି, ଫଳତଃ ନିଜେ ମରି ପଡ଼ିଛି ।

କାହାରି ନ ଦେଖୁଣୁ ମଲା ବିରାଡ଼ିକୁ ବାହାରେ ପିଙ୍ଗି ଆସିବା ବେଳେ ଗୋଟାଏ ପ୍ରଶ୍ନ ବାରମ୍ବାର ମୋ ମନରେ ଉଙ୍କି ମାରୁଥିଲା, ଅଫିସରେ ଆଜି ମୂଷା କଥା ପଡ଼ିଲେ କ'ଣ ଉତ୍ତର ଦେବି? 'ମାରି ପକାଇଲି ତାକୁ । ବହୁତ ବଡ଼ ମୂଷାଟିଏ । ଭାରି କଷ୍ଟରେ ମାରି ହେଲା ।' ୟା'ଠାରୁ ଅଲଗା କ'ଣ ବା ଉତ୍ତର ଦେଇ ହେବ ମୁଁ ଅଫିସବାଲାଙ୍କୁ ! ■■■

# ସେମିନାର

ସେମିନାରଠାରୁ ମୋର ବେଶି ଆଗ୍ରହ ଥିଲା ସେମିନାରରେ ବକ୍ତା ଭାବେ ଯୋଗ ଦେଉଥିବା ଜଣେ ପୁରୁଣା ବନ୍ଧୁକୁ ଭେଟିବାରେ । ପ୍ରଚାରପତ୍ରରେ ତା'ନାଁ ଦେଖି ପୁରୁଣା ସ୍ମୃତି ସବୁ ମନେ ପଡ଼ିଲା; ସ୍ଥିର କଲି ତାକୁ ଏଥର ନିହାତି ଭେଟିବି । ସକାଳେ ବିଶେଷ କାମ ନାହିଁ; ଲଞ୍ଚ ପାଇଁ କୌଣସି ଆଡୁ ନିମନ୍ତ୍ରଣ ବି ନାହିଁ । ସେମିନାରରେ ଭାଗ ନେଲେ ଭଲ ଲାଗିବ ।

ଘଡ଼ିରେ ସାଢ଼େ ଦଶଟା ବାଜିଲା । ସେମିନାର ଆରମ୍ଭ ହେବାର ସମୟ । ବକ୍ତା ବନ୍ଧୁ ସାଙ୍ଗରେ ମିଶିବାକୁ ହେଲେ ସଭା ଓ ତା ଭାଷଣ ଆରମ୍ଭ ହେବା ଆଗରୁ ହଲରେ ପହଞ୍ଚିବା କଥା । ଅଗତ୍ୟା ସେମିନାର ହଲ ବାହାରିଲି । ହଲ ପୁରା ଖାଲି । ସମୟ ବିତି ସାରିଲାଣି । ମାଇକ ମେକାନିକ ଏ ସାଏଁ ପ୍ଲଗରେ ପିନ୍ କେଞ୍ଚାକେଞ୍ଚି ଓ 'ହଲୋ-ହଲୋ-ମାଇକ ଟେଷ୍ଟିଂ, ରୁ ଉବୁରି ନଥାଏ । ଜଣେ କର୍ମୀ ସ୍ଥାନୀୟ ବ୍ୟକ୍ତି ମଞ୍ଚରେ ପାଣି ଗ୍ଲାସ ଥୋଉଛନ୍ତି । ବେଶ ସେତିକି । ଆଉ କିଛି ନାହିଁ; କେହି ନାହାନ୍ତି । ଏବେଠାରୁ ବସି ରହିବା ସୁନ୍ଦର ହେବନି । ଯେମିତି ପଶିଥିଲି ସେମିତି ହଲରୁ ବାହାରି ଆସିଲି ।

ବାହାରେ ସେମିନାରର ଆୟୋଜକ ଉଦଘାଟକଙ୍କ ସାଙ୍ଗରେ ଖରା ତାପୁଛନ୍ତି । ଜଣେ ସଫଳ ସେମିନାର ଆୟୋଜକ ଭାବରେ ଦିଲ୍ଲୀରେ ଏବଂ, ତେଣୁ, ଦେଶର ବୁଦ୍ଧିଜୀବି ମହଲରେ ଆୟୋଜକଙ୍କ ଆଜିକାଲି ଖୁବ ନାଁ । ପରିଚୟ ପାଇଁ ଅବଶ୍ୟ ସେ ଥିଲେ ଜଣେ ହିଂଦୀର ଅଧ୍ୟାପକ । ଉଦଘାଟକଙ୍କ ପ୍ରସିଦ୍ଧି ଥିଲା ଜଣେ ଇତିହାସକାର ରୂପେ । ପ୍ରସିଦ୍ଧି ଅବଶ୍ୟ କୋଡ଼ିଏ-ପଚିଶ ବର୍ଷ ତଳର; ଯୁବ ଇତିହାସକାରଙ୍କ ଉତ୍ସାହହୀନତା ଯୋଗୁଁ ଜଙ୍କ ଲାଗିବା ଉପରେ ସେ । ଆଜିକାଲି ତାଙ୍କର ନାଁ ଥିଲା ଏକ ଭାରି ପ୍ରୋଜେକ୍ଟ ହାତକୁ ଆସିଥିବା ଯୋଗୁଁ । ବିନା ପ୍ରୋଭିଡେଣ୍ଟ ଫଣ୍ଡ ଓ ପେନସନ ଭରସାରେ ଅଟ୍ଟାଳିକା ତୋଳିବା ପାଇଁ ଇତିହାସ ଅନୁସନ୍ଧାନ କେନ୍ଦ୍ର ବାଲା କୁଆଡ଼େ ପ୍ରୋଜେକ୍ଟଟିକୁ ତାଙ୍କ ହାତରେ ଅବସରକାଳୀନ ଭେଟି ଦେଇଥିଲେ । ଅବଶ୍ୟ ଏହା ନିନ୍ଦୁକଙ୍କ ଅପପ୍ରଚାର, ପ୍ରୋଜେକ୍ଟଧାରୀଙ୍କ ନାଁରେ ପ୍ରୋଜେକ୍ଟ-ଆଶାୟୀଙ୍କ ପକ୍ଷରୁ ରାମବାଣ । ଆମ କାହାଣୀ ଓ ଇତିହାସକାରଙ୍କ ହିତ

ଦୃଷ୍ଟିରୁ ସେଆଡ଼େ ନଗଲେ ଭଲ ।

ଦିଲ୍ଲୀରେ ଶୀତଦିନେ ଖରା ତାପିବାଠାରୁ ଅଧିକ ମନୋରମ କାମ କିଛି ହୋଇ ନ ପାରେ । କିନ୍ତୁ ଖରା ତାପିବା ଯେହେତୁ ଏକ ଅଣ-ବୁଦ୍ଧିଜୀବି କାର୍ଯ୍ୟକ୍ରମ, ଆୟୋଜକ ଓ ଇତିହାସକାର ବୌଦ୍ଧିକ ଆଲୋଚନାରେ ବ୍ୟସ୍ତ ଥାନ୍ତି । ଆୟୋଜକ ମୋର ଜଣେ ବନ୍ଧୁଙ୍କ ବନ୍ଧୁ । ଭେଟିଛି ଥରେ ଅଧେ । ଇଂରାଜୀ ଓ ହିନ୍ଦୀ ମଧ୍ୟରେ ହିନ୍ଦୀର ଏବଂ ହିନ୍ଦୀ ଓ ଆଞ୍ଚଳିକ ଭାଷା ମଧ୍ୟରେ ଆଞ୍ଚଳିକ ଭାଷାର ପକ୍ଷଧର ରୂପେ କେତେଥର ତାଙ୍କ ଯୁକ୍ତି ମଧ୍ୟ ଶୁଣିଛି ମୁଁ । ସେହି ଭରସାରେ ଏବେ ପାଖକୁ ଯାଇ ହିନ୍ଦୀରେ ପଚାରିଲି, 'ସେମିନାର କେବେ ଆରମ୍ଭ ହେବ?' ହାତ ଘଡ଼ିକୁ ଦେଖି ଶୁଦ୍ଧ ଇଂରାଜୀରେ ସେ ଜବାବ ଦେଲେ, 'ଏହି ଏବେ, ଆପଣ ଭିତରକୁ ଯା'ନ୍ତୁ ।' ଚିହ୍ନି ପିରିଲେନି ମତେ । ଭଙ୍ଗୀରୁ ମନେହେଲା ହଲ ଖାଲିଥିବା, ଘଣ୍ଟା କଣ୍ଟା ଡେଇଁ ସାରିଥିବା, ମାଇକ ଟେଷ୍ଟିଂ ସରି ନଥିବା ଇତ୍ୟାଦି ସୂଚନା ସଂପର୍କରେ ଅ-ସୂଚିତ ସେ । ଅବଶ୍ୟ ୟା' ହେଇପାରେ ଯେ ଖୁସି ମଜାରେ ନିଜେ ଖରା ତାପି ଅନ୍ୟକୁ ସେ ସୁଖରୁ ବଞ୍ଚିତ କରିବାକୁ ଚାହାନ୍ତି । ତେଣୁ ଇଂରାଜୀ କହି ହଲ ଭିତରକୁ ଠେଲିବାର ଯୋଜନା ତାଙ୍କର । 'ମନ ! ଚାଲ । ଆମେ ବି ସେଇଆଏ ଏ ଖରା ତାପିବା ।' ମୁଁ ନିଜକୁ ସଂବୋଧିଲି ଏବଂ ଆୟୋଜକଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଖରା ତାପି ତାପି ଆଗାଡ଼େ ଚାଲିଲି ।

ପ୍ରାୟ ଦଶମିନିଟ ପରେ ମନେ ପଡ଼ିଲା, ଏଗାରଟା ସୁଦ୍ଧା ଯଦି ସେମିନାର ଆରମ୍ଭ ନ ହୁଏ, ଚା'ପାନ ହେବ କେବେ? ପୁଣି, ଲଞ୍ଚ ହେବ କେବେ? ପୁଣି ଓଲଟା ଦିଗରେ ସେମିନାର ହଲକୁ ଫେରି ଆସିଲି ।

ଆଶ୍ଚର୍ଯ୍ୟ କଥା— ହଲ ଭର୍ତ୍ତି । ଧାରଣା ଥିଲା, ଆୟୋଜକ ସମସ୍ତଙ୍କୁ ହଲ ଭିତରକୁ ଢୁକିବା ପାଇଁ ବାରଂବାର ମାଇକରେ ଅନୁରୋଧ କରୁଥିବେ । କିନ୍ତୁ ସେ ମଞ୍ଚାସୀନ; ସେମିନାରର ପ୍ରସ୍ତାବନା ପର୍ବରେ ଠିଆ; ଉପସ୍ଥିତ ସଜ୍ଜନଙ୍କ ଆମନ୍ତ୍ରଣ ସାରି ସେମିନାରର ଆବଶ୍ୟକତା ଓ ବିଷୟବସ୍ତୁର ପ୍ରାସଙ୍ଗିକତା ପ୍ରଶ୍ନକୁ ଘାଣ୍ଟିବାରେ ବ୍ୟସ୍ତ ।

ହଲର ସବା ପଛରେ ବସି ମୁଁ ଭାବିବାକୁ ଲାଗିଲି, ଏବେ ହଲ ଖାଲି ଥିଲା । ପାଞ୍ଚ ସାତ ମିନିଟରେ ମଣ୍ଡଳୀକୁ କୀର୍ତ୍ତନ ପୁଞ୍ଜା ଢୁକିଲା ପରି ଦଳେ ବୁଦ୍ଧିଜୀବି ଆସିଲେ କେଉଁଠୁ? ପାଞ୍ଚ ସାତ ବର୍ଷ ହେଲା ମୁଁ ଦିଲ୍ଲୀ ଛାଡ଼ି ଏକ ଉପାନ୍ତ ସହରରେ ଅବସ୍ଥାପିତ । ସେତେବେଳେ ମହାନଗରୀୟ ସେମିନାରର ପ୍ରମୁଖ ସମସ୍ୟା ଥିଲା-ଉପସ୍ଥାନ । ଡର ମାରୁଥିଲା, କିଛି ଦିନ ପରେ ଉପସ୍ଥାନ ଅଭାବରୁ ସଭା-ସମିତି ହୋଇ ପାରିବନି । ଏବେ କାହିଁ ସେ ଡର?

ଅନ୍ତତଃ ଆଜିର ଅନୁଭୂତିରୁ ତ ଲାଗୁଛି ଯେ, ନୂଆ ନୂଆ ସମସ୍ୟାଗୁଡ଼ିକୁ ସାମନା କରିବା ପକାଣେ ମହାନଗରୀ ପାଖରେ ଅସୀମ ଶକ୍ତି । ବୁଦ୍ଧିଜୀବି ଏଣିକି ଗୋଠରେ ଆସି ସେମିନାରରେ ପଶୁଛନ୍ତି ! ସେମିନାରର ଏହି ନୂଆ ଦିଗକୁ ନେଇ ଚିନ୍ତାମଗ୍ନ ରହିବା ଯୋଗୁଁ ଆୟୋଜକଙ୍କ ବକ୍ତବ୍ୟରୁ-ବିଷୟବସ୍ତୁର ପ୍ରାସଂଗିକତା ପ୍ରଶ୍ନକୁ ନେଇ-ବଞ୍ଚିତ ରହିଲି ମୁଁ । ଫଳରେ ଶେଷ ପର୍ଯ୍ୟନ୍ତ ଅଜ୍ଞାନତା ମୋର ଦୂରହେଲା ନାହିଁ ।

'ସାକ୍ଷରତା ଓ ସଂସ୍କୃତି' ଥିଲା ସେମିନାରର ବିଷୟବସ୍ତୁ । ମୁଖ୍ୟବକ୍ତା ହୋଇ ଆସିଥିଲେ ରାଷ୍ଟ୍ରୀୟ ସାକ୍ଷରତା ମିଶନର ଅଧ୍ୟକ୍ଷ, ଜଣେ ଯୁବ ଆଇ·ଏ·ଏସ୍ । ମିଶନର ଆର୍ଥିକ ସହାୟତାରେ ସେମିନାରର ଆୟୋଜନ । ତେଣୁ ଉପସ୍ଥିତ ବୁଦ୍ଧିଜୀବିଙ୍କ ଗହଣରେ ସେ ଥିଲେ ଅଧିକ ଓଜନଦାର । ସଂସ୍କୃତିର ପ୍ରତିନିଧି ଭାବେ ମୋର ବନ୍ଧୁ ସମେତ ତିନି ଚାରିଜଣ ଖଦି ଝୋଲାଧାରୀ ରଂଗକର୍ମୀ ପହଞ୍ଚିଥାନ୍ତି । ପ୍ରଚାରପତ୍ରରେ ଜଣେ ଅଧୁନା ଧନ୍ଦା ମାନ୍ଦା ଥିବା ପୌଢ଼ ଚିତ୍ରତାରକାଙ୍କ ନାଁ ବି ଥାଏ । ଅବଶ୍ୟ ଏ ଯାଏଁ ତାଙ୍କର ଦେଖା ନଥାଏ ; କିନ୍ତୁ ତାଙ୍କ ଦର୍ଶନ ପିପାସୁ କେତେଜଣ ସେମିନାର ଯାଏଁ ଆସି ସାରିଥାନ୍ତି ଏବଂ ହଲ ଭିତରକୁ ଢୁକୁଥିବା ପ୍ରତ୍ୟେକ ନବାଗତଙ୍କୁ ଖାଇଲା ଖାଇଲା ଆଖିରେ ନିରେଖି ଯାଉଥାନ୍ତି । ବିଭିନ୍ନ ବକ୍ତାଙ୍କ ଭିନ୍ନ ଭିନ୍ନ ତଥା ପରସ୍ପର ବିରୋଧୀ ଯୁକ୍ତିଗୁଡ଼ିକୁ ଫୁଲ ପରି ମାଳାରେ ସଜାଇବାର ଦାୟିତ୍ୱ ମୁଣ୍ଡେଇଥାଆନ୍ତି ଉଦଘାଟକ ବନାମ ଇତିହାସକାର ମହୋଦୟ । ତାଙ୍କ ଶାନ୍ତ, ସୌମ୍ୟ, ଋଷି ପ୍ରତିମ ରୂପ ହଲକୁ ଏକ ଆଶ୍ରମର ପରିବେଶ ଦେଉଥାଏ ।

ପ୍ରସ୍ତାବନାର ଉପସଂହାରରେ ଆୟୋଜକ ବକ୍ତବ୍ୟର ସାରାଂଶ ଶୁଣାଇଲେ: ସାକ୍ଷରତାର ପ୍ରଶ୍ନ ଜଟିଳ ଯେତିକି, ମହତ୍ୱପୂର୍ଣ୍ଣ ବି ସେତିକି । ଏହା ଆଜି ଆମକୁ କୁଆଡ଼େ ବୁଝିବାକୁ ହେବ । ଅନ୍ୟଥା ଇତିହାସ କ୍ଷମା ଦେବ ନାହିଁ । ଇତିହାସକାର ଆଖି ବନ୍ଦ କରି ନିଜର ସମ୍ମତି ଜଣାଇଲେ । 'ଆମେ ବାମପନ୍ଥୀ ବୁଦ୍ଧିଜୀବମାନେ ଭାବୁ, ରାଷ୍ଟ୍ର ଓ ଶାସକ ବର୍ଗର ସମସ୍ତ କାର୍ଯ୍ୟ ଶ୍ରେଣୀ ସ୍ୱାର୍ଥ ଉଦ୍ଦେଶ୍ୟରେ । ତେଣୁ ଜନତାର ଅମଙ୍ଗଳ ସକାଶେ । ରାଷ୍ଟ୍ର ଆୟୋଜିତ ସାକ୍ଷରତା ମିଶନ ବି ଜନ ବିରୋଧୀ ବୋଲି ଆମର ଧାରଣା । ଏହା କିନ୍ତୁ ଭୂଲ କଥା । ସାକ୍ଷରତା ମିଶନର ଅଧ୍ୟକ୍ଷ ଟୁଲୁ-ମୁଁ ତାକୁ ପିଲାଦିନୁ ଟୁଲୁ ନାମରେ ଡାକେ, ଆଜି ବଡ଼ ହେଲା ପରେ ବି, ତେଣୁ ଡ଼ାକିବି-ଏହା ଉପରେ ବିଶେଷ ଆଲୋକପାତ କରିବ ।' ପୁଣି କହିଲେ, 'ସାକ୍ଷରତାକୁ ନେଇ ଉଙ୍କି ମାରୁଥିବା ସମସ୍ତ ଅନ୍ଧବିଶ୍ୱାସର ସଂସ୍କୃତି କର୍ମୀହିଁ ପର୍ଦ୍ଦା ଫାଶ କରିବ । ସେ ବେଳ ଆଜି ଆସିଛି; ସଂସ୍କୃତି କର୍ମୀକୁ ଆଗକୁ ଆସିବାକୁ ହେବ । ସର୍ବଦା ଦୁହିଁଙ୍କ ମଧ୍ୟରେ ଏକ ନିବିଡ଼ ସଂପର୍କ । ଆମ ସେମିନାରରେ ବି ତେଣୁ, କୋଟ ଟାଇ

ପରିହିତ ଟୁଲୁ ପାଖରେ ଯେତେବେଳେ ଖଦି ଝୋଲାଧାରୀ 'ରବୀନ୍ଦ୍ରଜୀ' (ମୋର ବନ୍ଧୁ) ବସନ୍ତି, ସେମିନାର ସଫଳ, ପ୍ରଶ୍ନ ସବୁ ସମାହିତ ବୋଲି ସମସ୍ତେ ଆଶ୍ୱସ୍ତ ହୁଅନ୍ତି ।' ଏହା ଶୁଣି ସମସ୍ତେ ଜୋରରେ ହସିଲେ । ମୋର ବନ୍ଧୁ, ଯିଏ ଏବେଠାରୁ କାହାଣୀରେ 'ରବୀନ୍ଦ୍ରଜୀ' ନାମରେ ସ୍ଥାନ ପାଇବ, ଜବାବରେ ଅଧିକ କିଛି ଆମୋଦପୂର୍ଣ୍ଣ କଥା କହିବାର ଉଦ୍ୟମ କରି ଅବସର ଅଭାବରୁ ଚୁପ ରହିଲା । ଆୟୋଜକ ନିଜ ସ୍ଥାନରେ ବସିଲେ ।

ସଂସ୍କୃତକର୍ମୀମାନେ ଏମିତି ବି ଆଗରେ ଥିଲେ । ହଲର ସବା ପଛ ଧାଡ଼ିରେ ମୁଁ ଓ ମୋ ଭଳି କେତେଜଣ ଅନାମଧେୟ ବ୍ୟକ୍ତି ବସିଥିଲେ । ବଡ଼ କଥା ହେଲା ହଲର ଯିଏ ଯେଉଁଠି ଥିଲା ତା'ଠାରୁ ଅଧିକ ଆଗକୁ ଯିବାର ମଉକା ନଥିଲା, ଆୟୋଜକ ଯେତେ ଉକୁସାନ୍ତୁ ପଛେ । ତା ସତ୍ତ୍ୱେ ପ୍ରସ୍ତାବନା ଶୁଣି କେତେଜଣ ମୁଣ୍ଡ ଟୁଙ୍ଗାରିଲେ । ସାମାନ୍ୟ ଚହଳ ପହଳ ହେଲା ହଲରେ । ରବୀନ୍ଦ୍ରଜୀ ଚୁପ ଥାଏ; ମଝିରେ ମଝିରେ ତା ଚିପି ନାକକୁ ସୁଆଁଲୁଥାଏ । ମୋ ଉପରେ ନଜର ପଡ଼ିବାରୁ ଆଖିର ଇସାରାରେ ଜଣକୁ ଡାକିଲା ଏବଂ ମତେ ଦେଖାଇ କିଛି ନିର୍ଦ୍ଦେଶ ଦେଲା । ତେଣିକି ଗୋଟାଏ ପ୍ଲାଷ୍ଟିକ ଫାଇଲ, କଲମ ଓ ନୋଟ୍ ବହିଟିଏ ମୋ ପାଖରେ ଆସି ପହଞ୍ଚିଲା । ଫାଇଲଟି ତାକୁ ମିଳିଥିବା ଫାଇଲଠାରୁ ହାଲୁକା । ତା ସତ୍ତ୍ୱେ, ମୋ ପାଖରେ ଆସୀନ ବ୍ୟକ୍ତିଜଣକ ତହିଁରେ ଲୋଭ ଦୃଷ୍ଟି ପକାଇଲେ । ତାଙ୍କୁ କିଛି ମିଳି ନଥିଲା । ମୋ ଭଳି ଅନିମନ୍ତ୍ରିତ ଗୋଷ୍ଠୀର ଅତିଥି ସେ । କଲମ ଓ ନୋଟ ବହିଟିକୁ ନିଜେ ନେଇ, ଫାଇଲଟି ତାଙ୍କୁ ଦାନ ଦେବା ସକାଶେ, ତେଣୁ, ସେହିକ୍ଷଣି ମୁଁ ନିଷ୍ପତ୍ତି ନେଲି ।

ପ୍ରସ୍ତାବନାର ପରବର୍ତ୍ତୀ ପର୍ବ ହେଲା ଉଦଘାଟନ । ବୁଦ୍ଧିଜୀବି ସମାରୋହ; ଦୀପ ଆଦି ଜାଳିବାର ଲୌକିକତା ନାହିଁ । ନିଆଁଖାଡ଼ି ଧରେଇବା ପାଇଁ ସୁନ୍ଦରୀ ତରୁଣୀର ବି ଅଭାବ ଏଠି । ଉଦଘାଟନ ମାନେ ସ୍ରୁଦୁ ଭାଷଣ । ଉଦଘାଟକ ମହୋଦୟ ଏଥିପାଇଁ ପ୍ରସ୍ତୁତ ଥିଲେ ।

'ସାକ୍ଷରତା ମାନେ କ'ଣ?' ପ୍ରଶ୍ନଟି ପଚାରି ନିଜେ ଉତ୍ତର ଦେବା ଆରମ୍ଭ କଲେ ସେ । କେମ୍ବ୍ରିଜ୍ ଶବ୍ଦକୋଷଠାରୁ ଆରମ୍ଭ କରି ଫରାସୀ ତତ୍ତ୍ୱବିଦ୍‌ଙ୍କ ଦିଆ ସଂଜ୍ଞା ସବୁ ଶୁଣାଇଲେ ଏବଂ ଶେଷରେ ଚୂଡ଼ାନ୍ତ ନିଷ୍ପତ୍ତି ନେଇ କହିଲେ, 'ସାକ୍ଷରତା ମାନେ ଅକ୍ଷର ଶିକ୍ଷା ।' ବିଶ୍ୱରେ ସଂସ୍କୃତିର ସଂଜ୍ଞାକୁ ନେଇ ଚାଲିଥିବା ବିବାଦର ସେ ଯେଉଁଭଳି ଭାବେ ଖୋଲାସା କଲେ, ଲାଗିଲା ମନ୍ଦିର-ମସଜିଦଠାରୁ ସେ କମ ବିବଦମାନ ନୁହେଁ । ଆଗରୁ କିଛି ଜାଣି ନଥିଲି ମୁଁ । ଶେଷରେ ଅବଶ୍ୟ ବିବାଦରେ ପୂର୍ଣ୍ଣାହୁତି ଟାଣି କହିଲେ, 'ସଂସ୍କୃତିମାନେ ସବୁ କିଛି- ଯାହା ପେଟର ଭୋକ ପାଇଁ ଉଦ୍ଦିଷ୍ଟ ନୁହେଁ ।' ରକ୍ଷା ହେଲା । ପୁଣି କହିଲେ, 'ସାକ୍ଷରତା

ଯୋଜନା ପଛରେ ଶାସକ ଓ ପୁଞ୍ଜିପତି ଗୋଷ୍ଠୀର ସ୍ୱାର୍ଥ ଜଡ଼ିତ ବୋଲି ଆମର ଧାରଣା । ଚାଷୀ-ମଜଦୁର ଶିକ୍ଷିତ ହେଲେ ଉତ୍ପାଦନ ବଢ଼ିବ, ପୁଞ୍ଜିବାଦୀ ବ୍ୟବସ୍ଥା ସୁଦୃଢ଼ ହେବ । କୁଆଡ଼େ ଏହା ଭୁଲ କଥା । ସେମିନାରରେ ନା କେହି ପୁଞ୍ଜିପତି ଥିଲେ, ନା ଚାଷୀ-ମଜୁଦର । ମଜଦୁର ଭଳିଆ ଦିଶୁଥିବା ମାଇକ ମେକାନିକଟି ନିଜ ମତ ଶୁଣାଇବା ଅବସ୍ଥାରେ ନ ଥିଲା । ମାଇକ ଗଡ଼ବଡ଼େଇ ନ ଥିବା ଜନିତ ଆତ୍ମ-ସନ୍ତୁଷ୍ଟୀରେ କୋଣରେ ବସି ଢୁଳେଉ ଥିଲା । ଉପସ୍ଥିତ ସଭାସଦ ସେମାନଙ୍କ ମନକଥା ଇତିହାସକାର କେମିତି ଜାଣିଲେ ବୋଲି ଆଶ୍ଚର୍ଯ୍ୟ ପ୍ରକାଶ ସୁଦ୍ଧା କଲେ ନାହିଁ । ଏକ ନିର୍ଦ୍ଦିଷ୍ଟ ପରିସୀମା ଭିତରେ ଝରଣାର ସ୍ରୋତ ପରି ମନ୍ତବ୍ୟଟି କଲେଁ କଲେଁ ବୋହିଗଲା । ଶେଷରେ ତାଙ୍କର ଅନ୍ୟାନ୍ୟ କାମ ଥିବାରୁ ଇତିହାସକାର-ଉଦଘାଟକ ଶୀଘ୍ର  ବକ୍ତବ୍ୟ ସାଙ୍ଗ କଲେ । ସେମିନାରରେ ଚା'ପାନ ବିରତି ହେଲା ।

ପ୍ରସ୍ତାବନା ଓ ଉଦଘାଟନଠାରୁ ବେଶି ଆକର୍ଷଣୀୟ ହେଲା ଚା'ପାନ ପର୍ବ । ଶ୍ରୀମନ୍ଦିରରୁ ଜଗନ୍ନାଥ, ବଳଭଦ୍ରଙ୍କୁ ଆଣିବା ଢଙ୍ଗରେ ଆୟୋଜକ ଏ ଯାଏଁ ଚୁପଥିବା ଯୁବକ ଟୁଲୁବାବୁ ଓ ବୃଦ୍ଧ ଇତିହାସକାରଙ୍କୁ ପାର୍ଶ୍ୱରେ ସ୍ଥିତ ଚା'କକ୍ଷ ଯାଏଁ ପାଛୋଟି ଆଣିଲେ । ଚା'ଟେବୁଲର ଅନତି ଦୂରରେ ଦୁହେଁ ମତ ବିନିମୟ କରିବାକୁ ଲାଗିଲେ; ଆୟୋଜକ ଗଲେ ସମସ୍ତଙ୍କପାଇଁ ଚା'ଆଣି । ସାକ୍ଷରତାକୁ ନେଇ ଦେଶର ବୁଦ୍ଧିଜୀବି ଉଦାସୀନ ବୋଲି ଇତିହାସକାର ମତ ଦେବାରୁ ଟୁଲୁବାବୁ ନମ୍ରତାର ସହ ଅସହମତି ପ୍ରକାଶ କଲେ ଏବଂ ତା'ପାଇଁ ସରକାରଙ୍କୁ ଦାୟୀ କଲେ । ନିରପେକ୍ଷ ବୁଦ୍ଧିଜୀବିର ଏ ହେଲା ବିଶେଷତ୍ୱ- ବୁଦ୍ଧିଜୀବି ହୋଇ ବୁଦ୍ଧିଜୀବିକୁ ଗାଳିଦେବ । ଟୁଲୁବାବୁ ସରକାରୀ ହୋଇ ସୁଦ୍ଧା ସରକାରକୁ ଗାଳି ଦେଲେ ଓ ସ୍ୱୟଂ ବୁଦ୍ଧିଜୀବି ହେବାର ପ୍ରମାଣ ଦେଲେ । ଚର୍ଚ୍ଚା ଚାଲିଲା— ବେଶି ଉଦାସୀନ ସରକାର ନା ବୁଦ୍ଧିଜୀବି । ଆୟୋଜକ ଏ ମଧ୍ୟରେ ଚା'ପକୋଡ଼ା ଆଣି ସାରିଥାନ୍ତି । ଆଲୋଚନାରେ ରଙ୍ଗ  ଢାଳିବା ଉଦ୍ଦେଶ୍ୟରେ ଏବେ ପଚାରିଲେ 'ପନିର ପକୋଡ଼ା ଭଲ ନା ପାଲକ?' ଏ ଯାଏଁ ଚାଖି ନ ଥିବା ପକୋଡ଼ାରୁ ଦୁଇ ଖଣ୍ଡ ପାଟିରେ ପୂରାଇ ଟୁଲୁବାବୁ ମତ ଦେଲେ, 'ଦୁହିଁଙ୍କ ଭିତରେ କିଛି ଫରକ ତ ଦେଖାଯାଉନି ।' ତିନିହେଁ ବହେ ହସିଲେ । ଏଥିରେ ସାହସ ପାଇ ପାଖରେ ପଇଁତରା ମାରୁଥିବା ଏବଂ ପକୋଡ଼ା ଖାଉଥିବା ଖଦି-ଝୋଲାଧାରୀ ରଂଗକର୍ମୀମାନେ ଗୋଷ୍ଠୀରେ ସାମିଲ ହେଲେ । ଫଳରେ ଚା'ପାନ କକ୍ଷରେ ମଧ୍ୟ ଥରେ ସାକ୍ଷରତା, ଇତିହାସ ଓ ସଂସ୍କୃତି ମଧ୍ୟରେ ସମନ୍ୱୟ ଘଟିଲା ।

ନାଁ ସିନା ଚା' ପାନ, ହେଲେ ଟେବୁଲରେ ଅନେକ ଖାଦ୍ୟ ସାମଗ୍ରୀ । କେତେ ଆକାର ପ୍ରକାରର ପନିର, ପାଲକ ଆଦିର ପକୋଡ଼ା; ମିଠା, ଲୁଣିଆ ଭିନ୍ନ ଭିନ୍ନ କିସମର ବିସ୍କୁଟ;

ପୁଣି ଚା', କଫି ଆଦି ଏକାଧିକ ଧରଣର ପାନୀୟ । ସେମିନାର ହଲ ଯେମିତି ଆଖି ପିଛୁଳାକେ ଭର୍ତ୍ତି ହେଲା, ଥାଳିର ପକୋଡ଼ା ସେମିତି ମିନିଟ ମିନିଟରେ ଉଭାନ ହେଉଥାନ୍ତି । ଥାଳି ପରେ ଥାଳି ଆସୁଥାଏ । ଏସିତିଟି ଭୟରେ ମୋ ପରି ଜଣା କେତେ, ଲୁଣିଆ ବିସ୍କୁଟରେ ଜୋର ଦେଉଥାନ୍ତି । ମିଠା ବିସ୍କୁଟର ଥାଳି ପୁତନା ପରି ଦାନ୍ତ ନେଫଡ଼େଇ ପଡ଼ିଛି, ତାକୁ ଦେଖି ପୁଷ୍ଟା ସମସ୍ତେ ଅଣ-ଦେଖା କରି ଦେଉଛନ୍ତି । ଆଜି ପକୋଡ଼ାର ଦିନ । ମୋର ଧାରଣା ଥିଲା, ଖଦି-ଝୋଲାଧାରୀମାନେ ପକୋଡ଼ା ଉଭାନ କରିବାରେ ମୁଖ୍ୟ ଭୂମିକା ନେବେ । ହେଲେ କେହି କମ ନୁହନ୍ତି । ସେମିନାର ଶୁଣି ଯେମିତି ବୁଦ୍ଧିଜୀବିଙ୍କ ଅନେକ ଧାରଣା ଭୁଲ ବୋଲି ଜାଣିଲି, ଚା'ପାନର ଦୃଶ୍ୟ ଦେଖି ପୂର୍ବାଗ୍ରହକୁ ଭୁଲ ଘୋଷଣା କଲି । ଘଣ୍ଟାଏ ପରେ ଲଞ୍ଚ ବୋଲି କାହାରି ମନେ ନାହିଁ । ଅନାଗତ ଭବିଷ୍ୟତକୁ ଆସ୍ଥା ନ କରି, ଉପସ୍ଥିତ ବର୍ତ୍ତମାନକୁ ସାଉଁଟିବାରେ ବ୍ୟସ୍ତ ସମସ୍ତେ । ଚା'ପାନର ଅଗ୍ନତୁଷ୍ଟୀରୁ ସେମିନାର ଅଧା ସଫଳ ବୋଲି ଜାଣ ।

କପରେ ଅଧା ଚା'ରଖି ଇତିହାସକାର ନିଜ କାରରେ ଚାଲିଗଲେ । ତାଙ୍କର ଦିନସାରା ବସିବାକୁ ଫୁରସତ କାହିଁ? ଆୟୋଜକ ତାଙ୍କୁ ବଟେଇ ଆସିଲେ । ଜାଣି, ମୁଣ୍ଡରୁ ଅଧା ବୋଝ ଗଲା । ଟୁଲୁ ବାବୁ ଜଣେ ବୁଢ଼ାଙ୍କ ସାଙ୍ଗରେ ଆଳାପରେ ବ୍ୟସ୍ତ । ରବୀନ୍ଦ୍ରଜୀ ଏକା ଥିବାର ଦେଖି, ମୁଁ ଚା କପ ଧରି ତା ପାଖକୁ ଗଲି ।

— ଶଳା, ତତେ ଲାଜ ନାହିଁ? ତତେ ଭେଟିବା ପାଇଁ ଆସିଲି, ହେଲେ ତୋ ପାଖରେ ସମୟ କାହିଁ?

— ସତ କହୁଛୁ? ପକୋଡ଼ାର ଲୋଭରେ ଆସିନୁ?' ସେ ତାର ପୁରୁଣା ଶୈଳୀରେ ଜବାବ ଦେଲା । ଜବାବ କ'ଣ, ଓଲଟା ପଚାରିଲା । 'ଶୁଣ, ଆଜି ରାତିରେ ମୋ ସାଙ୍ଗରେ ରହୁଛୁ ତୁ !' ତା କଥା ମତେ ନାଟକର ଡାଇଲଗ ପରି ଲାଗୁଥାଏ ।

— ଉପର ଓଳି ଯିବି ।

— ଅନେକ କଥା ଅଛି । ମୋ ଠିକଣା ରଖ । ରାତିଟା ରହ ।

— ସତରେ କଥା ଅଛି, ନା "ଏବେ ବୋର କରନା" ବୋଲି କହୁଛୁ?' ମୁଁ ପଚାରିଲି । ସେ ହସିଲା କେବଳ ।

ରବୀନ୍ଦ୍ରଜୀ ଓ ମୁଁ ଏକା ସମୟରେ ଦୁହେଁ ପନ୍ଦର ବର୍ଷ ତଳେ ଏମ୍.ଏ.ପଢ଼ିବା ପାଇଁ ଦିଲ୍ଲୀ ଆସିଥିଲୁ; ଏକା ସାଙ୍ଗରେ ମିଶି ମଣ୍ଡି ହାଉସରେ ନାଟକ ଦେଖୁଥିଲୁ; ପରେ କେତୋଟି ନାଟକରେ ଛୋଟ ଛୋଟ ରୋଲ ବି କଲୁ ଦୁହେଁ । ମୁଁ ଦିଲ୍ଲୀ ଛାଡିଲି; ସେ ରହିଗଲା

ନାଟକରେ । ଦୁଇ ବର୍ଷ ତଳେ ଶୁଣିଲି ନିଜେ ଗୋଟାଏ ନାଟ୍ୟମଣ୍ଡଳୀ ଗଢ଼ିଲାଣି । ଷ୍ଟ୍ରିଟ ପ୍ଲେ କରେ । ପଇଁତ୍ରିଶ, ଚାଳିଶ ଜଣ ସଦସ୍ୟ । ରଂଗକର୍ମୀ ଭଳି ଦିଶୁଥିବା ଯୁବକ-ଯୁବତୀମାନେ ଯେଉଁ ମାତ୍ରାରେ ତାକୁ 'ଭୈୟା ଭୈୟା' କରୁଥାନ୍ତି, ଦଳର ଦଳପତି ଭାବରେ ତାର ବେଶ କର୍ତ୍ତୃତ୍ୱ ଥିବ ।

'ରବୀନ୍ଦ୍ରଜୀ, ମୋର ଆଜି ଆପଣ ମାନ ରଖିଦେଲେ ।' ମୋର ପଛ ଆଡୁ ଆସି ଆୟୋଜକ ନିଜ ଦୁଇ ହାତରେ ତା' ହାତକୁ ଧରି ପକାଇଲେ । ଆମ କଥା ଅଧାରେ ରହିଲା ।

ରବୀନ୍ଦ୍ର କହିଲା, 'ବୁଝିଲେ, ମୁଁ ବି ଆଶ୍ଚର୍ଯ୍ୟ, ଲୋକ ଗଲେ କୁଆଡ଼େ? ଚାଳିଶରୁ ଚାଳିଶ ଆସିବା କଥା । ସାଙ୍ଗେ ସାଙ୍ଗେ ଲୋକ ପଠେଇଲି । 'ଲାଇବ୍ରେରୀ, ହଷ୍ଟେଲ, ଟି·ଭି·ରୁମ ଯିଏ ଯେଉଁଠି ଅଛି, ଯେଉଁ ଅବସ୍ଥାରେ ଥାଉ, ଗୋଟାଏ ମିନିଟରେ ଡାକିଆଣ । ଅତି ଜରୁରୀ ।'

— ମୋର ପ୍ରାଣ ନଥାଏ । ରବୀନ୍ଦ୍ରଜୀ କ'ଣ ମତେ ଧୋକା ଦେବେ? ଯାହା ହେଉ, ବହୁତ ବହୁତ ଧନ୍ୟବାଦ । ସେମିନାର ଯଦି ସଫଳ ହୁଏ, ଶ୍ରେୟ କିନ୍ତୁ ଆପଣଙ୍କୁ ନେବାକୁ ପଡିବ !

— ଯଦି ନ ନିଏ?

ଦୁହେଁ ପୁଣି ଥରେ ହାତ ମିଳାଇ ହସିଲେ । ଏ ଯାଏଁ ଆୟୋଜକଙ୍କ ଧ୍ୟାନ ନଥିଲା ମୋ ଆଡ଼େ । ଏବେ ନଜର ପଡ଼ିବାରୁ ଆଖିର ଇସାରାରେ ପଚାରିଲେ ରବୀନ୍ଦ୍ରଜୀକୁ । ଆଖିର ଇସାରାରେ ରବୀନ୍ଦ୍ର ସ୍ପଷ୍ଟ କଲା, 'ବଂଦା ଅପନା ହୈ ।' ତେଣିକି ବଡ଼ ପାଟିରେ ମୋର ପରିଚୟ କଲା, 'ମୋର ସାଙ୍ଗ । ଓଡ଼ିଆ ସାହିତ୍ୟର ଜଣେ ସଫଳ ହସ୍ତାକ୍ଷର ।'

ବିଶେଷଣଟି ନୂଆଁ କରି ଶୁଣିଲି । ଭଲ ଲାଗିଲା । ତା' କଥାରେ ଏତେ ଆତ୍ମବିଶ୍ୱାସ ଥିଲା ଯେ, ଲାଗିଲା ଅତିରଂଜନ ହୋଇପାରେ, ମାତ୍ର ସେଥିରେ ବ୍ୟାକରଣଗତ ଅଶୁଦ୍ଧି ନାହିଁ ।

ଆଖି ପିଛୁଳାକେ ହଲ ଭର୍ତ୍ତି ହେବାର ଇଲମ ମାଲୁମ ହେଲା ପରେ ତା' ପ୍ରତି ମୋର ଆଉ ଈର୍ଷା ନ ଥିଲା; ଥିଲା ତା ଶକ୍ତିକୁ ପୂଜା କରିବାର ଚିରନ୍ତନ ଆଗ୍ରହ ।

ଚା'ପାନ ପରେ ପୁଣି ସେମିନାର ଆରମ୍ଭ ହେଲା । ଅଧିବେଶନର ସଭାପତି ଟୁଲୁବାବୁଙ୍କ ଆଇ·ଏ·ଏସ୍·ବାଲା ନିର୍ଦ୍ଦେଶ: ଦଶ ମିନିଟରୁ ଅଧ ମିନିଟ ବି କୌଣସି ବକ୍ତାଙ୍କୁ ଅଧିକ ସମୟ ଦିଆଯିବ ନାହିଁ । ତେଣିକି ଚାରିଜଣ ବକ୍ତା ଧଡ଼ାଧଡ଼ ନିଜ ନିଜ ପ୍ରବନ୍ଧକୁ ପଢ଼ିଗଲେ । କୌଣସି ଆଇ·ଏ·ଏସ୍·ଙ୍କଠାରୁ ତାଙ୍କ ସମୟ ଜ୍ଞାନ କମ ନ ଥିବାର ଦର୍ଶାଇ ଜଣେ ବୟସ୍କ ବକ୍ତା, ଯିଏ ବଂବେରେ ଲୋକଙ୍କ ଗହଣରେ ସାକ୍ଷରତା ଅଭିଯାନ ଚଲାନ୍ତି ବୋଲି ଆମେ

କୁହାହେଲୁ, ଦଶ ମିନିଟ ହୁଅନ୍ତେ ବାକ୍ୟକୁ ଅଧାରେ ରଖି ବସିଗଲେ । ଜଲଦିବାଜି ଚକ୍କରରେ ବାକ୍ୟର କ୍ରିୟା ଗୁଡ଼ିକୁ ସେ ବୁଢ଼ା ପାଟିରେ ଖାଇଯାଇ ଥିବାରୁ, ଏମିତି ଅର୍ଥ ଅବୁଝା ରହୁଥିଲା । ଏବେ ବାକ୍ୟ ଅସମାପ୍ତି ହେତୁ ତାଙ୍କର ସମଗ୍ର ବକ୍ତବ୍ୟ ସାଙ୍ଗରେ ବ୍ୟକ୍ତିତ୍ୱ ବି ଝାପସା ଝାପସା ଲାଗିଲା । ମଲ୍ଲଯୁଦ୍ଧରୁ ଫେରିଲା ପରି ସେ ଉତ୍ତେଜିତ ଜଣା ପଡୁଥାନ୍ତି । ସଭାପତିଙ୍କ ଅନୁରୋଧ ସତ୍ତ୍ୱେ ସେ ବାକ୍ୟଟିକୁ ପୂରା କଲେ ନାହିଁ ।

ଜଣେ ଆଶାବାଦୀ ବକ୍ତା ନିଜେ କାମ କରୁଥିବା ଆଦିବାସୀ ଅଞ୍ଚଳରେ ସାକ୍ଷରତା ଏକ ଗଣଆନ୍ଦୋଳନର ରୂପ ନେଲାଣି ବୋଲି କହିଲେ । ମିଶନର ଗାଡ଼ି ଆସିଲେ ଲୋକ ଖାଇବା ଛାଡ଼ି ଛୋଟ ଛୁଆ ପରି ପଛରେ ଦୌଡ଼ନ୍ତି; ପ୍ରଚାର ପତ୍ର ମାଗି ନିଜ ଶୋଇବା ଘରେ ଲଟକାନ୍ତି । ସେଦିନ କୁଆଡ଼େ ଆଉ ବେଶି ଦୂର ନୁହେଁ, ଯେଉଁଦିନ ମିଶନର ପତାକା ତ୍ରିରଙ୍ଗ ପତାକା ସହ ତାଳଦେଇ ଉଡ଼ିବ ।

ତୃତୀୟ ବକ୍ତା ହେଲେ ଜଣେ ସାଂବାଦିକ, ମହାନଗରୀର ବାସିନ୍ଦା । ବ୍ୟଙ୍ଗାତ୍ମକ ଶୈଳୀରେ ଉଦାହରଣ ଦେଇ ସେ ଯୁକ୍ତି କଲେ, 'ସାକ୍ଷରତା ଏକ ଶସ୍ତା ସରକାରୀ ସ୍ଲୋଗାନ, ନାଟକ ବାଜି । ମିଶନ ମିଶନ ନୁହେଁ, ବରଂ କମିଶନ ଖାଇବାର ଏକ ଶସ୍ତା ବିକଳ୍ପ । ପଇସା ନିଅ ମିଶନରୁ ଆଉ ଦିନ ଦି' ପହର ସରକାରର ଜୟଗାନ କର । ସଭାପତିଙ୍କୁ ବାଦ ଦେଲେ ବାକୀମାନେ ପାଟିକଲେ, 'ସାକ୍ଷରତାକୁ ଏମିତି ହସି ଉଡ଼ାଇ ଦେଲେ ହେବ ନାହିଁ ।' ଦିଲ୍ଲୀର ଆରାମ ଚୌକୀରେ ବସି, ଲୋକ ଗହଣକୁ ନ ଯାଇ ଏମିତି ଶାଳୀନତା-ଶୂନ୍ୟ ମନ୍ତବ୍ୟର କୁଆଡ଼େ କିଛି ଯଥାର୍ଥତା ନାହିଁ । ବକ୍ତା ନିରୁତ୍ତର ରହିଲେ, ସଭାପତି ତଟସ୍ଥ ।

ଅଧିବେଶନର ଶେଷ ନିବନ୍ଧ, ସାକ୍ଷରତା ଓ ନାରୀ, ତାର ଲେଖିକାଙ୍କ ପରି ଥିଲା ସାଧାସିଧା, ନିରାମିଷ ଗୋଷ୍ଠୀର । ତେଣୁ ବିନା ବାଦ-ବିବାଦରେ ପାରି ହେବା ଥିଲା ତାର ନିୟତି । ଆୟୋଜକ ଏଥିରେ କିନ୍ତୁ ଉତ୍‌କ୍ଷିପ୍ତ ହୋଇ କହିଲେ, 'ମହିଳା ସମସ୍ୟା ନେଇ ଆମେ କେତେ ଉଦାସୀନ-ଆମ ମୌନତାରୁ ତାହା ପ୍ରମାଣିତ ହୁଏ । ଆମ ଅଜାଣତରେ ମହିଳାଙ୍କ ସମସ୍ୟା ବିରୁଦ୍ଧରେ ପୁରୁଷ ସମାଜର ସଭ୍ୟ ଭାବରେ ଆମେ ଷଡ଼ଯନ୍ତ୍ର ରଚିବସୁଁ ।' ମୁଁ ନିଜେ ବି ଉକ୍ତ ଷଡ଼ଯନ୍ତ୍ରର ଜଣେ ରଚନାକାରୀ ହୋଇଥିବାରୁ ଏବଂ ଆମ ଚକ୍ରାନ୍ତ ଆୟୋଜକଙ୍କ ହାତରେ ଧରାପଡ଼ି ଯାଇଥିବାରୁ, ଦୁଃଖ ଲାଗିଲା । ପରେ ଜଣାଗଲା ଯେ ଲେଖିକା ହେଉଛନ୍ତି ଆୟୋଜକଙ୍କ ପତ୍ନୀ ଓ ନିରାମିଷ ନିବନ୍ଧ ଲେଖି ବିଭିନ୍ନ ସେମିନାରରେ ଯୋଗ ଦେବାରେ ଖୁବ ସିଦ୍ଧହସ୍ତ ।

ସ୍ୱଳ୍ପ ସମୟର ପ୍ରଶ୍ନୋତ୍ତରରୁ ମୋତେ କେତୋଟି ତଥ୍ୟ ମିଳିଲା । ପ୍ରଥମ: ସାକ୍ଷରତା

ପ୍ରଶ୍ନକୁ ଆମକୁ ବୁଝିବାକୁ ହେବ; ଏଥିପାଇଁ ଦିଲ୍ଲୀରେ ପରିଚର୍ଚ୍ଚା ଯଥେଷ୍ଟ ନୁହେଁ, ଲୋକ ଗହଣକୁ ଯିବାକୁ ହେବ । ଦ୍ୱିତୀୟ : କେବଳ ବକ୍ତା କାହିଁକି, ଉପସ୍ଥିତ ସଭାସଦ ବି ଝୋପଡ଼ିରେ ଆଦିବାସୀଙ୍କ ସାଙ୍ଗରେ, ଯାହାକୁ ସମସ୍ତେ ଜନତା ବୋଲି କହୁଥିଲେ, ଦିନ କାଟିଛନ୍ତି । ତୃତୀୟ : ପ୍ରାୟ ସମସ୍ତେ ପ୍ରଶ୍ନ ଆକାରରେ ଉତ୍ତର ଦେଉଥିଲେ । ଏଥିରେ ସଭାପତି ଶେଷରେ ଉତ୍କ୍ଷିପ୍ତ ହୋଇ ଜଣଙ୍କୁ ପଚାରିଲେ, ତାଙ୍କ ପ୍ରଶ୍ନ କ'ଣ ?

ପ୍ରଶ୍ନକର୍ତ୍ତା ପଚାରିଲେ, 'ଲଞ୍ଚ କେବେ ହେବ? ସେଥିରେ କେବଳ ନିମନ୍ତ୍ରିତ ଅତିଥିମାନେ ଆମନ୍ତ୍ରିତ, ନା ଉପସ୍ଥିତ ସମସ୍ତେ?'

ଆୟୋଜକ ଉଠି ପ୍ରଶ୍ନର 'ଆସ୍ତିସୂଚକ' ଉତ୍ତର ଦେଲା ଉତ୍ତାରୁ ପର୍ବ ସାଙ୍ଗ ହେଲା; ସମସ୍ତେ ସାମାନ୍ୟ ଦୂରରେ ସ୍ଥିତ ଗେଷ୍ଟ ହାଉସ ଅଭିମୁଖେ ଲଞ୍ଚ ପାଇଁ ଚାଲିଲୁ ।

ଲଞ୍ଚ ମଧ୍ୟ ଖୁବ ଭଲ ହୋଇଥିଲା । ଆଇସକ୍ରିମ, ଚିକେନ ବି ବଫେ । ସମସ୍ତେ ଆୟୋଜକଙ୍କ ପ୍ରଶଂସାରେ ଶତମୁଖ । ତାଙ୍କର ସବୁ ସେମିନାର କୁଆଡ଼େ ଏଭଳି ସଫଳ ଶ୍ରେଣୀଭୁକ୍ତ ।

ଆୟୋଜକଙ୍କ ପତ୍ନୀ ଏକା ଏକା ବସି ଖାଉଥିଲେ । ମହିଳା ନିବନ୍ଧଟି ଉପରେ ଆରମ୍ଭ ହୋଇ ନଥିବା ବାଦ-ବିସଂବାଦକୁ ହୁଏତ ମନେ ମନେ ଦୋହରାଉଥିଲେ ଏବଂ ତଦ୍‌ଜନିତ ଗ୍ଲାନିକୁ ପୁରୁଷ ସମାଜ ବିରୁଦ୍ଧରେ ନିକ୍ଷେପ କରୁଥିଲେ । ଏ ସବୁକୁ ଛାଡ଼ି ପତିଙ୍କ ମୋଟା ଫାଇଲଟିକୁ ମଧ୍ୟ ସେ ବୋହିଥିଲେ ।

ହଲର କୋଣରେ ମୋର ଜଣେ ଜଣାଶୁଣା ବ୍ୟକ୍ତିଙ୍କୁ ଦେଖି, ମୁଁ ତାଙ୍କ ପାଖକୁ ଗଲି । ସେମିନାର ବେଳେ ତାଙ୍କର ଦେଖା ନଥିଲା । ଉଭୟଙ୍କର ବାଁ ହାତରେ ପ୍ଲେଟ ଓ ଡାହାଣ ହାତ ଅଇଁଠା । ଦୁହେଁ କହୁଣିକୁ କହୁଣି ଛୁଆଁଇ ହାତ ମିଳାଇବାର ନୈତିକତା ପୂରା କଲୁ । ମୋର ମୁହଁ ଖୋଲିବା ଆଗରୁ ସେ ପଚାରିଲେ, 'ଆଜିକାଲି କାହାକୁ ପଢୁଛ?' ମନ ଡାକୁଥିଲା କହିବି, 'ଖବର କାଗଜ ଏବଂ ତା ବି ପୁରୁଣା ।' କିନ୍ତୁ ଭୟ ହେଲା କାଳେ ଲୋକଟି ମୋର ଉକ୍ତିକୁ ସତ ମଣିପାରେ (ଅବଶ୍ୟ ତାହା ସତ) । ଜବାବ ଦେଲି, 'ଡାରିଡା' । ସେ ପରାମର୍ଶ ଦେଲେ, 'ଫୁକୋକୁ ପଢ଼ନ୍ତୁ ।' ଗତଥର 'ମାର୍କ୍ସ' ସ୍ଥାନରେ 'ଏଂଗେଲ୍‌ସ'କୁ ପଢିବାକୁ ପରମର୍ଶ ଦେଇଥିଲେ ସେ । ମୋର ସ୍ପଷ୍ଟୀକରଣ ଦେବା ଆଗରୁ ସେ ଦୁହୁଡ଼ା ଚିକେନ ଆଣିବା ସକାଶେ 'ଏକସ୍‌କ୍ୟୁଜ ମି' କହି ଚାଲିଗଲେ । ମୁଁ ଯେଉଁ ଏକାକୁ ସେହି ଏକା ରହିଗଲି ।

ବନ୍ଧୁ ରବୀନ୍ଦ୍ର ସାଙ୍ଗରେ ଏ ଯାଏଁ କଥା ହେବାର ମଉକା ମତେ ମିଳି ନଥିଲା । ହୁଏତ ଭେିୟାମାନେ ତାଙ୍କୁ ଘେରି ରଖୁଥିଲେ ଅଥବା ଟୁଲୁ ବାବୁ ଆଦିଙ୍କୁ ସେ ନିଜ ଘେରରେ

ରଖୁଥିଲା । ବକ୍ତବ୍ୟ ତା'ର ଲଞ୍ଚ ପରବର୍ତ୍ତୀ ଅଧିବେଶନରେ ହେବାର ଥିଲା । ଲଞ୍ଚପରେ ନିହାତି ରହିବାକୁ ସେ ତା ଭେିୟାମାନଙ୍କୁ ତାଗିଦ ଓ ବଡ଼ମାନଙ୍କୁ ହାତ ଯୋଡ଼ି କରି କହୁଥିଲା । ଶେଷରେ ମତେ ମଧ୍ୟ ରାତ୍ରୀର ରହଣିଠାରୁ ଉତୁରି ଅନ୍ତତଃ ସେମିନାର ଶେଷ ଯାଏଁ ରହିବାକୁ କହିଲା । 'ଏତେ ଲୋକ ତ ଅଛନ୍ତି' ବୋଲି ମୁଁ ଏଡ଼ାଇ ଦେବାରୁ, ଆମ ପୁରୁଣା ସ୍ମୃତିକୁ ରୋମନ୍ଥନ କରି କହିଲା, 'ଯେତେ ଲୋକ ଥିଲେ ବି ମତେ ତୋର ମନ୍ତବ୍ୟ ଚାହି ।' ଲାଗିଲା, ଅନୁଯାୟୀଙ୍କ ଉପରେ ତାର ବିଶେଷ ଭରସା ନାହିଁ; ଲଞ୍ଚ ପରେ ଧୋକା ଦେଇ ପାରନ୍ତି କାଳେ ।

ବୟସ୍କ ବକ୍ତା ସାକ୍ଷରତା ବଦଳରେ ଏବେ ସମୟଜ୍ଞାନ ଉପରେ ଚର୍ଚ୍ଚା କରୁଥିଲେ । ଆଇସକ୍ରିମ ତାଂକର ପ୍ରିୟ ଡିସ୍ ।

ଟୁଲୁବାବୁ ସୋଫାରେ ବସିଥିଲେ । ଅନ୍ୟମାନଂକ ଭଳି ବୁଲି ବୁଲି ସେ ଖାଦ୍ୟ ସଂଗ୍ରହ କରୁ ନ ଥିଲେ । ପ୍ଲେଟରୁ ଆରମ୍ଭ କରି ତାଙ୍କ ପାଇଁ ଚିକେନ ବାଛିବା ଯାଏଁ କାମ ଆଗ୍ରହରେ ଆୟୋଜକ କରୁଥାନ୍ତି । ଦାୟିତ୍ୱରୁ ସାମାନ୍ୟ ମୁକ୍ତି ମିଳିଲେ, ଅନ୍ୟମାନଙ୍କୁ ପଚାରନ୍ତି, 'କେମିତି ହୋଇଛି?' ପ୍ରାୟ ଲୋକେ ଲଞ୍ଚ ଭାବି 'ଭଲ' ବୋଲି ଜବାବ ଦିଅନ୍ତି ।

ବ୍ୟଙ୍ଗକାର ଏକା ବୁଲି ବୁଲି ଖାଦ୍ୟ ସଂଗ୍ରହ କରୁଥିଲେ । ତାଙ୍କର କେହି ଗ୍ରାହକ ନ ଥା'ନ୍ତି । ଖାଲି ଥିବାର ଦେଖି ମୁଁ ସାକ୍ଷାତ କଲି । ଆୟୋଜକ ଓ ମିଶନବାଲାଙ୍କୁ ସେ ଶତ୍ରୁ ଘୋଷଣା କରିଥାନ୍ତି । ସଭାସଦଙ୍କ ଉପେକ୍ଷା ଏବଂ ତଦ୍‌ଜନିତ ଏକାକୀତ୍ୱ ଦେଖି ତାଙ୍କ ପ୍ରତି ମୋର ଦୟାଭାବ ଉଠିଲା । ହେଲେ, ଆଗ ପରି ଏବର ଧାରଣା ବି ଭୁଲ ପ୍ରମାଣିତ ହେଲା । ଉପେକ୍ଷାକୁ ସେ ଉପାଧି ଭଳି ସାଉଁଟିଛନ୍ତି; ଏକକୀତ୍ୱର ସୁଯୋଗ ନେଇ ଚିକେନ ପରେ ଚିକେନ ଖାଉଛନ୍ତି । ପୁଣି ତାଙ୍କୁ ତାଙ୍କ ଏକାକୀତ୍ୱରେ ଛାଡ଼ିଦେଇ ମୁଁ ଲଂଝାତାରା ସଦୃଶ ଡାଇନିଂ ହଲ ସାରା ଘୁରି ବୁଲିଲି ।

ଲଞ୍ଚ ଯୋଗୁଁ ଓ ଉତ୍ତାରୁ ସେମିନାରର ସଫଳତାକୁ ନେଇ କାହାରି ମନରେ ସନ୍ଦେହ ନଥାଏ । ଭୀଡ଼ କାମ ଯୋଗୁଁ ଟୁଲୁ ବାବୁ ଆଉ ହଲକୁ ଫେରିଲେ ନାହିଁ । ବୟସ୍କ ବକ୍ତା ଆଦି ଦିଲ୍ଲୀ ବୁଲିଗଲେ । ଦଳପତିଙ୍କୁ ମଞ୍ଚାସୀନ କରି ଅନେକ 'ଭେିୟା' ବି ଧୋକା ଦେଇଗଲେ । କେତେଜଣ ବକ୍ତା ଓ ନାମକରା ପ୍ରଶ୍ନକର୍ତ୍ତାଙ୍କୁ ବାଦ ଦେଲେ ଲଞ୍ଚ ପରର ଅଧିବେଶନରେ ହଲ ଖାଲି ଥିଲା ପ୍ରାୟ । ପ୍ରଶ୍ନୋତ୍ତର ପାଇଁ ଯାହାକୁ ଯେତେ ସମୟ । ଆୟୋଜକ ଖୁସ ଥା'ନ୍ତି ।

ଲଞ୍ଚ ଖାଇଥିବାର ଅପରାଧବୋଧ ଯେତେବେଳଯାଏଁ ମତେ ଘାରିଲା, ହଲରେ ବସିଲି । ପରେ ନିଦ ଘାରିଲାରୁ, ଉଠି ଆସିଲି । ସେମିନାର ଚାଲିଥାଏ ।



# ସଚ୍ଚୋଟ ମଣିଷ

ନାଁ ତାର ନଟବର । ସାମାନ୍ୟ ସଚ୍ଚୋଟ କିସମର ଲୋକ ସେ । ଗାଁ ଲୋକଙ୍କ ବେଇମାନିରେ ଅତିଷ୍ଠ ହୋଇ ଦିନେ ସହରକୁ ଚାଲି ଆସିଲା । ହେଲେ ସହରରେ ବି ସେହି ଦୁରବସ୍ଥା । ସବୁଆଡ଼େ ଖାଲି ବେଇମାନି । କ'ଣ କରିବ? ଯେଉଁଠି ହେଲେ ତ ରହିବାକୁ ହେବ । ତେଣୁ ସାଧୁତାକୁ ଆଶ୍ରୟ କରି କିଛି ଗୋଟାଏ ଧନ୍ଦାର ଯୋଗାଡ଼ରେ ସେ ସହରରେ ରହିଗଲା ।

ନଟବର ସାମାନ୍ୟ ପଢ଼ାଲିଖା ଲୋକ । ତାର ସାଧୁତାକୁ ନେଇ ଗାଁରେ ପ୍ରଚଳିତ କାହାଣୀ ସବୁ, ତେଣୁ, ସେ ପାଖ ପଡ଼ୋଶୀଙ୍କ ଗହଣରେ କହି ପାରୁଥିଲା । ତା କହିବା କଥା ଯେ-ଆଜି କାଲିକା ଯୁଗରେ ସାଧୁ, ସଚ୍ଚୋଟ, ଇମାନଦାର ଲୋକ ପାଇଁ ଚଳିବା ମୁସ୍କିଲ । ଗାଁ, ସହର, ସବୁଆଡ଼େ ଖାଲି ବେଇମାନି । ସାଧୁ ଲୋକକୁ ସମସ୍ତେ ପାଗଳ ଭାବନ୍ତି । ଦୁନିଆଁର ଗତିରୀତି ଦେଖି ତାକୁ ଗରମ ତେଲ କଡ଼େଇରେ ପଡ଼ିଲା ଭଳି ଲାଗେ । ସାଧୁତାକୁ ନେଇ ତା ଭାଷଣ ଶୁଣିଶୁଣି କିଛି ଦିନ ପରେ ପାଖ ଲୋକେ ତାକୁ 'ସାଧୁଭାଇ' ବୋଲି ଡାକିଲେ । ସହରରେ ତାର ସମ୍ମାନ ବଢ଼ିଲା ।

ପତ୍ନୀ ଛୁଆପିଲାଙ୍କୁ ଧରି ଗାଁରେ ରହୁଥାଏ । ନଟବରର ସାଧୁତା ଯୋଗୁଁ ସେ ଖୁବ ମନଦୁଃଖ କରେ । ଅବଶ୍ୟ ତାର ଶାଢୀ ଚିରି ନଥାଏ, କିନ୍ତୁ ଚିରିବା ଉପରେ । ଛୁଆମାନେ ଏ ଯାଏଁ ସ୍କୁଲ ଯାଇ ନଥାନ୍ତି, ତେଣୁ ସ୍କୁଲ ଫିସ ପାଇଁ ପଇସା ଊଣା ହେବାର ବି ଆଶଙ୍କା ନଥାଏ । ସବୁଠାରୁ ବଡ଼ କଥା, ନଟବରର ବାପ ବୁଢ଼ା ହେବା ଆଗରୁ ମରି ସାରିଥାଏ, ତେଣୁ ତା'ର କାଶ ପାଇଁ ଔଷଧର ବି ଆବଶ୍ୟକତା ପଡ଼ି ନଥାଏ । ଯା' ସତ୍ତ୍ୱେ ପତ୍ନୀ ତା' ଉପରେ ଖୁବ୍ ନାରାଜ ରହେ ।

ଦିନେ କିଛି ପଇସା ଧାର ଉଧାର କରି ପତ୍ନୀ ଛୁଆପିଲାଙ୍କୁ ଧରି ନଟବର ପାଖରେ ସହର ପହଞ୍ଚିଗଲା । ଏବେ ଆଉ କ'ଣ—ନଟବରର ଦୁଃଖ ବଢ଼ିଗଲା । ଇମାନଦାରୀକୁ ବିଷୟବସ୍ତୁ କରି ରୋଜ ପତି-ପତ୍ନୀ କଳହ କଲେ । ଯା'ପରେ ନଟବରର ସାଧୁତାକୁ ନେଇ ପରା ପାଠକରେ ଯାହା ଟିକେ ସଂଦେହ ଥିଲା ଚାଲିଗଲା; କାହାରି ମନରେ ଆଉ ସନ୍ଦେହ

ରହିଲା ନାହିଁ । ଫଳତଃ ସହରରେ ତାର ଆହୁରି ସମ୍ମାନ ବଢ଼ିଲା ।

ପତ୍ନୀର କହିବା କଥା-ଏ ଦୁନିଆଁ ଯେହେତୁ ଇମାନଦାର ଲୋକଙ୍କ ପାଇଁ ଉର୍ଦ୍ଦିଷ୍ଟ ନୁହେଁ, ସେଭଳି ଲୋକ ବରଂ ଧାର ଉଧାର କରି ହିମାଳୟକୁ ଚାଲିଯିବା କଥା । ଉଧାର ଦାତା ପରେ ଛୁଆପିଲାଙ୍କୁ ବନ୍ଧକ ରଖନ୍ତୁ ପଛେ । ନଟବର ଯୁକ୍ତି କରେ:-ଦୁନିଆଁ ପାଇଁ ନୁହେଁ, ବରଂ ସେ ନିଜର ମାନସିକ ଶାନ୍ତି ପାଇଁ ସଚ୍ଚୋଟ ରହେ । ସାଧୁତା ତାକୁ ଶାନ୍ତି ଦିଏ, ଦିନ ଆସିବ ସାଂସାରିକ ସୁଖ ବି ଦେବ । ନଟବରର ଯୁକ୍ତି ଯେତେ ବଳିଷ୍ଠ ହେଲେ କ'ଣ ହେବ, ପତ୍ନୀ ତ ଆଉ ତା'ର ଗୁଣ ବଦଳେଇବ ନାହିଁ । ସେ ପତିକୁ ମୂର୍ଖ ମନେକରେ । ଛୁଆମାନେ କିଛି ନ ବୁଝି ଶୁଝି ମା'ର ପକ୍ଷ ନିଅନ୍ତି । ନଟବରର ସଂସାର ଏମିତି ଧୀରେ ସୁସ୍ତେ ଚାଲିଥାଏ । ଛୋଟ ଛୋଟ ଅନେକ ଘଟଣା ଘରେ ଘଟିଯାଏ । ସବୁଥିରୁ ତା'ସାଧୁତାର ନିଦର୍ଶନ ମିଳେ । 'କଳିଯୁଗରେ କେହି ସଚ୍ଚୋଟ ନାହାନ୍ତି' ବୋଲି ଧାରଣା ପାଳିଥିବା ନିରାଶବାଦୀମାନେ ମଧ୍ୟ ହାର ମାନନ୍ତି । ହେଲେ ସବୁ ବଖାଣିଲେ ଅନେକ ସମୟ ଯିବ । ମୋଟ କଥା ହେଲା: ନିଜ ସାଧୁତାକୁ ଜୀବିତ ରଖିବା ପାଇଁ ସେ ଖୁବ କଷ୍ଟ ସହେ ଅର୍ଥାତ୍ ଦିନ ମଜୁରିଆ ଭାବେ ପରିଶ୍ରମ କରି ଅର୍ଥ ଉପାର୍ଜନ କରେ । ସୁଖେ-ଦୁଃଖେ ଦିନ କଟିଯାଏ ।

ଦିନକର କଥା । ମଜୁରୀ ମିଳିଥାଏ । ନଟବର ସ୍ଥିର କଲା-କେତୋଟି ମିଡ଼ିଲ କ୍ଲାସ କିସମର ଜିନିଷ କିଣିବ । ଯଥା: ପତ୍ନୀ ପାଇଁ ସେନିଟେରି ନେପକିନ, ଛୁଆଙ୍କ ପାଇଁ ଅଙ୍କଲଚିପ୍ସ ଓ ମେଗିନୁଡୁଲ୍ ଏବଂ ତା ନିଜ ପାଇଁ ସେଂପୋ । ପ୍ରଶ୍ନ ଉଠିପାରେ-ନଟବରର ନିମ୍ନ ମଧ୍ୟବିତ୍ତ ପରିବାର ପାଇଁ ଏଭଳି ଜିନିଷର କି ଦରକାର? କାହାଣୀର କଳେବରକୁ ସୀମିତ ରଖିବା ଯଦି ଆମର ଉଦ୍ଦେଶ୍ୟ, ତେବେ ଧରି ନିଆଯାଉ ଯେ ନଟବର ଓ ତା ପରିବାର ଉପରେ ଦୂରଦର୍ଶନ ବିଜ୍ଞାପନର ଖୁବ୍ ପ୍ରଭାବ ।

ଜିନିଷ କିଣିବା ପାଇଁ ସେ ଗୋଟାଏ ବଡ଼ ଦୋକାନକୁ ଗଲା । ଜିନିଷତକ ବେଗରେ ଭର୍ତ୍ତିକଲା । ବରଂ କହିଲେ ଭଲ ହେବ ଯେ, ଦୋକାନର ଚାକର ପିଲା ନିଜେ ଗୋଟି ଗୋଟି କରି ଜିନିଷ ତା ବେଗରେ ସାଇତି ଦେଲା । ପୂରା ଦେଢ଼ଶହ ଟଙ୍କାର ମାଲ । ତେଣିକି ନଟବର ବେଗ ଧରି ଦୋକାନରୁ ବାହାରି ଆସିଲା । କାଉଣ୍ଟରରେ ପଇସା ଦେବା କଥା ତାର ମୋଟେ ମନେ ପଡ଼ିଲା ନାହିଁ । ଆଶ୍ଚର୍ଯ୍ୟ କଥା-ଚାକର ପିଲା ତାକୁ ଅଟକେଇଲା ନାହିଁ । ମୁନିମ ପଇସା ମାଗିଲା ନାହିଁ । ଭାଗ୍ୟକୁ ମାଲିକ ବି ଉପସ୍ଥିତ ଥାଏ; ମାତ୍ର ଫୋନ କରିବାରେ ଏତେ ବ୍ୟସ୍ତ ଥାଏ ଯେ, ନଟବର ଉପରେ ତା'ନଜର ପଡ଼ିଲା ନାହିଁ । ପୁଞ୍ଜାକୁ ପୁଞ୍ଜା ଦ୍ୱାରପାଳ ଥିବା ସତ୍ତ୍ୱେ ନବଜାତ କଳା କହ୍ନେଇଙ୍କୁ ଧରି ବିନା କୌଣସି ପ୍ରତିବନ୍ଧକରେ

ବସୁଦେବ ଯେମିତି ମଥୁରାରୁ ଗୋପକୁ ଟୁର ଟୁର ଚାଲି ଆସିଲେ ଅବିକଳ ସେମିତି କଥା । ପାଖରେ ପଇସା ଅଛି, ଦେବା ପାଇଁ ମନ ଅଛି; କିନ୍ତୁ ପରିସ୍ଥିତିର ପ୍ରରୋଚନାରେ ସେ ଦେଇ ପାରିଲା ନାହିଁ । ପୁରା ଫିଲ୍ମ ଭଳି କଥା ।

ଘରେ ପହଞ୍ଚିଲା ପରେ ଝାଳ ପୋଛିବା ପାଇଁ ହୁଏତ ସେ ରୁମାଲ କାଢ଼ିଥିବ, ଅଥବା ବଳକା ରେଜା ପଇସାତକ ବସ୍ତୁବାଦୀ ପତ୍ନୀ ହାତରେ ଦେବା ସକାଶେ ପକେଟ ଅଣ୍ଡାଳିଥିବ । ୟେ କ'ଣ? ସେ ତ ଦୋକାନରେ ପଇସା ଦେଇନି । ଧର୍ମ ସଂକଟ । ତା'ସାଧୁତାର ଅଗ୍ନି ପରୀକ୍ଷା । ନଟବରର ଇମାନଦାରୀ ଉପରେ ଗଭୀର ଧକ୍କା । ଚିତ୍କାର କରିଥାନ୍ତା, ମାତ୍ର ସାନ ଛୁଆଟି ନିଦରୁ ଉଠି ପଡ଼ିବା ଡରରେ ଚୁପ ରହିଲା । ଘଟଣାଟିକୁ ନେଇ ସେ ଏତେ ବିଚଳିତ ହେଲା ଯେ, ପତ୍ନୀ ନଜରରୁ ତାହା ବାଦ ଗଲା ନାହିଁ । ତେଣିକି ଆଉ କ'ଣ? 'କଥା କ'ଣ? ମତେ ନ କହିଲେ ଆଉ କାହାକୁ କହିବ? କିଏ ତୁମକୁ ଅସାଧୁ କହିଦେଲା କି?' ଆଦି ପ୍ରଶ୍ନ ବଳରେ ପତ୍ନୀ ଦୁଧ କଢ଼ା ମେସିନ ଗାଈ ଛିରରୁ ଗୋରସ କାଢ଼ିଲା ପରି ତା'ଠାରୁ ସବୁ କଥା ଅସୁଲ କରିନେଲା ।

ଏଥୁ ଅନ୍ତେ ସାଧାରଣତଃ ଯାହା ହୁଏ... । ନଟବରର ଇମାନଦାରୀକୁ ବାଃ ବାଃ କରିବା ପରିବର୍ତ୍ତେ ପତ୍ନୀ ଖୁବ୍ ରାଗିଲା । ସାଧୁତାକୁ ତର୍କର ବିଷୟବସ୍ତୁ କରି ପତିପତ୍ନୀ ରୋଜଦିନ ଭଳି ଯୁକ୍ତି ଅର୍ଥାତ ଝଗଡ଼ା ଆରମ୍ଭ କଲେ । ପତ୍ନୀର ଅନେକ ତର୍କ । ପ୍ରଥମ : ତୁମେ ତ ଚୋରୀ କରିନ । ତେଣୁ ଏଥିରେ ବେଇମାନିର ପ୍ରଶ୍ନ କେଉଁଠି? ଦ୍ୱିତୀୟ : ଯଦି ଏବେ ଯାଇ ଦୋକାନୀକୁ ସବୁ କଥା କୁହ, ଚୋରୀ ଅଭିଯୋଗରେ ସେ ତୁମକୁ ପୋଲିସରେ ଦେଇଦେବ, କାରଣ ଜମାନା ଖରାପ । ତୃତୀୟ : ଭଗବାନ ହୁଏତ ଆମ ଦୁରବସ୍ଥା ଦେଖି କିଛି ଟଙ୍କା ସାହାଯ୍ୟ କଲେ । ତାଙ୍କ ଦାନକୁ ଗ୍ରହଣ ନ କରିବା ମାନେ ଭଗବାନଙ୍କ ଅସମ୍ମାନ । ଚତୁର୍ଥ : ଦୋକାନୀଟି କେଉଁ ସଚ୍ଚୋଟ ଯେ? ଦେଢ଼ଶହ ଟଙ୍କାର ମାଲରେ ସେ ଅଧା ଲାଭ କରୁଥିବ । ତେଣୁ କାଲି ଯାଇ ଏହି ଟଙ୍କାରେ ଆଉ କିଛି ଜିନିଷ କିଣିଆଣ । ତେଣିକି ସେ ତା ଦାମ ଫେରିପାଉ । ପଞ୍ଚମ : କେଉଁ ଗରିବଠାରୁ ତ ଟଙ୍କା ଖାଇ ଯାଇ ନ ଯେ ପାପ ଲାଗିବ । ଶେଷ ଏବଂ ସବୁଠାରୁ ଶକ୍ତିଶାଳୀ ତର୍କ : ତୁମର ଯଦି ଏତେ ସଚ୍ଚୋଟ ରହିବାର ଅଛି, ବରଂ ଏହି ଟଙ୍କା ନେଇ ସାର ଦୋକାନକୁ ଯାଅ ଆଉ ପୋକମରା ଔଷଧ କିଣିଆଣ । ପ୍ରଥମେ ଆମସଭିଙ୍କୁ ପୋକମରାତକ ଖୋଇଦିଅ । ତେଣିକି ମନଇଚ୍ଛା ଜୀବନଭର ସଚ୍ଚୋଟ ରହ । ନଟବରର କିନ୍ତୁ ଏକା ଜିଦ – ସେ ଦୋକାନୀକୁ ଯାଇ ପଇସା ଦେଇ ଆସିବ ।

ଝଗଡ଼ା ସାରୁଁ ସାରୁଁ ଅନେକ ରାତି ହୋଇଗଲା । ଫଳରେ ନଟବର ନିଜ ଇଚ୍ଛାମତେ

ନା ବଡ଼ ଦୋକାନକୁ ପଇସା ଦେବାକୁ ଗଲା, ନା ପତ୍ନୀର କଥା ମାନି ସାର ଦୋକାନକୁ ଗଲା । ପତ୍ନୀ ତ ଖାଲି ରାଗରେ ତମ ତମ । ଶେଷରେ ଛୁଆପିଲା ସମସ୍ତେ ମିଶି କିଣା ହୋଇ ଆସିଥିବା ନୁଡୁଲ୍ସ ଏବଂ ଅଙ୍କଲଚିପ୍ସ ଖାଇ ଶୋଇପଡ଼ିଲେ ।

ତା ପରଦିନ ନଟବରର ସକାଳେ ଦୋକାନକୁ ଗଲା । ଏକଥା କହିବା ହୁଏତ ଅନାବଶ୍ୟକ ଯେ ସେ ପ୍ରାତଃକର୍ମ ନ ସାରୁଣୁ ଗଲା ଏବଂ ପଇସା ଦେବା ଉଦ୍ଦେଶ୍ୟରେ ଗଲା । ପତ୍ନୀ ବାସନ ମାଜୁଥାଏ; ଦେଖି ପାରିଲା ନାହିଁ । ତେଣୁ ଝଗଡ଼ାର ପ୍ରଶ୍ନ ଉଠିଲା ନାହିଁ ।

ଦୋକାନରେ ବହୁତ ଭୀଡ଼ । ଏତେ ସକାଳୁ ! ମାଲିକ ଖାଲି ପାଞ୍ଚ ଶହ ଟଙ୍କିଆ ନୋଟ ବିଡ଼ା ଗଣୁଥାଏ । ଅନ୍ୟଆଡ଼େ ତାର ନଜର ନାହିଁ । ଅନେକ ସାହସ ସଞ୍ଚୟ କରି ନଟବର ମାଲିକ ପାଖକୁ ଗଲା ଏବଂ ସବୁ କଥା ଖୋଲାସା କଲା ।

ମାଲିକ ତା କଥା ଶୁଣି ଖୁବ ଖୁସି । ଆଜି କାଲିକା ଯୁଗରେ ବି ଏମିତି ସତ୍ୟବାଦୀ, ଇମାନଦାର ଲୋକ ଅଛନ୍ତି-ଏକଥା ସେ ପରତେ ଯାଉନଥାଏ । ଅନେକ ଦିନରୁ ତା କାରବାର ବୁଝିବା ପାଇଁ ସେ ଜଣେ ସଚ୍ଚୋଟ ଲୋକର ତଲାସରେ ଥାଏ । ସେହିକ୍ଷଣି ନଟବରକୁ ତିନିହଜାର ଟଙ୍କା ମାସିକ ଦରମାରେ ସେ ମେନେଜର ପଦରେ ନିଯୁକ୍ତି ଦେଲା । ନଟବର ସଚ୍ଚୋଟ, ତା'ଠାରୁ ବଡ଼ କଥା ଆଧୁନିକ ବିଚାରର, ନୋହିଲେ କି ସେ ଏଭଳି ଜିନିଷ ସବୁ କିଣନ୍ତା !

ଚାକିରୀ ପାଇ ନଟବର ଖୁବ ଖୁସି । ଧନ୍ଦା ଯୋଗାଡ଼ରେ ସହର ଆସିଥିଲା । ସାଧୁତା ବଳରେ ତାହା ପାଇଲା । ମାଲିକର ତାଠାରେ ଘୋର ବିଶ୍ୱାସ । କେତେଥର କହିଲାଣି, ସବୁ ଦାୟିତ୍ୱ ନଟବର ହାତରେ ଦେଇ ସେ ଘରେ ବସି ହରି ନାମ ନେବ । ପତ୍ନୀ ବି ଖୁସ । ରାତିରେ ନଟବର ପାଦତଳେ ରୋଜ ମାଲପା ଲଗେଇଦିଏ; ଗେଲ ହୁଏ । ଛୁଆମାନେ ରୋଜ ସକାଳେ ବ୍ରେକଫାଷ୍ଟ କରନ୍ତି; ଭିଡ଼ିଓ ଗେମ ଖେଳନ୍ତି । ଆସନ୍ତା ମାସକୁ ନଟବର ସ୍କୁଟର କିଣିବ । କେବେ କେବେ ନଟବର ଢେର ମନ ଦୁଃଖ କରେ । କହେ : ଦୁନିଆଁ ଲୋକ ଏତେ ବେଇମାନ କାହିଁକି? ପତ୍ନୀ ସାନ୍ତ୍ୱନା ଦିଏ ।

ଏତିକିରେ କାହାଣୀଟି ସରିଯିବା କଥା । କିନ୍ତୁ ଜମାନା ଖରାପ ତ, ତେଣୁ ସରିବନି । ସାମାନ୍ୟ ଆଗକୁ ଯିବ । ସେ ବି ଓଲଟା ଦିଗରେ !

ପ୍ରାୟ ବର୍ଷେ ଉତ୍ତାରେ ନଟବର ଦୋକାନକୁ ଏମିତି ଦକ୍ଷତାର ସହ ସଫାଚଟ କରିଗଲା ଯେ, ପୋଲିସ, ମାଲିକ, କେହି ତା'ର ଟେର ପାଇଲେନି । ପତ୍ନୀ ଆରଂଭରେ ଅଜ୍ଞାନ ଥିଲା । ପରେ ଜ୍ଞାନ ପାଇଲାରୁ ପରାପାଟକରେ, ନଟବର ପରି, ବ୍ୟାଖ୍ୟାନ ଦେବା

ଆରଂଭ କଲା । ବିଷୟ— ପତିର ସାଧୁତା ଯୋଗୁଁ ସେ ଭୋଗ କରୁଥିବା ସାଂସାରିକ ଅସୁବିଧାଗୁଡ଼ିକର ବିଷଦ ସୂଚୀ । ସେପଟେ ନଟବରର 'ଦୋକାନ ସଫାଚଟ' ଓ ସାଧୁତାର ସମର୍ଥନରେ ତର୍କ ଏକା ଯୋରରେ ଚାଲିଥାନ୍ତି । ଶେଷରେ ଦୋସରା ଏକ ସହରକୁ ଯାଇ ପତ୍ନୀ ନାମରେ ସେଠି ନଟବର ବଡ଼ ଦୋକାନଟାଏ ଖୋଲିଲା । ତାର ଏବେ ଗୋଟାଏ ପ୍ରତିଜ୍ଞା, ବା କହିଲେ ଭଲ ହେବ ଅଭିଳାଷ—ତା (ପୂର୍ବ) ମାଲିକକୁ ଦୋକାନର ମେନେଜର କରି ରଖିବ । ଆହା, ତା ଅଦିନରେ ବିଚାରା (ମାଲିକ) ସହାୟ ହୋଇଥିଲା । କିନ୍ତୁ ଦୁଃଖର କଥା ଅଭିଳାଷ ତାର ପୂରା ହେଲା ନାହିଁ, କାରଣ ମାଲିକକୁ ଆଉ କେଉଁ ଦୋକାନରେ ମୁନିମ ଚାକିରୀ ମିଳିଗଲା । ପୂର୍ବ ମାଲିକର ଏବେ ଗୋଟାଏ ଅଭିଳାଷ - ନଟବର ଯେମିତି ସାଧୁତା ବଳରେ ଗରିବରୁ ଧନୀ ହେଲା, ସେ ବି ଏକ ଦୋକାନ କରିବ, ପୁଣି ଧନୀ ହେବ । ଆଉ ଏହିଭଳି ଭାବେ ସଂସାର ଓ ସାଧୁତା ମଧ୍ୟରେ ଯେଉଁ କଳହ ଲାଗିଥିଲା, ତହିଁରେ ଦୋକାନଦାରୀର ଜୟ ହେଲା ।



୧୯୬୩ ମସିହାରେ ପ୍ରୀତୀଶ ଆଚାର୍ଯ୍ୟଙ୍କର ଜନ୍ମ ବର୍ତ୍ତମାନର ବରଗଡ଼ ଜିଲ୍ଲା ଗର୍ଭଣା ଗ୍ରାମରେ । ଆରମ୍ଭିକ ଶିକ୍ଷା ଗାଁରେ । ସମ୍ବଲପୁର ଗଂଗାଧର ମେହେର ମହାବିଦ୍ୟାଳୟରୁ ବି.ଏ ଓ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟ, ନୂଆଦିଲ୍ଲୀରୁ ଆଧୁନିକ ଇତିହାସରେ ଏମ୍.ଏ, ଏମ୍.ଫିଲ୍ ଓ ପି.ଏଚ୍.ଡି । ପୂର୍ବରୁ ପୌଷ ପାହିଲେ ଯାଇ (୧୯୮୬) ଏବଂ ଆମ୍ବଲିପି (୧୯୮୯) - ଦୁଇଟି ଗଳ୍ପ ସଂକଳନ ପ୍ରକାଶିତ । ତାଙ୍କର କେତେକ ଗଳ୍ପ ହିନ୍ଦୀରେ ଅନୁଦିତ ଏବଂ ଜନସତ୍ତା, ହିନ୍ଦୁସ୍ଥାନ ତଥା ସମକାଳୀନ ଭାରତୀୟ ସାହିତ୍ୟ ଆଦି ପତ୍ରିକାରେ ପ୍ରକାଶିତ । ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ସମ୍ବଲପୁରରେ ବସନ୍ତ ମିଳନ ପୁରସ୍କାର ପ୍ରାପ୍ତ (୧୯୮୬) । ଓଡ଼ିଆ ପତ୍ର ପତ୍ରିକାରେ ତାଙ୍କର ଅନେକଗୁଡ଼ିଏ ନିବଂଧ ପ୍ରକାଶିତ । ସଂପ୍ରତି ନୂଆଦିଲ୍ଲୀସ୍ଥିତ ରାଷ୍ଟ୍ରୀୟ ଶୈକ୍ଷିକ ଅନୁସଂଧାନ ଓ ପ୍ରଶିକ୍ଷଣ ପରିଷଦରେ **(DESSH, NCERT, New Delhi -110016)** ପ୍ରାଧ୍ୟାପକ ପଦରେ ଅବସ୍ଥାପିତ ।

ବଂଧୁତା ଖାତିରରେ ଉକ୍ତ ପୁସ୍ତକ ପ୍ରକାଶ ପାଇଁ ଅନୁରୋଧ କରିବା କଥା ଲେଖକ ସ୍ୱୀକାର କରିଛନ୍ତି, ଯାହା ପ୍ରକାଶନ ଆଦର୍ଶର ପରିପନ୍ଥୀ । ବାସ୍ତବରେ ଲେଖକଙ୍କର ପାଠକୀୟ ଆଦୃତି, ପଶ୍ଚିମ ଓଡ଼ିଶାର ଗ୍ରାମ୍ୟ କଥିତ ଭାଷାର ବ୍ୟବହାର, ବ୍ୟଙ୍ଗ ଭାବ - ଏସବୁ ଦୃଷ୍ଟିରେ ରଖି ଆମେ ପୁସ୍ତକଟି ପ୍ରକାଶ କରିବାର ନିଷ୍ପତ୍ତି ନେଇଛୁ । ପଶ୍ଚିମ ଓଡ଼ିଶା ଏବଂ ଉପକୂଳ ଓଡ଼ିଶା ମଧ୍ୟରେ ସାରସ୍ୱତ ସଂପର୍କର ସେତୁ ଗଢ଼ିବାରେ ଏହା ଭୂମିକାଟିଏ ନିଭେଇବ - ଏଇ ବିଶ୍ୱାସ ରଖି ସଶ୍ରଦ୍ଧ ପାଠକ/ପାଠିକାଙ୍କ ହାତରେ ପୁସ୍ତକଟି ଅର୍ପଣ କରୁଛୁଁ ।

-ପ୍ରକାଶିକା-